# ସରଳା ଦେବୀ

(ଲେଖିକା, ସଂସ୍କାରିକା, ବିପ୍ଳବିଣୀ)



ସଂକଳନ ଓ ସଂପାଦନା

ପ୍ରଫେସର ସଚ୍ଚିଦାନନ୍ଦ ମହାନ୍ତି

# ସରଳା ଦେବୀ

## ଲେଖିକା, ସଂସ୍କାରିକା, ବିପ୍ଳବିଣୀ

(୧୯୦୪ – ୧୯୮୬)

*ସଂକଳନ ଓ ସଂପାଦନା*

ପ୍ରଫେସର ସଚ୍ଚିଦାନନ୍ଦ ମହାନ୍ତି



ସରଳା ଦେବୀ ।। ସଂକଳନ ଓ ସଂପାଦନା : ପ୍ରଫେସର ସଚ୍ଚିଦାନନ୍ଦ ମହାନ୍ତି ।। ପ୍ରକାଶକ : ଅଗ୍ରଦୂତ, ବାଙ୍କାବଜାର, କଟକ-୭୫୩୦୦୨ ।। ପ୍ରଥମ ପ୍ରକାଶ : ୨୦୦୪ ।। କମ୍ପ୍ୟୁଟର ସହାୟତା : ମା' ଶାରଳା ଡି.ଟି.ପି., କଟକ-୧୪ ।। ମୁଦ୍ରଣ : ଶୁଭମ୍ ପ୍ରିଣ୍ଟର୍ସ, ରାଜେନ୍ଦ୍ର ନଗର, କଟକ-୧୦

ମୂଲ୍ୟ : ଟ.୧୨୫/-

**SARALA DEVI** II Edited by : **Prof. Sachidananda Mohanty** II Published by : **AGRADUTA**, Banka Bazar, Cuttack-753002 II 1st Edition – **2004** II Computer Support by : **Maa Sarala D.T.P.,** Cuttack-14 II Printed by : SHUBHAM PRINTERS, Rajendra Nagar, Ctc.-10

**Price : Rs.125/-**

## ଉତ୍ସର୍ଗ

ମୋର ମା କବି ବିଦ୍ୟୁତ୍‌ପ୍ରଭାଙ୍କ ସ୍ମୃତିରେ

(୧୯୨୬-୧୯୭୭)

# କୃତଜ୍ଞତା

ଏହି ସଂକଳନର ପ୍ରକାଶ ପାଇଁ ଅନେକ ଲେଖକ, ଲେଖିକା, ସମାଲୋଚକ, ଅନୁବାଦକ ଓ ବରିଷ୍ଠ ସାହିତ୍ୟସାଧକ ବହୁଭାବରେ ମତେ ସାହାଯ୍ୟ କରିଆସିଛନ୍ତି । ଏହି ଅବକାଶରେ ସେମାନଙ୍କୁ ମୁଁ କୃତଜ୍ଞତା ଜଣାଉଛି ।

ବିଶେଷକରି ସରଳା ଦେବୀଙ୍କ ପରିବାରର ଭାରତୀ, ନିବେଦିତା, ସସ୍ମିତା, ଲକ୍ଷ୍ମୀ ପ୍ରକାଶ, ଭବାନୀ ପ୍ରକାଶ, ମାଉସୀ ବାବି ଏବଂ ଅଗ୍ରଦୂତ ପ୍ରକାଶନର ଶ୍ରୀଯୁକ୍ତ ମନ୍ମଥ ପଟ୍ଟନାୟକ । ଏହାଛଡ଼ା ପ୍ରଫେସର ମହାପାତ୍ର ନୀଳମଣି ସାହୁ, ପାପା ମାଉସୀ, ପ୍ରଫେସର ଶରତ କୁମାର ମହାନ୍ତି ଏବଂ ପରିବାର । ଡଃ ପ୍ରତିଭା ରାୟ, ଶ୍ରୀ ଅକ୍ଷୟ ରାୟ ଏବଂ ପରିବାର । ପରିଶେଷରେ ମୋ ମା କବି ବିଦ୍ୟୁତ୍‌ପ୍ରଭା ଏବଂ ମୋ ପିତା ଶ୍ରୀ ପଞ୍ଚାନନ ମହାନ୍ତିଙ୍କ ପ୍ରେରଣା ।

ହାଇଦ୍ରାବାଦ
୧୦.୭.୨୦୦୪

ସଚ୍ଚିଦାନନ୍ଦ ମହାନ୍ତି

# ସୂଚୀପତ୍ର

# ଆଦ୍ୟ କଥନ

ବିଂଶ ଶତାବ୍ଦୀର ପ୍ରାରମ୍ଭିକ କାଳରେ ସେତେବେଳକାର ସମାଜର ବିବିଧ ଘଟଣାବଳୀ ଯଥା ଓଡ଼ିଆ ଭାଷା ସଂରକ୍ଷଣ, ଓଡ଼ିଶା ଏକ ସ୍ୱତନ୍ତ୍ର ରାଜ୍ୟ ଗଠନର ସଚେତନତା, ବ୍ରାହ୍ମ ସମାଜର ପ୍ରସାର, ବିଧବା ବିବାହ ପ୍ରଚଳନ, ଅସ୍ପୃଶ୍ୟତା ନିବାରଣ ସର୍ବୋପରି ଭାରତର ସ୍ୱାଧୀନତା ସଂଗ୍ରାମର ପ୍ରଭାବ ଓଡ଼ିଶାର ନାରୀ ଲେଖିକାଙ୍କ ମଧ୍ୟରେ ଅଭୂତପୂର୍ବ ଜାଗରଣ ସୃଷ୍ଟି କରିଥିଲା । ଆଜି ଓଡ଼ିଆ ସାହିତ୍ୟ କେତେକାଂଶରେ ସେହି ମହିୟସୀ ଲେଖିକାମାନଙ୍କୁ ଅବହେଳା କରିଥିଲେ ମଧ୍ୟ କୋକିଳା ଦେବୀ, ରେବା ରାୟ, ନର୍ମଦା କର, ପ୍ରତିଭା ଦେବୀ, କୁନ୍ତଳା କୁମାରୀ ସାବତ, ସୀତାଦେବୀ ଖାଡ଼ଙ୍ଗା, ସରଳା ଦେବୀ ଓ ବିଦ୍ୟୁତ୍‌ପ୍ରଭା ଦେବୀ ସେମାନଙ୍କ କୃତିତ୍ୱକୁ ଅମର ଅକ୍ଷରରେ ଲିପିବଦ୍ଧ କରିଯାଇଛନ୍ତି । ରାଜ୍ୟର ଅନେକ ବିକାଶଶୀଳ କାର୍ଯ୍ୟରେ ନିୟୋଜିତ ଥିଲା ସେମାନଙ୍କ ଲେଖନୀ । ନାରୀଶିକ୍ଷା, ସମବାୟ ଆନ୍ଦୋଳନ, ସାମାଜିକ ଓ ରାଜନୈତିକ କାର୍ଯ୍ୟରେ ମହିଳାମାନଙ୍କ ଅଂଶଗ୍ରହଣ ଏସବୁ ମଧ୍ୟରେ ଅନ୍ୟତମ ।

ସେକାଳର ନାରୀ ଲେଖିକାମାନଙ୍କ ମଧ୍ୟରେ ସରଳା ଦେବୀଙ୍କ ନାମ ଅଗ୍ରଗଣ୍ୟା । ତାଙ୍କର ଜୀବନୀ ଓ କାର୍ଯ୍ୟଧାରାର ବିଶ୍ଳେଷଣରୁ ଅନ୍ୟ-ଅନ୍ୟତମା ଲେଖିକା ଓ କବିମାନଙ୍କ ନିକଟରେ ପହଞ୍ଚି ହୁଏ । ସରଳା ଦେବୀଙ୍କ ବ୍ୟକ୍ତିତ୍ୱ ଓ ସଫଳତା ଏକ ଦୃଢ଼ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ଥିଲା । ଆନୁଷ୍ଠାନିକ ଶିକ୍ଷାଲାଭରୁ ବଞ୍ଚିତା ଥିଲେ ମଧ୍ୟ ଏକ ଉପଯୁକ୍ତ ପରିସର ଯଥାଯଥ ଶିକ୍ଷା ଗ୍ରହଣ କରିବାରେ ପ୍ରତିବନ୍ଧକ ହୋଇ ନଥିଲା । ଆଧୁନିକ ଓଡ଼ିଆ ନାରୀମାନଙ୍କ ସଂଜ୍ଞା, ସ୍ୱରୂପ ନିର୍ଣ୍ଣୟ କଲାବେଳେ ସରଳାଦେବୀ ଏକାଧାରରେ ଜଣେ ସତ୍ୟନିଷ୍ଠ ଲେଖିକା, ଫେମିନିଷ୍ଟ୍ ଓ ଶକ୍ତିଶାଳୀ ସମାଜ ସଂସ୍କାରିକା ତଥା ଏକନିଷ୍ଠ କର୍ମୀ ଭାବରେ ଉଭା ହୁଅନ୍ତି ।

ଗ୍ରାମ ପାଠଶାଳାରୁ ବାଲ୍ୟଶିକ୍ଷା ଆରମ୍ଭ ହୁଏ ସରଳା ଦେବୀଙ୍କର । ମାତ୍ର କୌଣସି ବିଦ୍ୟାଳୟ ବା ବିଶ୍ୱବିଦ୍ୟାଳୟର ଆନୁଷ୍ଠାନିକ ଶିକ୍ଷା ତାଙ୍କର ନ ଥିଲା । ତଥାପି ସେ ଥିଲେ ଅସାମାନ୍ୟା ବିଦୁଷୀ । ଓଡ଼ିଆ ଭାଷା ଓ ସାମାଜିକ ଆନ୍ଦୋଳନରେ ସେ ଜଣେ ସୁପରିଚିତା ଧୀଶକ୍ତିସଂପନ୍ନା ନାରୀ ଭାବରେ ପ୍ରଖ୍ୟାତ ।

## ଆଦ୍ୟଜୀବନ

୧୯୦୪ ମସିହା ଅଗଷ୍ଟ ୧୯ ତାରିଖରେ ଜଗତସିଂହପୁର ଜିଲ୍ଲାର ଏକ ରକ୍ଷଣଶୀଳ ଓ ସଂଭ୍ରାନ୍ତ ପରିବାରରେ ତାଙ୍କର ଜନ୍ମ । ବାଲ୍ୟକାଳରୁ ସରଳା ଦେବୀଙ୍କର ବଡ଼ବାପା ଶ୍ରୀଯୁକ୍ତ ବାଳମୁକୁନ୍ଦ କାନୁନ୍‌ଗୋ, ଯିଏ କି ଜଣେ ଡେପୁଟି ମାଜିଷ୍ଟ୍ରେଟ୍ ଥିଲେ, ତାଙ୍କୁ ଝିଅ କରି ନେଇଥିଲେ । ଶୈଶବରୁ ହିଁ ସରଳାଙ୍କ ପ୍ରତିଭା ଓ ପ୍ରତିକ୍ରିୟା ପ୍ରବଣତାର

ପରିଚୟ ମିଳି ପାରିଥିଲା । ଜମିଦାରୀ ପରିବାରରେ ମହିଳାମାନଙ୍କ ପାଇଁ ଥିବା କେତୋଟି ରକ୍ଷଣଶୀଳ, ମୂଲ୍ୟହୀନ ପରଂପରାର ସେ ପ୍ରତିବାଦ କରୁଥିଲେ । ଓଢ଼ଣା ଦେବାକୁ ସେ ସ୍ପଷ୍ଟ ମନା କରିଦେଇଥିଲେ । ନାରୀ ଯେ ନରକର ଦ୍ୱାର—ଏହି ତାଛଲ୍ୟ ଇଙ୍ଗିତର ସେ ଦୃଢ଼ ପ୍ରତିବାଦ କରୁଥିଲେ । ଏକ ଆତ୍ମଜୀବନୀମୂଳକ ନିବନ୍ଧ, 'ଦି ଷ୍ଟୋରୀ ଅଫ୍ ମାଇଁ ରିଭୋଲ୍ୟୁସନାରୀ ଲାଇଫ୍‌ରେ' ସେ ଲେଖିଛନ୍ତି, ଯେଉଁ ଭଗବାନ ନାରୀ କଥା ଶୁଣନ୍ତି ନାହିଁ, ଯିଏ କେବଳ ପୁରୁଷର ଅଧିକୃତ, ଯେଉଁଠି ପୁରୁଷର ଭୁଲ୍‌କୁ ଗୌଣ ବିଚାରି କ୍ଷମା କରିଦିଆଯାଏ ଏବଂ ନାରୀର ସାମାନ୍ୟ ଭୁଲ୍ ପାଇଁ ତାକୁ କଠିନ ଦଣ୍ଡ ଦିଆଯାଏ, ସେ ଈଶ୍ୱର, ସେ ଧର୍ମ ଓ ସେ ସମାଜ କ୍ରମଶଃ ମୋ ପାଇଁ ମୂଲ୍ୟହୀନ ହୋଇପଡୁଥିଲା । ପ୍ରଚଳିତ ଧର୍ମ ଓ ସମାଜ ବ୍ୟବସ୍ଥା ପ୍ରତି ବିଦ୍ରୋହ ପରେ ବି ଆଧ୍ୟାତ୍ମିକତାର ଗଭୀରତାରେ ତାଙ୍କର ବିଶ୍ୱାସ ଥିଲା ।

ଗୃହ ଶିକ୍ଷକଙ୍କ ସହଯୋଗିତାରେ ସରଳାଦେବୀ ଷଷ୍ଠ ଶ୍ରେଣୀ ପର୍ଯ୍ୟନ୍ତ ଆନୁଷ୍ଠାନିକ ଶିକ୍ଷା ଲାଭ କରିଥିଲେ । ମାତ୍ର ପରବର୍ତ୍ତୀ କାଳରେ ନିଜର ଉଦ୍ୟମ ବଳରେ ସେ ବଙ୍ଗଳା ପଢ଼ିଶିଖିଥିଲେ ଏବଂ ବଙ୍କିମଚନ୍ଦ୍ର, ରବୀନ୍ଦ୍ରନାଥ ଠାକୁର ଓ ଶରତଚନ୍ଦ୍ରଙ୍କର ଅମରକୃତିସବୁ ପାଠ କରିଥିଲେ । ଏଥି ସହ ରାଜା ରାମମୋହନ ରାୟ, କେଶବ ଚନ୍ଦ୍ର ସେନ୍, ଦୟାନନ୍ଦ ସରସ୍ୱତୀ, ସ୍ୱାମୀ ବିବେକାନନ୍ଦ, ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ଓ ଗୋପାଳକୃଷ୍ଣ ଗୋଖ୍‌ଲେଙ୍କ ଲେଖା ତାଙ୍କୁ ଅନୁପ୍ରେରିତ କରିଥିଲା ।

କିଶୋର ବୟସରେ ସରଳା ଦେବୀ ବିବାହ କରିଥିଲେ । ଫଳରେ ତାଙ୍କର ଆନୁଷ୍ଠାନିକ ଶିକ୍ଷା ବ୍ୟାହତ ହୋଇଥିଲା । ଜଗତସିଂହପୁରର ଜଣେ ଜମିଦାରଙ୍କ ପୁତ୍ର ଭାଗିରଥୀ ମହାପାତ୍ରଙ୍କୁ ସେ ବିବାହ କରିଥିଲେ । ଭାଗିରଥୀଙ୍କ ପରି ଜଣେ ଦେଶପ୍ରେମୀ ଓ ସ୍ୱାଧୀନଚେତା ସ୍ୱାମୀ ସରଳା ଦେବୀଙ୍କ ପାଇଁ ପ୍ରେରଣାର ଉତ୍ସ ପାଲଟି ଯାଇଥିଲା ।

## ରାଜନୈତିକ କାର୍ଯ୍ୟଧାରା

ନାଗପୁରରେ ଭାରତୀୟ ଜାତୀୟ କଂଗ୍ରେସର ୩୫ ତମ ଅଧିବେଶନରେ ଚଉଦ ହଜାର ପ୍ରତିନିଧିଙ୍କ ମଧ୍ୟରେ ସରଳା ଦେବୀ ଓ ଭାଗିରଥୀ ମହାପାତ୍ର ଓଡ଼ିଶାର ଅନ୍ୟତମ ପ୍ରତିନିଧି ଥିଲେ । ସେଇ ଅଧିବେଶନ ଜାତୀୟ ସ୍ୱାଧୀନତା ସଂଗ୍ରାମରେ ଝାସ ଦେବା ପାଇଁ ସରଳା ଦେବୀଙ୍କୁ ଉଦ୍‌ବୁଦ୍ଧ କରିଥିଲା । ପରେ ପରେ ଉତ୍କଳ କଂଗ୍ରେସ କମିଟି ଗଠିତ ହୁଏ । ଗାନ୍ଧିଜୀଙ୍କର ଓଡ଼ିଶା ଗସ୍ତ ସମୟରେ କଟକର ବିନୋଦବିହାରୀଠାରେ ଆୟୋଜିତ ଏକ ସ୍ୱତନ୍ତ୍ର ସଭାରେ ଚାଳିଶଜଣ ମହିଳାଙ୍କ ସମେତ ସରଳା ଦେବୀ ଯୋଗ ଦିଅନ୍ତି । ଓଡ଼ିଶାର ଅସହଯୋଗ ଆନ୍ଦୋଳନରେ ମଧ୍ୟ ସେ ମୁଖ୍ୟ ଭୂମିକା ନିର୍ବାହ କରିଥିଲେ । ତିଳକ ସ୍ୱରାଜ ପାଣ୍ଠି ନିମନ୍ତେ ସେ ଓଡ଼ିଶାର ବହୁ ଅଞ୍ଚଳ ଗସ୍ତ କରୁଥିଲେ । ସରଳା ଦେବୀଙ୍କର ଏହି ଗଠନମୂଳକ କାର୍ଯ୍ୟରେ ତାଙ୍କୁ ସହଯୋଗ କରୁଥିଲେ ଓଡ଼ିଶାର ଅନେକ ପ୍ରଗତିଶୀଳ

ମହିଳା, ନାରୀ କବି ଓ ଲେଖିକା । ସେମାନଙ୍କ ମଧ୍ୟରେ ଶୈଳବାଳା ଦାସ, କୁନ୍ତଳା କୁମାରୀ ସାବତ ଓ ରମାଦେବୀଙ୍କ ନାମ ଉଲ୍ଲେଖନୀୟ ।

ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶାର ମହିଳାମାନଙ୍କୁ ସାମିଲ କରିବା ପାଇଁ ବିଭିନ୍ନ ସଭାସମିତି ଓ ଅନୁଷ୍ଠାନ ଗଠିତ ହେବା ସହ ସେ ସମୟର ପ୍ରଖ୍ୟାତ ଲେଖକ ଓ କବି ଗୋପାଳଚନ୍ଦ୍ର ପ୍ରହରାଜଙ୍କ କନ୍ୟା ଲାବଣ୍ୟବତୀ ଦେବୀଙ୍କ ଉଦ୍ୟମରେ 'ମହିଳାବନ୍ଧୁ ସମିତି' ଗଠିତ ହେଇଥିଲା ।

ଗାନ୍ଧିଜୀଙ୍କ ଆହ୍ୱାନରେ ଅନୁପ୍ରାଣୀତ ହୋଇ ସରଳା ଦେବୀ ପ୍ରତ୍ୟକ୍ଷ ସଂଗ୍ରାମରେ ଝାସ ଦେଇଥିଲେ । ବାଲେଶ୍ୱରର ଇଞ୍ଚୁଡ଼ିଠାରେ ହୋଇଥିବା ଲବଣ ସତ୍ୟାଗ୍ରହରେ ମଧ୍ୟ ସେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ଲୋକମାନଙ୍କ ମଧ୍ୟରେ ବିଶେଷତଃ ମହିଳାମାନଙ୍କ ଠାରେ ସଚେତନତା ସୃଷ୍ଟି ପାଇଁ ଓଡ଼ିଶାର ବିଭିନ୍ନ ଅଞ୍ଚଳ ସେ ଘୂରି ବୁଲୁଥିଲେ । ଜଣେ ଅଭିଜାତ ପରିବାରର କନ୍ୟା ଓ ପୁତ୍ରବଧୂ ଭାବରେ ସେ କାଳରେ ଏହା ଅକଳ୍ପନୀୟ ଥିଲା । ମାତ୍ର ସରଳା ଏହାକୁ ଗୁରୁତ୍ୱ ଦେଇ ନ ଥିଲେ । ଅନ୍ୟପକ୍ଷରେ ମହିଳାମାନଙ୍କୁ ପ୍ରଭାବିତ କରିବାରେ ମଧ୍ୟ ତାଙ୍କ ବଂଶ ମର୍ଯ୍ୟାଦା ଓ ଆଭିଜାତ୍ୟ ତାଙ୍କୁ ସାହାଯ୍ୟ କରିଥିଲା । ଏ ସମୟରେ ବ୍ରିଟିଶ ସରକାରଙ୍କ ଦ୍ୱାରା ଗିରଫ ହୋଇ ସେ ଛତ୍ରପୁର (ଗଞ୍ଜାମ)ଜେଲ୍‌ରେ ରହିଲେ ଏବଂ ପରବର୍ତ୍ତୀ ସମୟରେ ତାଙ୍କୁ ଭେଲୋର ଜେଲ୍‌କୁ ପଠାଇ ଦିଆଗଲା । ଛ'ମାସ ପରେ ସେ ମୁକ୍ତ ହୋଇ କଟକ ଫେରିଲେ । ସେ ସମୟର ଅନ୍ୟତମା ରାଜନୈତିକ କର୍ମୀ ବୀଣାପାଣି ଦେବୀଙ୍କ ନେତୃତ୍ୱରେ ସରଳା ଦେବୀଙ୍କୁ ଡିସେମ୍ବର ଆଠ, ୧୯୩୦ ମସିହାରେ କଟକଠାରେ ଭବ୍ୟ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା ।

ଲବଣ ସତ୍ୟାଗ୍ରହ ପରେ ସରଳା ଦେବୀ, କୁନ୍ତଳାକୁମାରୀ ସାବତ୍, ବସନ୍ତ କୁମାରୀ ଦେବୀ, ସରୋଜିନୀ ଚୌଧୁରୀ, କୋକିଳା ଦେବୀ, ଜାହ୍ନବୀ ଦେବୀଙ୍କ ସହିତ ମିଶି ନିଖିଳ ଉତ୍କଳ ନାରୀ ପରିଷଦ ଗଠନରେ ଅଂଶଗ୍ରହଣ କରିଥିଲେ । ସର୍ବମୋଟ ୩୦ ଜଣ ମହିଳା ପ୍ରତ୍ୟକ୍ଷ କର୍ମୀଙ୍କୁ ନେଇ ପରିଷଦ ଗଠିତ ହୋଇଥିଲା । ପୁରୀ, ଗଞ୍ଜାମ, କଟକ ଓ ବାଲେଶ୍ୱର ଆଦି ସ୍ଥାନରେ ପରିଷଦର ସ୍ୱତନ୍ତ୍ର ପ୍ରତିନିଧି ଥିଲେ । ସରଳା ଦେବୀଙ୍କ ସଂପର୍କରେ ନଭେମ୍ବର ୭, ୧୯୩୧ର ଉତ୍କଳ ଦୀପିକା ସେଦିନ ଲେଖିଥିଲା, ''ସେ ଚାହୁଁଥିଲେ ମହିଳାମାନେ ହିଁ ତାଙ୍କ ନାଟକରେ ଅଭିନୟ କରନ୍ତୁ । କାରଣ ସେତେବେଳେ ଓଡ଼ିଶାର ନାରୀମାନେ ଖୁବ୍ ପଛରେ ଥିଲେ । ଗୃହାଙ୍ଗନା ବାହାରକୁ ଆସିବାକୁ ସଙ୍କୋଚ କରୁଥିଲେ । ସରଳା ଦେବୀ ଭାବିଲେ, ଅନ୍ତତଃ ନାଟକରେ ଅଭିନୟ କରିଲେ କେତେକାଂଶରେ ସେ ପ୍ରକାର ସଂକୋଚରୁ ସେମାନେ ମୁକୁଳି ଆସି ପାରିବେ । ଏହି ଲକ୍ଷ୍ୟ ନେଇ ନିଜ ନାଟକଗୁଡ଼ିକ ଧରି ସେ ଘରକୁ ବୁଲି ମହିଳାମାନଙ୍କୁ ବୁଝାଉଥିଲେ ।''

କୃଷକମାନଙ୍କ ସାହାଯ୍ୟାର୍ଥେ ଗଠିତ ଉତ୍କଳ ସମବାୟ କର୍ମୀ ସଂଘ ସହିତ ମଧ୍ୟ ସରଳା ଦେବୀ ସଂପୃକ୍ତ ଥିଲେ । ମାର୍କସବାଦ ଦ୍ୱାରା ଅନୁପ୍ରାଣୀତ ଏହି ଅନୁଷ୍ଠାନର ପ୍ରମୁଖ କର୍ମକର୍ତ୍ତା ଥିଲେ ଭଗବତୀ ଚରଣ ପାଣିଗ୍ରାହୀ, ନବକୃଷ୍ଣ ଚୌଧୁରୀ, ଭୁବନାନନ୍ଦ ଦାସ, ମନମୋହନ ଚୌଧୁରୀ, ସୁରେନ୍ଦ୍ର ନାଥ ଦ୍ୱିବେଦୀ ଓ ମାଳତୀ ଚୌଧୁରୀ ।

ଜମିଦାର ପରିବାରର କନ୍ୟା ହୋଇ ମଧ୍ୟ ଜମିଦାରମାନଙ୍କ ଅନ୍ୟାୟ ଅତ୍ୟାଚାରର ସେ ଦୃଢ଼ ପ୍ରତିବାଦ କରୁଥିଲେ । ସ୍ୱଦେଶୀ ଆନ୍ଦୋଳନ ଓ ଅସ୍ପୃଶ୍ୟତା ନିବାରଣ ଆନ୍ଦୋଳନରେ ମଧ୍ୟ ତାଙ୍କର ଭୂମିକା ଅନସ୍ୱୀକାର୍ଯ୍ୟ । 'ମହିଳା ବନ୍ଧୁ ସମିତି'ର ସଫଳତାରେ ଆନନ୍ଦିତ ହୋଇ ସେ କହିଥିଲେ, ''ଅତୀତର ସ୍ୱପ୍ନ ମୋର ସଫଳ ହେଲା । ଉତ୍କଳୀୟ ନାରୀ ନିଜ ପରିଚୟ ନିଜେ ଖୋଜିବା ପାଇବା ଦିନେ କଳ୍ପନାତୀତ ଥିଲା । ମାତ୍ର ନୂଆ ଇତିହାସଟିଏ ଆରମ୍ଭ ହେଲା । ନାରୀମାନଙ୍କର ଏ ପ୍ରଗତିରେ କେଉଁ ଦେଶପ୍ରେମୀ ଆନନ୍ଦିତ ନ ହେବ । ନିରାଶା-ଜର୍ଜର ହୃଦୟରେ ଆଶାର ଆଲୋକ ସୃଷ୍ଟି ହୋଇଛି । ସମ୍ଭବତଃ ପ୍ରୟାସ କମ୍ ହୋଇପାରେ କିନ୍ତୁ ଏକ ଅନୁଷ୍ଠାନର ଆତ୍ମା ସବୁବେଳେ ବଞ୍ଚିରହେ ।''

୧୯୩୬ରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠିତ ହେଲା ଏବଂ ସରଳାଦେବୀ ପ୍ରଥମ ମହିଳା ବିଧାୟିକା ଭାବରେ ନିର୍ବାଚିତ ହୋଇଥିଲେ । ନାରୀଶିକ୍ଷା, ମହିଳାମାନଙ୍କ ବିକାଶ, ବାଲ୍ୟବିବାହ ଉଚ୍ଛେଦ ଓ ଯୌତୁକ ପ୍ରଥା ବିରୋଧରେ ବିଧାନସଭାରେ ବିଲ୍ ଆଗତ କରି ସେ ସଫଳ ହୋଇଥିଲେ । ଶେଷ ପର୍ଯ୍ୟନ୍ତ ସରଳାଦେବୀ କାର୍ଯ୍ୟତଃ ଜଣେ ବିପ୍ଳବିଣୀ ଥିଲେ ।

## ସାହିତ୍ୟିକ ଜୀବନ

ସରଳାଦେବୀଙ୍କ ପୂର୍ବରୁ ଓଡ଼ିଶାର ଅନେକ ନାରୀକବି ଓ ଲେଖିକା ଉଚ୍ଚତର ସାହିତ୍ୟ ସୃଷ୍ଟି କରି ସାରିଥିଲେ । ମାତ୍ର ସରଳା ଦେବୀ ହିଁ ପ୍ରଥମ ଲେଖିକା ଯାହାଙ୍କ ରଚନାରେ ରାଜନୈତିକ ସଚେତନତା ଭରି ରହିଥିଲା । ତାଙ୍କର ପୂର୍ବସୂରୀମାନେ କେବଳ ଧର୍ମୀୟ ଓ ଆଧ୍ୟାତ୍ମିକ ଲେଖାସବୁ ରଚନା କରିଯାଇଛନ୍ତି । ସେମାନଙ୍କ ମଧ୍ୟରେ ଟିଗିରିଆର ସୁଲକ୍ଷଣା ଦେବୀ (୧୮୨୯)ଙ୍କ କବିତା ସଂକଳନ 'ପାରିଜାତମାଳା', ପୁରୀ ଜିଲ୍ଲାର ସୁଚିତ୍ରା ଦେବୀ (୧୮୮୧)ଙ୍କର 'କବିତା ଲହରୀ' (୧୯୦୧) ଏବଂ ଚିକିଟି ଗଞ୍ଜାମର ଅନ୍ନପୂର୍ଣ୍ଣା ଦେବୀ (୧୮୮୩)ଙ୍କର ଭକ୍ତି ସଙ୍ଗୀତ ଅନ୍ୟତମ । ଏମାନଙ୍କ ବ୍ୟତୀତ ପୀତାମ୍ବର ଦେବୀଙ୍କ ପରି ଲେଖିକାଙ୍କ ଆତ୍ମଜୀବନୀମୂଳକ ଲେଖାରେ ଉତ୍କଳୀୟ ନାରୀଙ୍କର ଗୌରବ ଗାଥା ବର୍ଣ୍ଣିତ ।

ବସ୍ତୁତଃ ସରଳା ଦେବୀଙ୍କ ପଛରେ ନାରୀ ଲେଖିକାମାନଙ୍କ ଅଭ୍ୟୁଦୟର ଏକ ପରମ୍ପରା ଆରମ୍ଭ ହୋଇ ସାରିଥିଲା । କବିତା, ନାଟକ, ଉପନ୍ୟାସ ଆଦି ସବୁ କ୍ଷେତ୍ରରେ

ସେ ତାଙ୍କ ନିଜସ୍ୱ ପ୍ରତିଭାର ପରିଚୟ ଦେଇଛନ୍ତି । ମୁଖ୍ୟତଃ ନିବନ୍ଧ ଓ ପତ୍ର ଲିଖନରେ ସେ ଥିଲେ ସିଦ୍ଧହସ୍ତା । ଏକାଧାରରେ ଜଣେ ବିପ୍ଳବିନୀ, ସମାଜ ସଂସ୍କାରିକା ଓ ସତ୍ୟନିଷ୍ଠ କର୍ମୀ ଭାବରେ ମଧ୍ୟ ସେ ସୁପରିଚିତା ଥିଲେ । ବଙ୍ଗଳା ପତ୍ରିକା 'ଦେବଯାନୀ'ରେ ତାଙ୍କର ନିବନ୍ଧମାନ ବିଭିନ୍ନ ସମୟରେ ପ୍ରକାଶିତ ହେଉଥିଲା । ତାଙ୍କର ଓଡ଼ିଆ ରଚନାବଳୀ ମଧ୍ୟରେ 'ଉତ୍କଳ ନାରୀ ସମସ୍ୟା' (୧୯୩୪), 'ନାରୀର ଦାବି' (୧୯୩୪), 'ଭାରତୀୟ ମହିଳା ପ୍ରସଙ୍ଗ' (୧୯୩୫), 'ରବୀନ୍ଦ୍ର ପୂଜା', 'ବୀର ରମଣୀ' (୧୯୪୯) ଓ 'ବିଶ୍ୱ ବିପ୍ଳବିଣୀ' (୧୯୩୦) ଆଦି ପ୍ରଧାନ । ସବୁଜ ଗୋଷ୍ଠୀର ଲେଖକ ଅନ୍ନଦା ଶଙ୍କର ରାୟ ଯିଏ କି ତାଙ୍କ ଲେଖକୀୟ ଜୀବନର ପ୍ରାଥମିକ ପର୍ଯ୍ୟାୟରେ ଓଡ଼ିଆରେ ଲେଖୁଥିଲେ ଓ ପରେ ବଙ୍ଗଳାରେ ବିଶେଷ ପ୍ରସିଦ୍ଧି ଅର୍ଜନ କରିଛନ୍ତି, ତାଙ୍କ ସହିତ ସରଳା ଦେବୀଙ୍କର ଉତ୍ତମ ସଂପର୍କ ଥିଲା । ଯେଉଁ ଛ'ଜଣ ସାହିତ୍ୟିକ ମିଶି ସେତେବେଳେ 'ବାସନ୍ତୀ' ଉପନ୍ୟାସ ରଚନା କରୁଥିଲେ ସେମାନଙ୍କ ମଧ୍ୟରେ ସରଳା ଦେବୀ ଅନ୍ୟତମା ।

ତାଙ୍କର ସମଗ୍ର ସାହିତ୍ୟକୃତିରେ ଗଭୀର ଅନ୍ତର୍ଦୃଷ୍ଟି, ଘନିଷ୍ଠ ଅନୁଭବ ଓ ଅନ୍ୱେଷଣ ପ୍ରବଣତା ଦୃଷ୍ଟିଗୋଚର ହୁଏ । ସମାଜରେ ନାରୀର ଉପଯୁକ୍ତ ସ୍ଥାନକୁ ନେଇ ସେ ସର୍ବଦା ଚିନ୍ତିତ ରହୁଥିଲେ । ୧୯୩୬ ମସିହାରେ ଭେଲୋର ଜେଲ୍‌ରେ ଥିବାବେଳେ ସରଳା ଦେବୀ ଦୁର୍ଗାବତୀ ଦେଶମୁଖଙ୍କ ସଂସ୍ପର୍ଶରେ ଆସିଥିଲେ । ତାଙ୍କ ବିଷୟରେ ସେ ଲେଖିଛନ୍ତି, "ଏହି ବୁଦ୍ଧିମତୀ, ସୁଦର୍ଶନା ଓ ସକ୍ରିୟା ଆନ୍ଧ୍ର ଯୁବତୀ ମାଡ୍ରାସ୍ ସତ୍ୟାଗ୍ରହ ଆନ୍ଦୋଳନର ଏକଛତ୍ର ପୁରୋଧା ଥିଲେ ।"

ସ୍ୱାମୀ 'ପ୍ରିୟ ଭାଗୁ ବାବୁ'ଙ୍କ ନିକଟକୁ ସରଳା ଦେବୀ ଜେଲ୍‌ରୁ ଚିଠି ଲେଖୁଥିଲେ କିପରି ସେଇ ବନ୍ଦୀ ଜୀବନ ତାଙ୍କ ରାଜନୈତିକ ଜ୍ଞାନ ଆହରଣର ଶିକ୍ଷାକ୍ଷେତ୍ର ଥିଲା । ସେଠାରେ ସେ ବିଭିନ୍ନ ଭାଷା, ସୂତାକଟା ଓ ସଙ୍ଗୀତ ଶିକ୍ଷା କରିଥିଲେ ଯାହା ପରବର୍ତ୍ତୀ କାଳରେ ତାଙ୍କୁ ଜଣେ ପ୍ରବୀଣା ରାଜନୈତିକ ନେତ୍ରୀ ଏବଂ ଏକନିଷ୍ଠ କର୍ମୀ ହେବାରେ ସାହାଯ୍ୟ କରିଥିଲା । ସୁଦୂର ଭେଲୋର୍‌ରେ ଥାଇ ମଧ୍ୟ ନିଜ ପରିବାର ପ୍ରତି ସେ ତାଙ୍କର କର୍ତ୍ତବ୍ୟ ଭୁଲି ନଥିଲେ । ସ୍ୱାମୀଙ୍କ ପାଖକୁ ଚିଠି ଲେଖୁଥିଲେ ଏବଂ ପ୍ରସ୍ତାବ ଦେଇଥିଲେ ସ୍ୱାମୀ ଓ ପୁତ୍ର 'ଟିକୁନ୍' (ଅମିତାଭ), ଦୁହେଁ ଯାଇ ଅଳକାନନ୍ଦା ଆଶ୍ରମରେ ରହନ୍ତେ ଯାହା ଫଳରେ ଟିକୁନ୍‌କୁ ଏକୁଟିଆ ଲାଗନ୍ତା ନାହିଁ ଏବଂ ତାର ଉପଯୁକ୍ତ ଯତ୍ନ ନିଆଯାଇ ପାରନ୍ତା ।

'ବୀର ରମଣୀ' ପୁସ୍ତକରେ ନାରୀର ସାହସ ଓ ସ୍ୱତନ୍ତ୍ରତାର ଅପୂର୍ବ ଗାଥା ପଢୁଥିବା ବେଳେ ଏଲେନ୍ ମୋର୍‌ଙ୍କର 'ଲିଟେରାରୀ ଉଇମେନ୍' ମନେପଡ଼େ । ଏକଦା ସରଳା ଦେବୀଙ୍କ ଦ୍ୱାରା ଲିଖିତ ଲକ୍ଷ୍ମୀବାଈ, ବୁନ୍ଦିମହିଷୀ, କର୍ମାଦେବୀ, କୃଷ୍ଣା କୁମାରୀ ଓ ପାନ୍ନା ଦେବୀଙ୍କର ପ୍ରାୟ ୯୦ ପୃଷ୍ଠାର ଏକ ଜୀବନୀମୂଳକ ପୁସ୍ତକ ଉଚ୍ଚ ଇଂରାଜୀ ଶିକ୍ଷାର

ପାଠ୍ୟକ୍ରମରେ ଅନ୍ତର୍ଭୁକ୍ତ ଥିଲା । ସେଇସବୁ ନିବନ୍ଧମାନଙ୍କରେ ସରଳା ଦେବୀ କାମନା କରିଛନ୍ତି ଓଡ଼ିଆ ନାରୀ ମଧ୍ୟ କମଳା ଦେବୀ ଚଟ୍ଟୋପାଧ୍ୟାୟ, ସରଳା ଦେବୀ ଚୌଧୁରୀ, ମୃଦୁଲକ୍ଷ୍ମୀ ରେଡ୍ଡୀଙ୍କ ପରି ଜାତୀୟ ସ୍ତରରେ ପ୍ରତିଷ୍ଠିତ ନାରୀ ପ୍ରତିଭାଙ୍କ ଦ୍ୱାରା ଅନୁପ୍ରାଣୀତ ହୁଅନ୍ତୁ ।

'ବିଶ୍ୱ ବିପ୍ଲବିଣୀ'ରୁ ଲେଖିକାଙ୍କର ପ୍ରଚୁର ଅଧ୍ୟୟନ ଓ ସ୍ୱତନ୍ତ୍ର ବର୍ଣ୍ଣନା ଶୈଳୀର ପରିଚୟ ମିଳେ । ଚିଟାଗଙ୍ଗ୍ ଅସ୍ତ୍ରାଗାର ଘଟଣାରେ ସୂର୍ଯ୍ୟ ସେନ୍‌ଙ୍କ ସହଯୋଗୀ ପୂର୍ବ ବଙ୍ଗ ଲଳନା କଳ୍ପନା ଦତ୍ତ, ସୋଭିଏତ୍ ଋଷରେ ଜାର୍‌ଙ୍କ ବିରୋଧରେ ଯୁଦ୍ଧ ଆହ୍ୱାନ ଦେଇଥିବା ସୋଫିଆ ବାର୍ଦ୍ଧିନା, ରୁମାନିଆର ହାଜାଲିପିଜ୍ ଆଦି ବିଶ୍ୱ ବନ୍ଦିତା ନାରୀମାନଙ୍କ ସଂପର୍କରେ ସରଳା ଦେବୀଙ୍କର ଉପସ୍ଥାପନା ଖୁବ୍ ସୁନ୍ଦର ଅଟେ । ଏମାନଙ୍କ ବ୍ୟତୀତ ବାଙ୍କୀ ରାଣୀ ଶୁକ ଦେଇ, ରାଣୀ ଲକ୍ଷ୍ମୀବାଈ, ଅହଲ୍ୟାବାଈ ଓ ଜାନାବାଈଙ୍କ ସଂପର୍କରେ ମଧ୍ୟ ସେହି ବହିରେ ଉଲ୍ଲେଖ କରାଯାଇଛି । ଓଡ଼ିଶାର ନାରୀମାନଙ୍କୁ ଅନୁପ୍ରାଣୀତ କରିବା ସେହି ବହିର ଆଭିମୁଖ୍ୟ ।

ସେହିପରି 'ଦି ପ୍ରୋବ୍‌ଲେମସ୍ ଅଫ୍ ଉଇମେନ୍ ଇନ୍ ଓରିଶା' ପୁସ୍ତକର ପ୍ରାକ୍ କଥନରୁ ସରଳା ଦେବୀଙ୍କର ସେକାଳର ସାମାଜିକ ବ୍ୟବସ୍ଥା ଓ ନାରୀର ଅବସ୍ଥା ସଂପର୍କରେ ସଚେତନତା ଏବଂ ନାରୀର ସମସ୍ୟା ପ୍ରତି ତାଙ୍କର ଉଦାରତାର ପରିଚୟ ମିଳେ । ଭାରତ ଓ ବିଶ୍ୱସ୍ତରରେ ଓଡ଼ିଶାର ନାରୀ ଖୁବ୍ ପଛରେ ବୋଲି ସେ ଦୁଃଖିତ ହୋଇ ପଡ଼ନ୍ତି ।

'ନାରୀର ଦାବି'ରେ ସରଳା ଦେବୀ ମହିଳାମାନଙ୍କୁ ତାଙ୍କର ନ୍ୟାଯ୍ୟ ଅଧିକାର ବିଷୟରେ ସଚେତନ କରାନ୍ତି । ଏହି ବହିଟି ମେରୀ ୱୋଲ୍‌ଷ୍ଟୋନ୍‌କ୍ରାଫଟ୍‌ଙ୍କର ପ୍ରସିଦ୍ଧ 'ଭିନ୍‌ଦିକେସନ୍ ଅଫ୍ ଦି ରାଇଟସ୍ ଅଫ୍ ଉଇମେନ୍' ପୁସ୍ତକ ସହ ତୁଳନୀୟ । ନାରୀର ଦାବି ସରଳା ଦେବୀଙ୍କର ଅସାଧାରଣ ଧୀଶକ୍ତି ଏବଂ ଉଭୟ ଭାରତୀୟ ଓ ବୈଦେଶିକ ସମାଜ ଓ ଇତିହାସ ସଂପର୍କରେ ପ୍ରଚଣ୍ଡ ମେଧାର ନିଦର୍ଶନ ଅଟେ । ନାରୀମାନଙ୍କୁ ଅଧୀନ ବୋଲି ବିଚାରିବା, ବୈବାହିକ ସ୍ୱୀକୃତି ଦାୟରେ ନାରୀକୁ ବଳାତ୍କାର କରିବାର ସେ ଶକ୍ତ ବିରୋଧ କରିଥିଲେ । ବ୍ୟକ୍ତିଗତ ଜୀବନର ପରିଧି ବାହାରେ ଜାତୀୟ ସ୍ତରରେ ସମସ୍ତଙ୍କ ପାଇଁ ସରଳା ଦେବୀ ଜଣେ ଉଦାହରଣସ୍ୱରୂପ ବିପ୍ଲବିଣୀ ନାରୀ ଭାବରେ ଉଭା ହୁଅନ୍ତି ।

ସରଳା ଦେବୀ ଅନ୍ୟ ଏକ ନିବନ୍ଧରେ ବାସ୍ତବତାର ଅବଲୋକନ କରି ଲେଖିଛନ୍ତି, "ନାରୀ ସ୍ୱାଧୀନତା ପ୍ରଶ୍ନ ଉପରେ ଚାରିଆଡ଼େ ଆଜି ବିବିଧ ବିତର୍କ ଚାଲିଛି । ପୂର୍ବ ପଶ୍ଚିମ ସବୁଆଡ଼େ ସମସ୍ତେ ଏକସ୍ୱରରେ କହୁଛନ୍ତି ନାରୀ ମୁକ୍ତ ହେଉ । ପଶ୍ଚିମ ଦେଶମାନଙ୍କରେ ଏହାର କିଛି ଅଗ୍ରଗତି ହେଲାଣି । ମାତ୍ର ପୂର୍ବଭାଗରେ ଏହା ଏବେ ବି ପ୍ରାରମ୍ଭିକ ଅବସ୍ଥାରେ ଅଛି । ତେବେ ନିକଟ ଭବିଷ୍ୟତରେ ଏହି ବିତର୍କ ଆହୁରି ବ୍ୟାପକ ହେବ ଏଥିରେ ସନ୍ଦେହ ନାହିଁ ।

ଐତିହାସିକ ନାରୀ ଚରିତ୍ରମାନଙ୍କ ବିଷୟରେ ଲେଖି ସାରିବା ପରେ ଆହୁରି ଦୃପ୍ତ ସ୍ୱରରେ ସେ ପଚାରନ୍ତି, ''କିଏ ନାରୀର ଦୟନୀୟ ସ୍ଥିତି ବିଷୟରେ ଅବଗତ ନୁହେଁ ?'' ଅନ୍ତଃପୁରରେ, ଗୃହର ଅନ୍ଧକାର ମଧ୍ୟରେ ନାରୀ ତା'ର ସମଗ୍ର ଜୀବନ ବିତାଇ ଦିଏ। ବାହାର ଜଗତ ସହିତ ତା'ର କୌଣସି ସଂପର୍କ ନଥାଏ। ଘର ବାହାରେ କ'ଣ ଘଟୁଛି, ବଞ୍ଚିବାର କି କି ସଂଗ୍ରାମ ମଣିଷ କରୁଛି ସେ ବିଷୟରେ ସେମାନେ ଅଜ୍ଞ। ଅନ୍ଧଭଳି ପରିବାରର ପୁରୁଷ ଲୋକମାନଙ୍କର ସେବା କରିବା ଓ ଯତ୍ନ ନେବା ଯେମିତି ତା'ର ନିୟତି। ଏହାର ଅର୍ଥ ନୁହେଁ ସେବା ଓ ଯତ୍ନର କୌଣସି ମୂଲ୍ୟ ନାହିଁ। ତେବେ ଚାକରାଣୀ ପରି ସେମାନଙ୍କୁ ନ ଖଟାଇ ସେମାନଙ୍କ ସହିତ ସଭ୍ୟ ମଣିଷପରି ବ୍ୟବହାର କରିବା ଉଚିତ୍ ନୁହେଁ କି ? ଶିକ୍ଷା, ଜ୍ଞାନଆହରଣ ବା ସେଇ ଧରାବନ୍ଧା ଦୈନନ୍ଦିନ କାର୍ଯ୍ୟ ମଧ୍ୟରେ ଟିକେ ଆନନ୍ଦ ଲାଭ କରିବାର ସୁଯୋଗ ସ୍ତ୍ରୀଲୋକମାନଙ୍କର ପାଖରେ ନଥାଏ। ଖାଦ୍ୟ ପ୍ରସ୍ତୁତି ଓ କଠିନ ପରିଶ୍ରମ ମଧ୍ୟରେ ଘୂରୁଥାଏ ସେମାନଙ୍କ ସମଗ୍ର ଜୀବନ। ନିଜ ରନ୍ଧନଶାଳାର ହିଁ ସେ ସର୍ବମୟ କର୍ତ୍ତ୍ରୀ। ତେଣୁ ଯେତେବେଳେ ଆମେ ନାରୀମାନଙ୍କ କଥା ଚିନ୍ତା କରୁ ଆମର ଦୃଷ୍ଟି ଗୃହର ଅନ୍ଧକାର କୋଣ ଆଡ଼କୁ ଆପେ ଆପେ ପ୍ରସରି ଯାଏ।

ପାଠକମାନଙ୍କ ଅବଗତି ନିମନ୍ତେ ସରଳାଦେବୀ ବ୍ରିଟିଶ୍ ବିଚାରାଳୟର ନାରୀ ସ୍ୱାଧୀନତା ସଂପର୍କିତ ଏକ ଗୁରୁତ୍ୱପୂର୍ଣ୍ଣ ରାୟର ଅବତାରଣା ମଧ୍ୟ କରନ୍ତି। ବୈବାହିକ ଜୀବନରେ ମଧ୍ୟ ନାରୀର ନିଜସ୍ୱ ଜୈବିକ ଇଚ୍ଛା ଓ ସନ୍ତାନ ଜନ୍ମ ସଂପର୍କରେ ଚିନ୍ତା କରିବାର ଅଧିକାର ରହିଛି ବୋଲି ମାନ୍ୟବର ବିଚାରପତି ମେକାର୍ଡଙ୍କର ଗୁରୁତ୍ୱପୂର୍ଣ୍ଣ ରାୟ ସରଳା ଦେବୀଙ୍କୁ ପ୍ରଭାବିତ କରିଥିଲା। ''ପତ୍ନୀର ଶରୀର ତା'ସ୍ୱାମୀର ଅଧିକୃତ କ୍ଷେତ୍ର ନୁହେଁ। ପତ୍ନୀ ନିଜେ ନିଷ୍ପତ୍ତି ନେଇପାରେ। ସ୍ୱଇଚ୍ଛାରେ ପତିଙ୍କୁ ତ୍ୟାଗ କରି ସେ ନିଜର ରୁଚିଶୀଳ କର୍ମକ୍ଷେତ୍ର ଓ ସ୍ୱାଧୀନ ଜୀବନ ବାଛି ନେଇପାରେ। ସନ୍ତାନ ଜନ୍ମ କରିବାର ନିଷ୍ପତ୍ତି ମଧ୍ୟ ତା'ର। ପତିଙ୍କୁ ବିବାହ କରିଛି ବୋଲି ସେ ତାକୁ ଅଧୀନ କରି ରଖି ପାରିବେ ନାହିଁ। ନାରୀ କାହାର କ୍ରୀତଦାସୀ ନୁହେଁ। ନାଗରିକ ଭାବରେ ତା'ର ମଧ୍ୟ ସମାନ ସ୍ୱାଧୀନତା ଓ ଅଧିକାର ରହିଛି। ନିୟମକାନୁନ୍, ଆଦବ୍ କାଇଦାରେ ବୈବାହିକ ଜୀବନର ମାଧୁର୍ଯ୍ୟ ନ ଥାଏ। ପାରସ୍ପରିକ ବୁଝାମଣା, ଉଦାରତା, ସହୃଦୟତା, ନୈତିକତା, କ୍ଷମା, ତ୍ୟାଗ ଓ ସହଯୋଗିତା ହିଁ ଉତ୍ତମ ଜୀବନର ଆଧାର।'' ଆହୁରି ସେ କହୁଥିଲେ, ''ପ୍ରଚଳିତ ସମାଜର ଭିତ୍ତିହୀନ ନିୟମ କାନୁନ୍ ହିଁ ସମାଜର ଧ୍ୱଂସ ସାଧନ କରେ। ଭାରତର ଅଧୋଗତି ପଛରେ ରହିଛି ପୁରୁଷମାନଙ୍କର ତଥା ସମାଜର ନାରୀମାନଙ୍କ ପ୍ରତି ହତାଦର ଭାବ ଓ ସେମାନଙ୍କ ପ୍ରତି ଅସମ୍ମାନ ପ୍ରଦର୍ଶନ। ଏ ମନୋଭାବର ଶିକାର ହେଉଥିବାରୁ ମହିଳାମାନେ ଶିକ୍ଷାରୁ ବଞ୍ଚିତ ହୁଅନ୍ତି। ଜଣେ ଅଶିକ୍ଷିତା, ନିରକ୍ଷରା ନାରୀ କଦାପି ତା'ର ପରିବାର ଓ ସନ୍ତାନ ସନ୍ତତିଙ୍କର ଉପଯୁକ୍ତ ଯତ୍ନ ନେଇ ପାରେ ନାହିଁ। ତେଣୁ ସେମାନେ

ଅବିକଶିତ, ଦୁର୍ବଳ ଓ ରୋଗଗ୍ରସ୍ତ ହୋଇ ପଡ଼ନ୍ତି । ଏପରି ସନ୍ତାନମାନଙ୍କ ପାଖରୁ ଦେଶ ଓ ଜାତି କ'ଣ ଆଶାକରିବ । ମହିଳାମାନଙ୍କର ଏ ଅବସ୍ଥା ଯଥାଶୀଘ୍ର ପରିବର୍ତ୍ତନ ନ ଘଟିଲେ ଏବଂ ସେମାନେ ଶାରୀରିକ ଓ ମାନସିକ ସ୍ତରରେ ଶକ୍ତିଶାଳୀ ନ ହେଲେ, ଉପଯୁକ୍ତ ଶିକ୍ଷାପ୍ରାପ୍ତ ନ ହେଲେ ଦେଶର ପ୍ରଗତି ଅସମ୍ଭବ ।''

ସରଳା ଦେବୀଙ୍କର ଏହି ସଚେତନ ମନୋଭାବ ତାଙ୍କ ଉପନ୍ୟାସରେ ମଧ୍ୟ ସୁସ୍ପଷ୍ଟ । 'ବାସନ୍ତୀ' ଲେଖିବା ବେଳେ ନାରୀ ସ୍ୱାଧୀନତା ଓ ସମାଜର ପରିବର୍ତ୍ତନକୁ ଅଗ୍ରାଧିକାର ଦେଇଛନ୍ତି । ସରଳା ଦେବୀଙ୍କ ବ୍ୟତୀତ 'ବାସନ୍ତୀ'ର ଅନ୍ୟ ଲେଖକମାନେ ଥିଲେ ପୁରୁଷ । ସେମାନେ ହେଲେ, ହରିହର ମହାପାତ୍ର, କାଳିନ୍ଦୀ ଚରଣ ପାଣିଗ୍ରାହୀ, ଅନ୍ନଦା ଶଙ୍କର ରାୟ, ବୈକୁଣ୍ଠନାଥ ପଟ୍ଟନାୟକ ଓ ଶରତଚନ୍ଦ୍ର ମୁଖାର୍ଜୀ । ଏହି ଲେଖକମାନେ ମିଶି 'ନନ୍‌ସେନ୍‌ସ କ୍ଲବ୍' ଗଠନ କରିଥିଲେ ଯାହା ପରବର୍ତ୍ତୀ କାଳରେ 'ସବୁଜ ସାହିତ୍ୟ ସମିତି' ଭାବରେ ପରିଚିତ ହେଲା । ଓଡ଼ିଆ ସାହିତ୍ୟରେ ରୋମାଣ୍ଟିକ୍ ଚେତନାର ଉଦ୍‌ଘୋଷକ ଥିଲେ ଏହି ଗୋଷ୍ଠୀ ।

ଉପନ୍ୟାସଟିରେ ସରଳାଦେବୀଙ୍କ ଦ୍ୱାରା ଲିଖିତ ଅଂଶବିଶେଷ ବ୍ରଜ ଓ ତା'ର ଭାଉଜ 'ବାସନ୍ତୀ' ମଧ୍ୟରେ ତାର୍କିକ ସଂଳାପର ଅଂଶବିଶେଷ ଥିଲା । ବୈବାହିକ ଜୀବନ ପରିଧିରେ ଓ ବାହାରେ ନାରୀର ଭୂମିକା, ନାରୀ ଶିକ୍ଷା ଏବଂ ସାମାଜିକ ତଥା ରାଜନୈତିକ କ୍ଷେତ୍ରରେ ତା'ର ଅଂଶଗ୍ରହଣ ପ୍ରସଙ୍ଗ ଉପରେ ହିଁ କେନ୍ଦ୍ରୀଭୂତ ଥିଲା 'ବାସନ୍ତୀ' ଓ ବ୍ରଜଙ୍କର କଥୋପକଥନ । ଉଦାହରଣ ସ୍ୱରୂପ :

ବ୍ରଜ : ଏସବୁ ପାଇଁ ତା'ହେଲେ ନାରୀ ଶିକ୍ଷାର ପ୍ରସାର ଲୋଡ଼ା ।

ବାସନ୍ତୀ : ହଁ, ସୁଶିକ୍ଷା ବ୍ୟତୀତ ନାରୀକୁ ପୂର୍ଣ୍ଣ ସ୍ୱାଧୀନତା ମିଳିବ ନାହିଁ ।

ବ୍ରଜ : ଯେଉଁ ପୂର୍ଣ୍ଣ ସ୍ୱାଧୀନତାର କଥା ତୁମେ କହୁଛ, ସେଥିପାଇଁ ତା'ହେଲେ ନାରୀ ମାତୃତ୍ୱକୁ ପ୍ରତ୍ୟାଖ୍ୟାନ କରିବ ।

ବାସନ୍ତୀ : ନା । ମାତୃତ୍ୱ ସ୍ୱାଧୀନତାର ପରିପନ୍ଥୀ ନୁହେଁ । ମାତୃତ୍ୱ ପ୍ରତ୍ୟେକ ନାରୀର କାମ୍ୟ । ଏହି ମର୍ମରେ ତ ସେ ସ୍ୱତନ୍ତ୍ର । ମାତ୍ର ବହୁ ଅବାଂଛିତ ସନ୍ତାନର ଜନନୀ ହେବା ତା'ର ଇଚ୍ଛା ନୁହେଁ । ଏହା ତାକୁ ଅଯଥା ଦାୟିତ୍ୱ ଓ ଅନ୍ଧକାର ମଧ୍ୟରେ ବନ୍ଦୀ କରିଦିଏ । ମାତୃତ୍ୱ ଯଦି ନାରୀର ବ୍ୟକ୍ତିତ୍ୱ ଓ ବିକାଶର ଅନ୍ୟତମ ପନ୍ଥା ହୁଏ ତ ଏହା ବନ୍ଧନ ହେବନାହିଁ । ପ୍ରଜନନର ଦାୟରେ ସମାଜ ବ୍ୟକ୍ତିତ୍ୱର ଅବନତି ଘଟାଇଥାଏ । ବହୁ ସନ୍ତାନର ଜନନୀ ନିଜ ସନ୍ତାନମାନଙ୍କ ସମେତ ନିଜର ବି ଯତ୍ନ ନେଇ ପାରେ ନାହିଁ । ସେଥିପାଇଁ ତ ଜନନୀ ହେବାରେ ଆଜି ଆଉ ଗୌରବ ନାହିଁ । ମାତ୍ର ଏହା ସତ୍ୟ ଯେ ମାତୃତ୍ୱ ଓ ମୁକ୍ତଚେତନା ପରସ୍ପରର ବିରୁଦ୍ଧାଚରଣ କରନ୍ତି ନାହିଁ ।

ବ୍ରଜ : ମତେ ଲାଗୁଛି ନାରୀମାନଙ୍କ ପାଇଁ ଏତେସବୁ କଥା ତୁମେ ଯେଉଁ କହୁଛ ଏହା ତୁମର ବ୍ୟକ୍ତିଗତ ଇଚ୍ଛା ଓ ଅଭୀପ୍‌ସାରୁ ହିଁ ଉତ୍ପନ୍ନ ।

ବାସନ୍ତୀ : ହୋଇପାରେ । ତେବେ ଏ ପରିପ୍ରେକ୍ଷୀରେ ତୁମ ସହିତ ଝଗଡ଼ା କରିବାର ଇଚ୍ଛା ମୋର ନାହିଁ ।

ବ୍ରଜ : ଅର୍ଥାତ୍ ସଂପୂର୍ଣ୍ଣ ସ୍ୱାଧୀନତା ହାସଲ କରିବା ତମର ଏକମାତ୍ର ଲକ୍ଷ୍ୟ ।

ବାସନ୍ତୀ : (ଦୃଢ଼ ସ୍ୱରରେ) ଅବଶ୍ୟ ।

## ମୁକ୍ତି ଅନ୍ୱେଷଣରେ ସରଳାଦେବୀ

ଲେଖିକା, ସମାଜ ସଂସ୍କାରିକା ଓ ବିପ୍ଳବିଣୀ ସରଳା ଦେବୀଙ୍କର ଜୀବନୀ ତାଙ୍କଦ୍ୱାରା ରଚିତ 'ବାସନ୍ତୀ' ଚରିତ୍ରରେ କେତେକାଂଶରେ ପ୍ରତଫଳିତ । ୧୯୩୬ ଉତ୍କଳ ବିଶ୍ୱବିଦ୍ୟାଳୟ ସିନେଟ୍ ବୋର୍ଡ଼ର ସେ ପ୍ରଥମ ମହିଳା ସଦସ୍ୟା ଥିଲେ । ଓଡ଼ିଶାର ଏକମାତ୍ର ମହିଳା ପ୍ରତିନିଧି ଭାବରେ ସେ ସର୍ବପଲ୍ଲୀ ଡଃ ରାଧାକ୍ରିଷ୍ଣନ୍‌ଙ୍କ ଶିକ୍ଷା କମିଶନ୍‌ରେ ଯୋଗ ଦେଇଥିଲେ । ସେ ମଧ୍ୟ ନିଖିଳ ଭାରତ କଂଗ୍ରେସ କମିଟିର ପ୍ରଥମ ଓଡ଼ିଆ ସଦସ୍ୟା ଏବଂ ଉତ୍କଳ ସାହିତ୍ୟ ସମାଜର ସଂପାଦିକା ଓ ଉପ-ସଭାପତି ଆସନ ଅଳଙ୍କୃତ କରିଥିଲେ । ନିଖିଳ ଭାରତ ମହିଳା ସମ୍ମେଳନର ଷ୍ଟାଣ୍ଡିଂ କମିଟିକୁ ଦୁଇଥର ନିର୍ବାଚିତ ହୋଇଥିଲେ । ଓଡ଼ିଶା ସାହିତ୍ୟ ଏକାଡେମୀ ତାଙ୍କୁ ଦୁଇଥର ପୁରସ୍କୃତ କରିଥିଲେ । ତେବେ ବି ଉଭୟ ଆଞ୍ଚଳିକ ଓ ଜାତୀୟ ସ୍ତରରେ ଏହି ଅନନ୍ୟ-ଅସାଧାରଣ ପ୍ରତିଭାଙ୍କୁ ଯଥାର୍ଥ ସ୍ୱୀକୃତି ମିଳିନାହିଁ । ତାଙ୍କର ଅନେକ ରଚନାବଳୀ ଏବେ ବି ଅପ୍ରକାଶିତ ରହିଛି । ଅନେକ ପ୍ରକାଶିତ ପୁସ୍ତକ ଆଉ ବଜାରରେ ମିଳୁନାହିଁ । ତା' ସତ୍ତ୍ୱେ ଓଡ଼ିଶାର ରାଜନୀତି, ସାହିତ୍ୟ, ସମାଜସେବା ଓ ସଂସ୍କାର କ୍ଷେତ୍ରରେ ଆଗେଇ ଆସୁଥିବା ମହିଳାମାନଙ୍କ ପାଇଁ ସରଳାଦେବୀଙ୍କ ବ୍ୟକ୍ତିତ୍ୱ ଦିଗବାରେଣୀର କାର୍ଯ୍ୟ କରେ । ଓଡ଼ିଆ ସାହିତ୍ୟରେ ନାରୀବାଦ (ଫେମିନିଜିମ୍)ର ପ୍ରଚଳନ ସେ ହିଁ ଆରମ୍ଭ କରିଥିଲେ । କୁନ୍ତଳାକୁମାରୀ ସାବତ୍‌ଙ୍କ ପରେ ସରଳା ଦେବୀ ହିଁ ପ୍ରାତଃସ୍ମରଣୀୟା । ଯାହାଙ୍କ ପ୍ରତିଭା ଓ ବ୍ୟକ୍ତିତ୍ୱ ପ୍ରତ୍ୟେକ ନାରୀ ପାଇଁ ଏକ ଦୃଷ୍ଟାନ୍ତ । ତାଙ୍କର ଆଗ୍ନେୟ ବ୍ୟକ୍ତିତ୍ୱ, ଧୀଶକ୍ତି, ଓଡ଼ିଆ ନାରୀଙ୍କ ଦୟନୀୟ ସ୍ଥିତି ଓ ତା'ର ସମାଧାନ ଦିଗରେ ତାଙ୍କର ପ୍ରୟାସ, ନାରୀ ମୁକ୍ତିର ପ୍ରବକ୍ତା ଭାବରେ ତାଙ୍କର ଦୃଢ଼ ସ୍ୱର ଉତ୍ତୋଳନ, ସମାଜ ସେବା, ରାଜନୈତିକ ଜ୍ଞାନ ସରଳା ଦେବୀଙ୍କୁ ଏହି ସମ୍ମାନର ଅଧିକାରିଣୀ କରାଏ । ଉପନ୍ୟାସର ବାସନ୍ତୀ ଚରିତ୍ର ପରି ବ୍ୟକ୍ତିଗତ ଜୀବନରେ ମଧ୍ୟ ସାହିତ୍ୟ ଓ ନାରୀମୁକ୍ତି ଆନ୍ଦୋଳନ ପ୍ରତି ସେ ଅଙ୍ଗୀକାରବଦ୍ଧ ଥିଲେ ।

୧୯୮୬ ଅକ୍ଟୋବର ୪ ତାରିଖରେ ଏହି ମହିୟସୀ ମହିଳାଙ୍କର ଦେହାବସାନ ଘଟିଥିଲା ।

**ସଚ୍ଚିଦାନନ୍ଦ ମହାନ୍ତି**



ପ୍ରଥମ ଧାଡ଼ି : ରମା ଦେବୀ, କୁନ୍ତଳା କୁମାରୀ, ଜାହ୍ନବୀ ଦେବୀ, ପୁରୁ ଦେବୀ (ବାମରୁ ଡାହାଣ)

ଦ୍ୱିତୀୟ ଧାଡ଼ି : ସରଳା ଦେବୀ, କୋକିଳା ଦେବୀ (ବାମରୁ ଡାହାଣ)

# ମୋ ଜୀବନରେ ମହାତ୍ମାଗାନ୍ଧୀଙ୍କର ଅବଦାନ

ମହାତ୍ମାଗାନ୍ଧୀଙ୍କ ସହିତ ମୋର ଓଡ଼ିଶାରେ ବହୁତ ଥର ଏବଂ କଂଗ୍ରେସ ଅଧିବେଶନ ବସୁଥିବା ବହୁସ୍ଥାନରେ ଦର୍ଶନ ଘଟିଥିଲା । ଓଡ଼ିଶାକୁ ଆସି ସେ ପ୍ରଥମେ କଟକ ସହରରେ ପହଞ୍ଚିଥିଲେ । ସେହି କାଳରୁ ମୁଁ ତାଙ୍କ ପଥର ପଥିକିନୀ ହୋଇ ଜୀବନ ଉତ୍ସର୍ଗିତ କରିଥିଲି । ତାଙ୍କର ପ୍ରେରଣାରେ ଭାରତ ଜନନୀ ପଦରୁ ଶୃଙ୍ଖଳ ମୋଚନ ପାଇଁ ସମସ୍ତ ଜୀବନ ତାଙ୍କର ଆଦର୍ଶ ଓ ପ୍ରେରଣା ମୋର ସମଗ୍ର ଚିନ୍ତା ବିଚାର ଓ କର୍ମଧାରାକୁ ପରିଚାଳିତ କରି ମୋତେ ଘରଛଡ଼ା କରିଥିଲା । ତାଙ୍କର ତ୍ୟାଗ ମନ୍ତ୍ରରେ ଦୀକ୍ଷିତା ହୋଇ ମୁଁ ମୋର ପାରିପାର୍ଶ୍ୱିକତା ଓ ସଂସାର ଯାତ୍ରାର ସଞ୍ଚୟ ପଥକୁ ଭୁଲି ଯାଇଥିଲି । ଗାନ୍ଧିଜୀ ମୋର କାୟାକଳ୍ପ କରି ନୂଆ ଧାରଣା ନୂଆ ଜଗତ ନୂଆ ସମାଜ ନୂଆ ଚିନ୍ତା ଓ କର୍ମ ମାଧ୍ୟମରେ ମୋର କୋରଙ୍କତ ଜୀବନରେ ଶତଦଳ ଫୁଟାଇଥିଲେ ବିପ୍ଳବର ଅରୁଣାଶିଖାରେ । ସେହି କାଠଯୋଡ଼ି କୂଳ କୁଟୀରକୁ ଆସିଥିଲେ ସହରର ବିଭବଶାଳୀ ପ୍ରତିପତ୍ତିଶାଳୀ ଅସଂଖ୍ୟ ନରନାରୀ ଆବାଳବୃଦ୍ଧବନିତା । ଅସଂଖ୍ୟ ଦୁଃସ୍ଥ ନରନାରୀଙ୍କର ମେଳା । କେହି ଖାଲି ହାତରେ ନୁହେଁ— ଫଳପୁଷ୍ପର ସମ୍ଭାର ଉପହାର ସମସ୍ତଙ୍କ ହାତରେ । କୁଟୀର କଣ ପୂର୍ଣ୍ଣ ହେଉଥିଲା ? ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ ସବୁ ମୁଁ ବିତରଣ କରୁଥିଲି ଗରିବ ମଳିନବସ୍ତ୍ରଧାରିଣୀ ନାରୀ ଓ ଶିଶୁମାନଙ୍କୁ । ଗାନ୍ଧିଜୀ ବିଶ୍ରାମ ଚାହୁଁଥିଲେ । ଦ୍ୱାର ମୁହଁରେ ଲୋକ ଭରି ଯାଉଥିଲେ । ମୋ ଉପରେ ପହରା ଦବା ଭାର ଥିଲା । ସମସ୍ତେ ଦର୍ଶନାର୍ଥୀ । ମୁଁ ଥରକୁ ଥର ଯାଇଁ ମହାତ୍ମାଙ୍କୁ ଦର୍ଶନାର୍ଥୀ ଲୋକ ଗହଳିର ସମ୍ବାଦ ଦେଉଥିଲି । ମହାତ୍ମା କହୁଥିଲେ ''ତୁ ମତେକି ବସେଇ ଉଠେଇ ଦବୁନାହିଁ ।'' ମୁଁ କହିଲି ମୁଁ କଣ କରିବି ? ଲୋକେ ତ ଖରାବର୍ଷା ନ ମାନି ରୁଣ୍ଡ । ଆପଣଙ୍କୁ ଟିକେ ଦେଖିବାକୁ ଉନ୍ମାଦପ୍ରାୟ । ଆପଣଙ୍କ ସ୍ୱାସ୍ଥ୍ୟ ଶ୍ରମକ୍ଲାନ୍ତି ସେମାନେ ବୁଝୁନାହାନ୍ତି । ମୁଁ ପ୍ରାର୍ଥନା କଲେବି ହଟୁ ନାହାନ୍ତି । ଆମ୍ବଗଛ ମୂଳେ ସେହିପରି ଖରା ତଳେ ଠିଆ ରହିଛନ୍ତି । ଗାନ୍ଧିଜୀ ପଦାକୁ ଆସୁଥାନ୍ତି । ପୁଣି ଲୋକଙ୍କୁ ଦର୍ଶନ ଦେଇ ଯାଉଥାନ୍ତି । ଗାନ୍ଧିଜୀ କହଲେ ''ମୋତେ ତୁ ଏତେଥର ଉଠାଉଛୁ, କଷ୍ଟ ଦେଲୁ । ହରିଜନ ପାଣ୍ଠି କଥା କଣ କରୁଛୁ ? ମୁଁ କହିଲି, ମହାତ୍ମାଜୀ ଆପଣ ୪ଟା ବେଳକୁ ସହରକୁ ଯିବେ, ମୁଁ ତ ନାରୀସଭା ଡାକିଛି ଟାଉନ୍ ହଲ୍‌ରେ । ସେଠାରେ ସବୁ ନାରୀମାନେ ଏକଜୁଟ୍ ହେବେଣି, ଆପଣ ଗଲେ ଆବେଦନ କଲେ ଯିଏ ଯାହା ପାରନ୍ତି ପାଣ୍ଠି ପାଇଁ ବଢ଼େଇ ଦେବେ ।

ସନ୍ଧ୍ୟା ପୂର୍ବରୁ ଗାନ୍ଧିଜୀ କଟକ ଆସିଲେ । ରାମଚନ୍ଦ୍ର ଭବନକୁ ଆଗରୁ ନୋଟିସ୍ ବାଣ୍ଟିଥାଏ । ଗାନ୍ଧୀଙ୍କ ଦର୍ଶନ ପାଇଁ ଘରରେ ନାରୀମାନେ ଭର୍ତ୍ତି । ମହାତ୍ମାଜୀଙ୍କ ସଙ୍ଗରେ

ଆମ କଂଗ୍ରେସୀ ସ୍ୱେଚ୍ଛାସେବକ ଥାନ୍ତି । କେହି ସେତେବେଳେ ନେତା ହୋଇନଥାନ୍ତି । ସମସ୍ତେ ଆମରି କ୍ଲାସର, ତେଣୁ ସୁଷ୍ଠରେ କାହା ମାମଲତକାରୀ ନ ଥିବାରୁ କାମ ହେଲା । ମହାତ୍ମାଜୀ ତାଙ୍କ ଆସିବାର ଉଦ୍ଦେଶ୍ୟ ସବୁ କହିଗଲେ ଓ ହରିଜନମାନଙ୍କର ଦୁରାବସ୍ଥା ବର୍ଣ୍ଣନା କରି ଦେଶରେ ମା ଭଉଣୀଙ୍କର କର୍ତ୍ତବ୍ୟ ସମ୍ବନ୍ଧରେ ବୁଝାଇ ହରିଜନ ପାଣ୍ଠି କଥା କହିଲେ । ତାପରେ ଗାନ୍ଧୀଙ୍କ ହିନ୍ଦି ଭାଷଣ ଓଡ଼ିଆରେ ମୁଁ କହି ମା ଭଉଣୀଙ୍କୁ ହରିଜନ ପାଣ୍ଠିପାଇଁ ଟଙ୍କା ଓ ଗହଣା ଦବାକୁ ନିବେଦନ କଲି । କଟକରେ ଅଧିକାଂଶ ସଭାସ୍ଥ ମହିଳାମାନେ ଟଙ୍କା ଦେଲେ ଓ ଯେଉଁମାନେ ଟଙ୍କା ନ ଆଣିଥିଲେ, ସେମାନେ ନିଜ ହାତ, ବେକ, ଗଳା ଆଙ୍ଗୁଠି ଖାଲି କରି, ଗହଣା ଖୋଲି ସ୍ୱେଚ୍ଛାସେବକ ଦୁଇଜଣ ଧରିଥିବା ଏକ ଧଳା ଚଦରରେ ଅଜାଡ଼ି ଦେଲେ । ଗହଣା ଅନ୍ତତଃ ୬୦/୭୦ ଭରିରୁ ଊର୍ଦ୍ଧ୍ୱ ଥିଲା ଓ ୧୦୦୦ ଟଙ୍କା ଚାନ୍ଦା ଜମା ହୋଇଗଲା ।

ମହାତ୍ମାଜୀ ଏ ଦୃଶ୍ୟ ଦେଖି ନାରୀମାନଙ୍କର ଜାଗ୍ରତ ଆତ୍ମାର ସରଳ ମନର ନିଷ୍କାମ ସ୍ୱଚ୍ଛ ହୃଦୟର ଦାନ ପାଇ ଖୁସି ହେଇ ହସିଲେ, ଟଙ୍କା ଗହଣା ଅନ୍ୟ ଲୋକ ରଖିଲେ, ସଭା ଭାଙ୍ଗିଲା । ସକାଳୁ ସଞ୍ଜ ୬ଟା ବେଳ ଯାଏ ତାଙ୍କ ସଙ୍ଗରେ ରହିଥିଲି । ଗାନ୍ଧିଜୀ ଫଳ ଝୁଡ଼ିରୁ କିଛି ନଖାଇ ସବୁ ପିଲାମାନଙ୍କୁ ଦାତାମାନଙ୍କ ସାମନାରେ ବଣ୍ଟାଉଥିବାର ଦେଖି ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗୁଥିଲା । ଯେଉଁମାନେ ଝୁଡ଼ିଏ ଫଳ ଆଣି ତାଙ୍କୁ ଦେଉଥାନ୍ତି ସେମାନେ ଟିକେ ଦୁଃଖାରୁଢ଼ ହୋଇ ଯାଉଥାନ୍ତି । କାରଣ ମହାତ୍ମାଙ୍କ ମୁହଁରେ ନ ଲାଗି, ଅପରିଚିତ ନାରୀ ଓ ଶିଶୁ ଦୁଃଖୀ ଲୋକେ ସେ ସବୁ ନେଉଥାନ୍ତି । ଗାନ୍ଧିଜୀ, କସ୍ତୁରବା, ଦେବଦାଶ ଗାନ୍ଧୀ ପହିଲେ ଆସି ୧୯୨୧ ସାଲରେ ସ୍ୱରାଜ୍ୟ ଆଶ୍ରମରେ ରହିଥିଲେ । ପରେ ଆସି ଅନ୍ନଦାରାୟ ତାପରେ ନବବାବୁଙ୍କ ଘରେ ରହିଥିଲେ । ସେ ସମସ୍ତ ସ୍ଥାନକୁ ତାଙ୍କୁ ଦର୍ଶନକରିବାକୁ ଯାଇଥିଲି । ସେ ଚରଖା କାଟୁଥାନ୍ତି ଓ ସମସ୍ତଙ୍କୁ ସୂତା କାଟିବାକୁ କହୁଥିଲେ । କଟକରୁ ସେ ଗଲାପରେ ସହରର ଓ ଗ୍ରାମାଞ୍ଚଳର ବହୁ ନରନାରୀମାନେ ଓ ବହୁ ଆଧୁନିକ ନେତାମାନେ ସୂତା କାଟିଥିଲେ ତାକୁଡ଼ିରେ । ସେ ସମୟରେ ଅମ୍ବର ଚରଖା ନ ଥିବାରୁ ନାରୀମାନେ ସୂତା କାଟୁଥିଲେ କାଠର ପୁରୁଣାକାଳିଆ ଚରଖାରେ । ହରିଜନଙ୍କ କାମ, ସୂତାକଟା ପ୍ରଚାର, ସ୍ୱଦେଶୀ ଜିନିଷ କରିବା ଓ କିଣିବା ଲୁଗା ଉତ୍ପାଦନ କରିବା କଥା ତାଙ୍କ ଭାଷଣର ମର୍ମ ଥିଲା । ଅସ୍ପୃଶ୍ୟତା ବର୍ଜନ, ମଦର ବର୍ଜନ ମଧ୍ୟ ତାଙ୍କର ବିଶେଷ ଭାବରେ ସମସ୍ତଙ୍କୁ ଉପଦେଶ ଥିଲା । ସେ କହୁଥିଲେ ସ୍ୱରାଜ ସଂଗ୍ରାମର ତାଲିମ ପାଇ ସବୁ କର୍ମୀମାନଙ୍କୁ ଏଇସବୁ କାମ କରିବାକୁ ପଡ଼ିବ । ଭାରତର ସଂହତି ରଖି ଏକତାବଦ୍ଧ ହେବାକୁ ପଡ଼ିବ । ସରକାର ସଙ୍ଗେ ଅସହଯୋଗ ଅହିଂସା ଲଢ଼େଇ କରିବାକୁ ହେଲେ ସବୁ ବିଳାଶ ବ୍ୟସନ ଛାଡ଼ି, ଆତ୍ମଶୁଦ୍ଧି କରି, ସତ୍ୟ ଓ ଅହିଂସା ସଦାଚରଣ ସମସ୍ତଙ୍କୁ କରିବାକୁ ହେବ ।

ମହାତ୍ମା ଗାନ୍ଧୀଙ୍କ ନିକଟକୁ ମୁଁ ଚାରିଟି ପତ୍ର ଲେଖିଥିଲି ବିଭିନ୍ନ ଅବସ୍ଥାରେ । ପ୍ରଥମ ଚିଠିର ଉତ୍ତର 'Young India' ରେ ସେ ଛାପିଥିଲେ । ୧୯୪୦ ସତ୍ୟାଗ୍ରହ ବେଳେ ଭାରତ ଛାଡ଼ ଧ୍ୱନି କରିବାକୁ ଯେଉଁ ନାଁ ତାଲିକା ଯାଇଥିଲା, ତନ୍ମଧ୍ୟରୁ ସେ ମୋର ନାମ ପ୍ରଥମ କରି ମଞ୍ଜୁର୍ କରି ଦେଇଥିଲେ । ତାଙ୍କୁ ମୁଁ ପ୍ରଥମ ସତ୍ୟାଗ୍ରହ କରିବି ବୋଲି ଲେଖିଥିଲି । ତେଣୁ ତାଙ୍କ ଡକରାରେ ଓଡ଼ିଶାରେ ପହିଲେ ଭାରତ ଛାଡ଼ ଧ୍ୱନି କରିବାରେ ମୋର ପାଳି ପଡ଼ିଥିଲା ।

ସବୁଥର ଜେଲ୍ ଗଲାପରି ଏଥର ମଧ୍ୟ ପ୍ରଥମ ଚୌଧୁରୀ ବଜାରରେ ଧ୍ୱନି ଦେଇ ଜେଲ୍ ଗଲି । ଜେଲ୍‌ରେ ରହିବା କାଳରେ କଂଗ୍ରେସବାଲାମାନଙ୍କ ବଦ୍ ଆଚରଣ ଦେଖି ସେମାନେ ଜେଲ୍‌ରେ ସତ୍ୟ, ଅହିଂସା ଆଚରଣ ନ କରି କେବଳ ବନ୍ଦୀ ସଂଖ୍ୟା ବୃଦ୍ଧି କରୁଛନ୍ତି ଓ ପରସ୍ପର ମଧ୍ୟରେ ବାଦବିବାଦ କରୁଛନ୍ତି । ତେଣୁ ଗାନ୍ଧିଜୀଙ୍କ ନିକଟକୁ ସବୁ ବର୍ଣ୍ଣନା କରି ମୁଁ ପତ୍ର ଲେଖିଥିଲି ଓ କାରଣ ସହିତ କଂଗ୍ରେସରୁ ଇସ୍ତଫା ଦେବାକୁ ଲେଖିଥିଲି । ୧୯୪୦ ପରେ ଜେଲ୍‌ରୁ ଆସି ଇସ୍ତଫା ଦେଇଥିଲି । କାରଣ ଯେଉଁମାନେ କଂଗ୍ରେସର ମେମ୍ବର ହେଉଥିଲେ, ରସିଦରେ ଥିବା ସତ୍ୟ ଅହିଂସା ବ୍ରତରେ ବ୍ରତୀ ହେବେ ବୋଲି ଟଙ୍କା ଦେଇ ମେମ୍ବର ହେଉଥିଲେ । ସେମାନେ ସମସ୍ତେ ଯଥାର୍ଥରେ ସତ୍ୟ ଅହିଂସା ପାଳି ଦେଶ ସେବାର ଉପଯୁକ୍ତ ସେବା କରିବା ମତଲବରେ ସେମାନେ ଜେଲ ଆସିଥିବା କଥା ଗାନ୍ଧିଜୀଙ୍କୁ ଲେଖିଥିଲି । ପୁଣି ସେପରି ଚିଠି ରାଜେନ୍ଦ୍ର ପ୍ରସାଦଙ୍କୁ ଦେଇଥିଲି । ବଙ୍ଗଳା ଓ ଇଂରାଜୀ କାଗଜରେ ଛାପି ।

ଅନ୍ୟମାନେ ଏହାର ବିରୋଧ କଲେ । ଏସେମ୍ବ୍ଲିଯୁଦ୍ଧ ସମୟରେ କଂଗ୍ରେସର ଓ ଦେଶବାସୀ ଆମକୁ ରକ୍ଷା କରିବାକୁ ଚାହୁଁଥିଲାବେଳେ ଆମେ ସେମାନଙ୍କୁ ହତାଶ କରିଦେଇ Assembly ଛାଡ଼ିବା ଆମ୍ଭମାନଙ୍କର ଅନ୍ୟାୟ ହେବ ବୋଲି ମୁଁ ଗାନ୍ଧିଙ୍କୁ ଲେଖିଥିଲି । ସେ ମତେ ଚିଠି ଲେଖିଲେ କଂଗ୍ରେସ୍‌ର ନିର୍ଦ୍ଦେଶ ନ ଆସିଲେ ତମେ ସଭ୍ୟ ପଦ ଇସ୍ତଫା ଦେଇ ନୂଆ ନିର୍ବାଚନରେ ଲଢ଼ି ତୁମର ମତ ଦେଶକୁ ଜଣେଇ ଦେଶବାସୀଙ୍କର ମତ ନେଇ Assembly କୁ ଆସ ବୋଲି ଲେଖିଥିଲେ । କଂଗ୍ରେସ ସଭାପତି ରାଜେନ୍ଦ୍ର ପ୍ରସାଦ ମତେ ଏହିପରି ଲେଖିଥିଲେ । ମୁଁ ଗାନ୍ଧିଜୀଙ୍କୁ ଚିଠି ଲେଖିଥିଲି । ରାଜେନ୍ଦ୍ରଙ୍କୁ ସଭ୍ୟପଦ ଛାଡ଼ିବାକୁ ଆପଣ କହୁ ନାହାନ୍ତି କାହିଁକି ? ରାଜାଜୀ ମଧ୍ୟ ମୋର ମତାନୁବର୍ତ୍ତୀ ପତ୍ରରେ ତୁମର ସମୁଦି ବୋଲି ତାଙ୍କୁ କହୁନା ମୋତେ କିପରି ଓ କାହିଁକି କହୁଛ ? ଲୋକେ ମଧ୍ୟ ଆମେ ଆସେମ୍ବ୍ଲି ଛାଡ଼ିବା ପସନ୍ଦ କରୁନାହାନ୍ତି । ଏହା ପକ୍ଷପାତ ବିଚାର ହେଉଛି । ଏହାର କିଛିକାଳ ପରେ ରାଜେନ୍ଦ୍ରବାବୁ ମତେ ଲେଖିଥିଲେ ତୁମର ଯୁକ୍ତି ମହାତ୍ମାଗାନ୍ଧି ଶୁଣି ଉପରୋକ୍ତ ବ୍ୟକ୍ତିମାନଙ୍କୁ ମଧ୍ୟ ଆସେମ୍ବ୍ଲି ସଭ୍ୟ ପଦ ଛାଡ଼ିବାକୁ ଲେଖିଲେ । ତୁମେ ଛାଡ଼ିଦିଅ । ମାତ୍ର ସେ ସମୟରେ ସେନାମାନଙ୍କ ନିମନ୍ତେ ବହୁ ଦାମୀ ଜିନିଷ ଖାଦ୍ୟ ବସ୍ତ୍ର

ସବୁ ଓ ଦେଶରେ ଖାଦ୍ୟ ବସ୍ତ୍ର ସବୁ ଜିନିଷ ନିଅଣ୍ଟ ଓ ଦୁର୍ମୂଲ୍ୟତା ଦୁର୍ନୀତି ଗ୍ରାସ କରି ଚାଲିଥିବାରୁ ଲୋକେ ଧାନ ଚାଉଳ ଗାଁକୁ ଗାଁ ପୁଲିସ ପଠେଇ ଜବରାନ୍ ନେଇ ଯାଉଥିବାରୁ, ନାହିଁ ନୋହିବା କଷ୍ଟ ପାଇଲେ । ଦେଶରୁ ଲୁହା, କାଠଗଛ ଜଙ୍ଗଲରୁ କଟା ହୋଇ, ଧାନ, ଚାଉଳ, ଲୁଗା ଓ ଅନ୍ୟାନ୍ୟ ଜିନିଷପତ୍ର ଚାଲିଯାଉ ଥିବାରୁ ଏହାର ବିଷ ଫଳରେ ଦେଶବାସୀ ମରିଯିବେ ବୋଲି ମୋର ମତ ଥିଲା । ଜିଲ୍ଲା କିଲିଟର ଶ୍ରୀ ଶର୍ମା, ଶ୍ରୀ ଏଲ୍.ପି. ସିଂହ ମୋତେ ଡାକିକରି କହିଥିଲେ ଗାଁବାଲାଙ୍କୁ ଧାନ ଚାଉଳ ଗାଡ଼ି ନଛାଡ଼ିବାକୁ କୁହ ନଚେତ୍ ଦୁର୍ଭିକ୍ଷରେ ଲୋକେ ମରିଯିବେ । ଯୁଦ୍ଧ ଚାନ୍ଦା ମଧ ସରକାରୀ ତହସିଲଦାର, ଡେପୁଟି ରେଭିନ୍ୟୁ ସେକ୍ରେଟାରି, ଏସ୍.ଡି.ଓ, ମନ ଇଚ୍ଛା ଅସୁଲ କରି ଲୋକଙ୍କୁ ରସିଦ୍ ନଦେଇ ଖାଇ ଚାଲିଥାନ୍ତି । ଖୋର୍ଦ୍ଧା, ବାଙ୍କୀ, ଅନୁଗୁଳ ପ୍ରଭୃତି ଖାସ୍ ମାହାଲ୍ ଅଞ୍ଚଳରେ ମନଇଚ୍ଛା ଚାନ୍ଦା ଅଫିସର ଅସୁଲ୍ କରି ଯୁଦ୍ଧ ଚାନ୍ଦା ନାଁରେ ନେଉଥାନ୍ତି ଓ ସରକାର ନାଟ, ଗୀତ, ସଭା, ସମିତି, ରଙ୍ଗପବ୍ଲିସିଟୀ, ଯୁଦ୍ଧ ସାମୁଖ୍ୟ କମିଟୀ ମାନ ପ୍ରତିଷ୍ଠା କରି ଯୁଦ୍ଧକୁ ଲୋକଙ୍କ ସ୍ୱାର୍ଥ ନିମିତ୍ତ କରାଯାଉଛି ବୋଲି କହି ଲୋକ ସହଯୋଗ କାମନା କରି କାମ କରୁଥାନ୍ତି । ନାରୀମାନଙ୍କୁ ଯୁଦ୍ଧ ଚାକିରି ପ୍ରଲୋଭନ ଦିଆଯାଇ ସେମାନଙ୍କ ସର୍ବନାଶ ହେଉଥାଏ । ବିଶିଷ୍ଟ ଭଦ୍ର କନ୍ୟାମାନେ ଏଥିରେ ଶୀକାର ହେଉଥାନ୍ତି । ଏମାନଙ୍କୁ ଦଳ କୁହାଗଲା । ପରେ ଏମାନଙ୍କ ବିଡ଼ମ୍ୱିତ ଜୀବନକଥା ପାର୍ଲାମେଣ୍ଟରେ ପଡ଼ିଥିଲା । ଓଡ଼ିଶା ଗାଁ ଗଣ୍ଡାରୁ ବହୁନାରୀମାନଙ୍କୁ ସେନାମାନଙ୍କ ପାଇଁ ଗାଁ ଟାଉଟରଙ୍କୁ ଟଙ୍କା ଦେଇ ଓ ପରିବାରରେ ମଇଦା, ଚାଉଳ, ଚିନି, କିରୋସିନୀ, ଲୁଗା ଦେଇ ଟ୍ରକ ବସ୍‌ରେ ବୁହା ହେଉଥିଲା । ଯେଉଁଠି ସେନା ଶିବିର ଓଡ଼ିଶାରେ ହେଇଥିଲା, ସେଠାରେ ଏ ପାଲା ଚାଲିଲା । ଏହିସବୁ କଥା ଦେଶ ଏସେମ୍ଲି ଛାଡ଼ିବା ମନ୍ତ୍ର, ଛାଡ଼ିବା ଲୋକଙ୍କୁ ନିଃସହାୟ ହତାଶ କରିଦବା ବହୁ ଏମ୍.ଏଲ୍.ଏ ଚାହିଁଲେ ନାହିଁ ଓଡ଼ିଶାରେ । ମୁଁ ମଧ ଏହି ଛାଡ଼ିବା ଉଚିତ ନୁହେଁ ବୋଲି ଗାନ୍ଧିଜୀଙ୍କୁ ପତ୍ର ଲେଖିଥିଲି । ସେ ଏହାର ବିରୋଧ କଲେ । ତେଣୁ ତାଙ୍କ କଥା ମୁଁ ନ ମାନି ଆମ ନେତା ସ୍ୱାମୀ ବିଚିତ୍ରାନନ୍ଦଙ୍କ ଅନୁମତି ନେଇ ଏସେମ୍ଲିକୁ ଯାଉଥିଲି ।

ଆମ କଂଗ୍ରେସ ଦଳରୁ ବହୁ ଏମ୍.ଏଲ୍.ଏ, ଏସେମ୍ଲି ଛାଡ଼ିଥିଲେ । ପୁଣି ବିଶିଷ୍ଟ କାମରେ ଯାଉଥିଲେ । ମୁଁ ଯାଉଥିଲି ହିନ୍ଦୁ ମହିଳା ସମିତି ବିଲ୍ ଏସେମ୍ଲିରେ ଉପସ୍ଥାପିତ କରିଥିଲି । ମୋର ବହୁ ଭଲ ପ୍ରସ୍ତାବ ଓ ବିଲ୍‌ମାନ କଂଗ୍ରେସ୍ ନେତାମାନେ କାଟୁଥିଲେ । ତେଣୁ ସେମାନେ ଜେଲ୍ ଗଲା ପରେ ନାରୀ ଉନ୍ନତିମୂଳକ ସାମାଜିକ ଉନ୍ନତିକର କାମ କରିବାର ଲୋଭ ମୋର ଥିଲା । ସେ ସୁଯୋଗ ମୁଁ ନେବା ଓ ଯୁଦ୍ଧବେଳେ ଲୋକଙ୍କୁ ରକ୍ଷା କରିବା ମୋର ଥିଲା ମତଲବ । କାରଣ କଂଗ୍ରେସ୍‌ର ଗାନ୍ଧୀ ଚେଲା ସବୁ ନେତାମାନେ ମୋତେ ବଡ଼ ଈର୍ଷିତ ଚକ୍ଷୁରେ ଦେଖି ମୋର ସବୁ ଉନ୍ମେଷଣା, ସବୁ କାମକୁ ବାଧା ଦେଉଥିଲେ । ଏସେମ୍ଲିରେ ତେଣୁ ସେମାନଙ୍କ ଠାରୁ ଫାଙ୍କା ପାଇ ବିରୋଧିଦଳର

ସହାନୁଭୂତି ପାଇ କେତେକ କାମ କରିବା ପାଇଁ ମୁଁ ଏସେମ୍ଲି ଛାଡ଼ିବା ବିରୋଧି ଥିଲି । ବିରୋଧିପକ୍ଷ ନେତାମାନଙ୍କର ମତେ ଶିକ୍ଷାଦେଇ ମନ୍ତ୍ରୀପଦ ଯାଚିବା, ୨୦୦ ଏକର ଜମି ଯାଚିବା, କୋଠା ଓ ୧ ଲକ୍ଷ ନଗଦ ଯାଚିବା ସବୁ ମୁଁ ପ୍ରତ୍ୟାଖ୍ୟାନ୍ କରିଥିଲି । ଗାନ୍ଧିଜୀଙ୍କ ସଙ୍ଗେ ଅମତ ବା କଂଗ୍ରେସ୍ ପ୍ରସ୍ତାବ ସଙ୍ଗେ ଅମତ ହେଲେ ମଧ୍ୟ କଂଗ୍ରେସରେ ଗାନ୍ଧିଜୀଙ୍କ ନେତୃତ୍ୱ ଓ ତାଙ୍କ ପାଇଁ ତାଙ୍କ ଡାକରାରେ ଭାରତର ସ୍ୱାଧୀନତାପାଇଁ ମୁଁ ଅତି ଅଳ୍ପ ବୟସରୁ ନିଆଁକୁ ଡେଇଁଲି । ସେହି ଯୋଗମୂଳକ ଜୀବନର ଆଦର୍ଶକୁ ମୁଁ ଧନ ଓ ପଦ ପ୍ରତିଷ୍ଠା ପ୍ରଲୋଭନରେ ଛାଡ଼ିଦେଇ ଜୀବନକୁ ଭସାଇ ଦେଇନଥିଲି । ତେଣୁ ଗାନ୍ଧିଜୀଙ୍କ ଯୋଗୀୟ ଚରିତ୍ରର ନେତୃତ୍ୱ ଯେ ମହା-ମହା ବିପଦ ସାଗରରୁ ଉଦ୍ଧାରି ଯଥାର୍ଥ କୂଳରେ ଠିଆ କରାଇ ଆଣିଲା, ମୋର ସେତିକିରେ ଆତ୍ମ ପ୍ରସାଦର ଆନନ୍ଦ, ମୁଁ ଯେ ଗାନ୍ଧିଜୀଙ୍କ ନାଁ ବୁଡ଼ାଇ ଆଦର୍ଶ ନଷ୍ଟକରି ନିଜକୁ ନଷ୍ଟ ନକରି, ସବୁ କିଛି ମରୁଡ଼ିରେ ଏକାକିନୀ କଟକରେ ପୁତ୍ର ସ୍ୱାମୀ ଜେଲ୍‌ରେ ଥିଲାବେଳେ ନିଜକୁ ରକ୍ଷାକରି ପାରିଛି । ପ୍ରତିକୂଳ ପବନରେ ମୋର ଜୀବନ ନୌକା ଅକୂଳ ଅଜଣା ସମୁଦ୍ରରେ ଓଲଟି ପଡ଼ିନାହିଁ ଏତିକି ଗାନ୍ଧିଜୀଙ୍କର ମୋର ଜୀବନରେ ପ୍ରତ୍ୟକ୍ଷ ଅବଦାନ ଓ ସେଥିପାଇଁ ମୁଁ ଚିରଦିନ ତାଙ୍କ ପାଖେ କୃତଜ୍ଞବୋଧ କରିଛି । ଟିକେ ପାଦ ଖସି ନାହିଁ, ଟିକେ ହେଲେ ରାସ୍ତାରୁ ହୁଙ୍କି ନାହିଁ, ଏହା ମୋର ଜୀବନରେ ଗାନ୍ଧିଜୀଙ୍କର ଆଶୀଷ । ଗାନ୍ଧିଜୀ ମୋର ଚିଠି ପାଇ ତାଙ୍କ ସମ୍ବନ୍ଧି ରାଜାଜୀ ଏବଂ ଚେଲା କେ.ଏମ୍. ମୁନ୍‌ସିଙ୍କୁ ମଧ୍ୟ ଆସେମ୍ଲି ଛାଡ଼ିବାକୁ ଲେଖିଥିଲେ । ଏହା ତାଙ୍କର ଯଥାର୍ଥ ବିବେକର ବିଚାର ଓ ମାହାତ୍ମ୍ୟର ଅବଦାନ । ତାଙ୍କ ପାଖେ ବଡ଼ ସାନ, ବଡ଼ ନେତା ସାନ ନେତା ଜ୍ଞାନ ନଥିଲା । ସେ ସମସ୍ତଙ୍କୁ ଦୋଷଗୁଣଯୁକ୍ତ ସାଧାରଣ ମଣିଷ ଭଳି ଦେଖି ବିଚାର ଦେଉଥିଲେ ।

ମୋର ପୁଅ ଅମିତାଭ ମହାପାତ୍ର ୧୬ ବର୍ଷ ସମୟରେ ସ୍ୱରାଜ୍ୟାଶ୍ରମକୁ ଯାଇଥିଲା । ସେ ମିଲ୍ ଲୁଗା ପିନ୍ଧିବା ଦେଖି ତତ୍‌କାଳୀନ କଂଗ୍ରେସ୍ ସଭାପତି କଟକ ଜିଲ୍ଲା ନେତା ପ୍ରାଣକୃଷ୍ଣ ପଢ଼ିହାରୀ ତାକୁ କଂଗ୍ରେସ୍ ଅଫିସ୍ ଆଶ୍ରମ ଛାଡ଼ି ବାହାରି ଯିବାକୁ କହିଲେ ଓ ଗାଳି ଦେଲେ । ତାକୁ କହିଲେ ତୁ ଖଦୀ ନ ପିନ୍ଧି ଏ ସ୍ଥାନକୁ ଆସିବୁ ନାହିଁ । ଅମିତାଭ ମନ ଦୁଃଖରେ ଏ ଘଟଣା ମତେ କହିବାରୁ ମୁଁ ତତ୍‌କ୍ଷଣାତ୍ ଗାନ୍ଧିଜୀଙ୍କୁ ଏହା ଲେଖିଲି ଆପଣ ସ୍ୱଦେଶୀ ସ୍ୱାର୍ଥ ଭାବନା କରିବା ପାଇଁ ଖଦୀ ପିନ୍ଧିବା ସୂତା କାଟିବା କଂଗ୍ରେସରେ ରହି ଚରିତ୍ର ସୁଦ୍ଧି କରି ସ୍ୱରାଜ୍ୟ ସଂଗ୍ରାମରେ ଯୁବକମାନଙ୍କୁ ଯୋଗ ଦେବାକୁ ଡାକୁଛନ୍ତି ; କିନ୍ତୁ ଆପଣଙ୍କର କଂଗ୍ରେସ୍ ନେତାମାନଙ୍କ ବ୍ୟବହାରରେ ଯୁବକମାନଙ୍କର ଘୃଣା ଓ ପ୍ରତିକ୍ରିୟା ଜାତ ହେଉଛି । ସେମାନେ କିପରି ଖଦୀ ପିନ୍ଧିବେ ଓ କଂଗ୍ରେସରେ ଯୋଗ ଦେବେ । ପଢ଼ିଆରୀଙ୍କ କଥା ସବୁ ଲେଖିଲି । ତାର ୪ ଦିନ ପରେ ଗାନ୍ଧି ମୋତେ ଲେଖିଲେ ଓ ପଢ଼ିଆରୀଙ୍କୁ ଯେ ଚିଠି ଲେଖିଲେ ତାର କପି ପଠାଇଲେ । ପଢ଼ିଆରୀଙ୍କ ବ୍ୟବହାରକୁ

ନିନ୍ଦାକରି ସେ ଦୁଃଖିତ ହୋଇ ଲେଖିଲେ ଓ ପଢ଼ିଆରୀ ନିଜେ ମୋତେ କ୍ଷମା ପ୍ରାର୍ଥନା କରିବାକୁ ଓ ଅମିତାଭକୁ କ୍ଷମା ମାଗିବାକୁ ତାଙ୍କୁ ଆଦେଶ ଦେଇଥିଲେ । ମାତ୍ର ପଢ଼ିଆରି ତ ଗାନ୍ଧୀଜି ନ ଥିଲେ ଯେ ସେ ଯେଉଁ ଭୁଲ କଲେ ତାହା ହିମାଳୟ ଭୁଲ ବୋଲି ମହାତ୍ମାଙ୍କ ପରି ଦେଶବାସୀଙ୍କ ଆଗେ କହନ୍ତେ ? ସେ ମତେ ଚିଠି ଖଣ୍ଡିକ ଲେଖି ମତେ ଦୁଃଖ ପ୍ରକାଶ କରିଥିଲେ ଓ ଗାନ୍ଧିଜୀଙ୍କୁ ଛଳନା କରି ଲେଖିଥିଲେ ''ସରଳାଦେବୀ ମୋର ବନ୍ଧୁ ଭାଗୀରଥି ମହାପାତ୍ରଙ୍କ ସ୍ତ୍ରୀ, ତାଙ୍କ ପୁଅକୁ ମୁଁ ମନକୁ କାଟିବା ଉଦ୍ଦେଶ୍ୟରେ ସେପରି ଗାଳି ଦେଇ ନଥିଲି, ଉପଦେଶ ଭାବରେ ସେପରି କହିଥିଲି'' । ଗାନ୍ଧିଜୀ ସାନ କଥାକୁ ମଧ୍ୟ ବଡ଼ ଧରୁଥିଲେ ଓ ବିଚାର ବେଳେ ସେ ମୁହଁ ମୁଲେହିଜା ରଖି କାହାକୁ ରକ୍ଷାକରିବା ଓ ଘଣ୍ଟ ଘୋଡ଼ାନିତୀରେ ତୋଷଣ ପୋଷଣ ପେଶଣ ନିତୀ ସୁବିଧାନୁସାରେ ତାଙ୍କ ଚେଲାମାନଙ୍କ ପ୍ରତି ପ୍ରୟୋଗ କରି ପାଟିତୁଣ୍ଡରେ ଛେଳିକୁ ''କୁକୁର'' ବୋଲି ବିଭ୍ରାଟ ବଢ଼ାଇଦେବା ଦ୍ୱାରା ପ୍ରମାଣ କରି ପରାକାଷ୍ଠା ଦେଖାଉ ନଥିଲେ । ଆଉ ଖଣ୍ଡେ ଚିଠି ମତେ ସେ ଉପଦେଶ ଦେଇ ଲେଖିଥିଲେ । ମୁଁ ସବୁ ଚିଠିର ଜବାବ୍ ଦେଉଥିଲି ଓ ତାଙ୍କ ପ୍ରତି ମୋର ଭୟ ନଥାଇ ତାଙ୍କୁ ପିତୃବତ୍ ଦେଖୁଥିଲି । ତାଙ୍କ କଥା ଦେବବାକ୍ୟ ପରି ମୋର ମନକୁ ପାଉଥିଲା ।

ତାଙ୍କ ମୃତ୍ୟୁ ସମ୍ବାଦ ପାଇ ମୁଁ ହଠାତ୍ ବିଶ୍ୱାସ କଲିନାହିଁ । ମାତ୍ର ରେଡ଼ିଓ ବାଲାଙ୍କ ଗାଡ଼ି ମତେ ନେବାକୁ ଆସିଲାରୁ ମୁଁ କାନ୍ଦି କାନ୍ଦି ଗଲି । ସେଠି ମଧ୍ୟ ଗାନ୍ଧିଜୀଙ୍କ ପାଇଁ ମୋର ପ୍ରଥମ ଶୋକବାର୍ତ୍ତା ହେଲା । ମୁଁ କହିଥିଲି 'ଜାତିର ପିତା ଆମକୁ ଆଜି କନ୍ଦାଇ ଚାଲି ଗଲେ । ଆମର ଆଗକୁ ପଛକୁ କେହି ଦେଖିବାକୁ ନାହିଁ । ଦେଶ ଅସହାୟ ପିତୃହୀନ ହେଲା । ଗାନ୍ଧିଜୀ ଗଲେ ତାଙ୍କର ସତ୍ୟ ଅହିଂସା ସବୁ ସମ୍ପଦ ଦେଶ ଚରିତ୍ରରୁ ନେଲେ । ତାଙ୍କ ବିଭୂତି ତାଙ୍କ ସଙ୍ଗରେ ଗଲା । ଆମ ଭବିଷ୍ୟତ ପାଇଁ ଆଉ ସମ୍ପଦ କିଛି ଛାଡ଼ି ନଯାଇ ସେ ଆମର ଦେଶ ଅନ୍ଧାର କରିଗଲେ ।

କାଠଯୋଡ଼ିରେ ତାଙ୍କର ଶ୍ରାଦ୍ଧ ସଭାରେ ଅନେକ ଲୋକ ହେଇଥାନ୍ତି । ମୋ ଆଖିରୁ ମୋର ଅଜଣାରେ ଲୁହ ବହୁଥାଏ । ମୁଁ ପରେ ଜାଣିଲି । ରାମଚନ୍ଦ୍ର ଭବନରେ ସାହିତ୍ୟ ସମାଜରେ ଶୋକସଭାରେ ଠିଆ ହୋଇ କିଛି କହିପାରିଲି ନାହିଁ । ଲୁହ ଆଖି କଣ୍ଠ ରୋଧିଦେଲା । ମୁଁ କହିବାକୁ ଯାଇ ମୂକ ହୋଇଗଲି । ତାଙ୍କର ପଦଙ୍କ ଯେଉଁମାନେ ଆଶ୍ରା କରି ହତଭାଗ୍ୟ ହୋଇଛନ୍ତି, ସତ୍ୟକୁ ଅହିଂସାକୁ ଆଶ୍ରା କରିଛନ୍ତି, ସେମାନଙ୍କ ମଧ୍ୟରୁ ମୁଁ ଜଣେ ।



(ଆସନ୍ତା କାଲି : ୯ମ ବର୍ଷ : ପୂଜା ସଂଖ୍ୟା : କ୍ଟୋବର ୧୯୫୯)

# ମୋର ଜେଲ୍ କାହାଣୀ

ସରକାର ଉତ୍କଳ ସୀମା ସମସ୍ୟାର ସମାଧାନ କରି ନ ପାରିବାରୁ ଓ ଉତ୍କଳ ସରକାରଙ୍କର ହଟକାରିତାରୁ ଉତ୍କଳ ଯୁବକ ପ୍ରାଣ ଜନନୀ ଜନ୍ମଭୂମି ପାଇଁ ତୀବ୍ର ବେଦନାରେ ଆକୁଳିତ ହୋଇଥିଲା । ଉତ୍କଳ ଜାତୀୟ ସଂଗଠନ ପରିକଳ୍ପନାର ପିତା ଶ୍ରୀ ମଧୁସୂଦନ ପ୍ରତ୍ୟେକ ଓଡ଼ିଆ ପ୍ରାଣରେ ୧୯୦୩ ସାଲରେ ଯେଉଁ ବୀଜ ରୋପଣ କରିଥିଲେ ତାହା ଅତି ମହାନ ସାଂସ୍କୃତିକ ଆଦର୍ଶରେ ଦୀପ୍ତିମାନ ଥିଲା । ସେହି ଜ୍ୟୋତି ଉତ୍କଳମଣି ଗୋପବନ୍ଧୁଙ୍କର ପ୍ରାଣ ଆଲୋଡ଼ିତ କରିଥିଲା ବୋଲି ସେ ତାଙ୍କର ଶିଷ୍ୟମାନଙ୍କୁ ମଧ୍ୟ ସେହି ଋଷି କଳ୍ପନାକୁ ରୂପାୟିତ କରିବାକୁ ମନ୍ତ୍ରଦାନ କରିଥିଲେ । ମାତ୍ର ତାଙ୍କର ସ୍ୱପ୍ନ ସାର୍ଥକ ହୋଇପାରିଲା ନାହିଁ । ଶିଷ୍ୟଗଣଙ୍କର ଗୁରୁନିଷ୍ଠା ଅଭାବରୁ ସେହି ସୁଦୂର ଅତୀତରୁ ଅପୂର୍ଣ୍ଣାଙ୍ଗ ଉତ୍କଳ ଜନନୀର ଅଙ୍ଗଚ୍ଛେଦ ବେଦନା ଏ ଜାତିର ପ୍ରତି ଏବେବି ତରୁଣ ତରୁଣୀଙ୍କ ପ୍ରାଣକୁ ବ୍ୟଥାତୁର କରି ରଖିଅଛି । ଅତୀତର ଇତିହାସ ପୃଷ୍ଠାରେ ଉତ୍କଳ ଜାତିର ଏ ମର୍ମାନ୍ତିକ ଜାତି ବିଚ୍ଛେଦର ବେଦନା ଦୁଃଖ ବାରମ୍ବାର ଆଶା, ନିରାଶାର ପ୍ରଚ୍ଛଦପଟରେ ବିଭିନ୍ନ ବର୍ଣ୍ଣ ରଙ୍ଗିମାରେ ଚିତ୍ରିତ ହୋଇଅଛି । ଆବେଦନ, ନିବେଦନ, ଭର୍ତ୍ସନା, ତିକ୍ତତା, ଉତ୍ତେଜନାର ବିପ୍ଳବ ଏ ଜାତି ଜୀବନରେ ବିଭିନ୍ନ ଘଟଣାରେ ବିଭିନ୍ନ ରୂପ ଧରିଛି । ଉତ୍କଳମାତାର ସନ୍ତାନମାନେ ଆଶାନ୍ୱିତ ଚକ୍ଷୁରେ ସ୍ୱାଧୀନ ଗଣତାନ୍ତ୍ରିକ ଭାରତର ଶାସକ ଗୋଷ୍ଠୀଙ୍କୁ ଚାହିଁ ରହିଥିଲେ ଏବଂ ଭାବିଥିଲେ ବିଦେଶୀ ଶାସକମାନେ ଯେଉଁ ସଂକୀର୍ଣ୍ଣ ଉଦ୍ଦେଶ୍ୟରେ ଉତ୍କଳ ଜନନୀକୁ ଛିନ୍ନମସ୍ତା କରିଥିଲେ, ଆମର ସ୍ୱଦେଶୀ ଶାସକମାନେ ତାହା ପରିହାର କରି ଏ ଜାତିର ବହୁ ଯୁଗ ପୋଷିତ ଆଶା ସାର୍ଥକ କରିବେ । ଉତ୍କଳର ଚିତ୍ତ ପୁଲ୍ଲେନ୍ଦୀବର ଭଳି ଆନନ୍ଦୋଜ୍ଜ୍ୱଳ ହୋଇ ଉଠିବ । ଉତ୍କଳର ଚିତ୍ତାକାଶରେ କୌମୁଦୀର ରଜତରୁଚି ବିକୀରଣ କରି ସ୍ୱପ୍ନସାର୍ଥକ କରିବ । ମାତ୍ର ୫୨ ବର୍ଷରୁ ରୋପିତ ସେହି ଆଶାତରୁ କଠିନ କର୍କଶ ରାଜନୀତିର କରବାଳରେ ଉନ୍ମୂଳିତ ହୋଇଯିବାରୁ ଉତ୍କଳର ଯୁବକ ପ୍ରାଣ ଉତ୍ତେଜନାରେ ଓ ଆଶାଭଙ୍ଗର ତୀବ୍ର ଜ୍ୱାଳାରେ ଆହତ ସର୍ପଭଳି କ୍ରୋଧୋନ୍ମତ୍ତ ସହସ୍ର ଫଣା ବ୍ୟାଦାନ କରିଦେଲା । ବିପ୍ଳବ ଦେଖାଦେଲା । ଦେଶର ଆବାଳବୃଦ୍ଧବନିତାଙ୍କ ପ୍ରାଣରେ ଦେଶର ତରୁଣ ଡାକ ଧ୍ୱନିତ ହେଲା । ଆବେଗଭରେ କୁଳନାରୀ କିଶୋରୀ ତରୁଣୀ ମଧ୍ୟ ଉତ୍କଳ ଜନନୀର କରୁଣ ଆବେଦନରେ ରାଜଦାଣ୍ଡକୁ ଦୌଡ଼ି ଆସିଲେ । ଯୁବକ ଛାତ୍ର ବାଳକ କିଶୋରମାନଙ୍କ ସହିତ ସମକଣ୍ଠରେ ବିଦ୍ରୋହ ଭାଷା କହିଲେ ।

ସେହି ଜନଗହଳୀ ଭିତରେ ଉତ୍କଳ ଜନନୀର ଆଜୀବନ କ୍ଷୁଦ୍ରାତିତମ କ୍ଷୁଦ୍ର ସେବିକା ଭାବରେ ମୁଁ ମଧ୍ୟ ମୋର ବିରୋଧକଣ୍ଠ ମିଶାଇ ଜନତାଙ୍କୁ ଉଦ୍‌ବୋଧନ ଦେଲି । ଯୁବକମାନଙ୍କର ଅଭିଯାନକୁ ପ୍ରାଣର ସହିତ ଆଶୀର୍ବାଦ କରି ଜନନୀ ଜନ୍ମଭୂମି ପାଇଁ ସନ୍ତାନର ପ୍ରାଣୋତ୍ସର୍ଗ କରିବା ହିଁ ଧର୍ମ ଓ ଦେଶର ଜାତିର ସୁନାମ ପାଇଁ ଯୁବକମାନଙ୍କର ଆତ୍ମତ୍ୟାଗ କରିବା ଉଚିତ ବୋଲି କହିଲି । ଦେଶରେ ଦୁଃଖର ଚିହ୍ନରୂପେ କୃଷ୍ଣବର୍ଣ୍ଣ ଚିହ୍ନ ଧାରଣ କରି ଗୋରୁ ମହିଷାଣୀ, ବାଦାମ ପାହାଡ଼ରେ ଟାଟା ଲୁହା କମ୍ପାନୀକୁ ଲୁହା ପଥରର ମାଟି ଦହକ କରିନେବା କାର୍ଯ୍ୟ ବନ୍ଦ କରିବାକୁ ନିର୍ଦ୍ଦେଶ ଦେଲି । ପ୍ରଥମ ସଭାରେ ମୋର ସେହିକଥା କହିବା ପରେ ଉତ୍କଳରେ ଠାବେ ଠାବେ ଗୃହ ଦାହ ହେଲା– ଗୁଳି, ମାଡ଼, ଜେଲ୍, ଆଇନ ଭଙ୍ଗ ସବୁ ଆରମ୍ଭ ହୋଇଗଲା । ୧୪୪ ଧାରା, କର୍ଫିଉ ଆଇନ କଟକରେ ଓ ଅନ୍ୟତ୍ର ଚାଲିଲା । ରୁଦ୍ଧ ଜନତାର ଆବେଗ ଫୁଟାଇବାର ସ୍ଥାନ ରହିଲା ନାହିଁ । ବେଆଇନ ଆଇନ ହେଲା । ନିରସ୍ତ୍ର ଜନତାଙ୍କୁ ଦଳନ ଦମନ ହେଲା ଯେଉଁ ନିୟମରେ ତାହା ଅଭୂତପୂର୍ବ ଅଶ୍ରୁତପୂର୍ବ । ସ୍ୱାଧୀନତା ପ୍ରାପ୍ତିପରେ ତାର ସ୍ୱାଦିଷ୍ଟ ଅନୁଭୂତି ଉତ୍କଳୀୟ ଜନତା ଚାଖିଲେ ।

ଅସତ୍ୟ, ଅନ୍ୟାୟ, ଅରାଜକତାର ଓ ଅକ୍ଷମ କୁଶାସନ ବିରୁଦ୍ଧରେ ମୁଁ ଚିରବିଦ୍ରୋହୀ । ମୋର ପ୍ରାଣରେ ଉତ୍କଳର ସାହିତ୍ୟ, ସଭ୍ୟତା, କୃଷି, ଭାଷା, ଉତ୍କଳୀୟ ଜୀବନ ବିକାଶ ଓ ପ୍ରକାଶର ପରିସମାପ୍ତି ସବୁ ଏକାକାର ହୋଇ ରୂପ ନେଲା ମୁଁ ବେଆଇନ ୧୪୪ ଧାରାକୁ ଭଙ୍ଗକଲି । ଏହା ସମ୍ବିଧାନର ବିରୋଧୀ–ନାଗରିକ ଅଧିକାରର ବିରୋଧୀ–ବ୍ୟକ୍ତିର ସ୍ୱତଃସ୍ଫୂର୍ତ୍ତ ଚିନ୍ତା ଓ ବୈଧ କର୍ମ ପ୍ରବାହର ବିରୋଧୀ ବୋଲି ମନେକଲି । ଯୁବକ ଛାତ୍ରମାନଙ୍କୁ ବିଦ୍ରୋହ କରିବାର ପ୍ରେରଣା ଦେବାରୁ ସେମାନଙ୍କୁ ଦୁଃଖର ଭାଗୀଦାର ହେବାକୁ ମୋର ଆତ୍ମସମ୍ମାନ ମୋତେ ଦାବି କଲା । ସେହି କାରଣରୁ ମୁଁ ଜେଲ ଗଲି– ୫୨ ବର୍ଷରେ । ଯେତେବେଳେ ଯାତ୍ରୀର ପଥଚଲା ଶେଷ ହୋଇଆସୁଛି, ଜୀବନରବି, ଅସ୍ତାଚଳ ଉପରେ ଲୋହିତ ରଶ୍ମି ବୋଳି ଦେଲେଣି ଓ ପରପାରର ସମାନ ଶକଟ ସଜ୍ଜିତ ହୋଇ ବାହନ ଲାଗି ସେ ପାରକୁ ମୋତେ ନେବାକୁ ଚାହିଁ ରହିଲେଣି ।

ପୁଲିସ କେବେ ମୋତେ ଜେଲ ଦେଇନାହିଁ । ସବୁଥର ମୁଁ ନିଜେଇ ବେଆଇନ ଭାଙ୍ଗି ଜେଲ ବରଣ କରିଥାଏ । ଯାହା ହେଉ ମନରେ ମୋର ଆତ୍ମପ୍ରସାଦର ଆନନ୍ଦ ଥିଲା ଯଦିଓ ସ୍ୱାସ୍ଥ୍ୟ ସୁସ୍ଥ ଥିଲା, ଅସ୍ୱାସ୍ଥ୍ୟ ପରୋକ୍ଷ ଥିଲା, ମନର ଆନନ୍ଦ ହିଁ ମୋତେ ଅପରୋକ୍ଷ ଆନନ୍ଦ ଦେଇଥିଲା । ନିଜର ଆଦର୍ଶ ଓ ନୀତି ପାଇଁ ସବୁରକମ କଷ୍ଟ, ଦୁଃଖ ସହିବା, ସବୁ ରକମ ତ୍ୟାଗ ପାଇଁ ଛିଡ଼ା ହେବା ମୋର ଜୀବନରେ ଅଭ୍ୟାସ ଥିଲା ସେଥିପାଇଁ ମୋର ଆନନ୍ଦ ହେଉଥିଲା ପ୍ରଚଣ୍ଡ ରୋଗ, ଅସୁବିଧାରେ ମଧ୍ୟ ମନ ଭୟରେ ଦବିଯାଇ ନଥିଲା ।

ଭାବିଥିଲି ମୁଁ, ଆମର ସ୍ୱାଧୀନ ସରକାର ଓଡ଼ିଶାରେ ୧୯୪୪ ମସିହାରେ ଯେଉଁ ଜେଲ ସଂସ୍କାର କମିଟି ରଚିଥିଲେ ଓ ଯାହାର ରିପୋର୍ଟ ବାହାରିବାକୁ ପାଞ୍ଚବର୍ଷ ସମୟ

ଲାଗିଲା ସରକାର ଲକ୍ଷେ ଦେଢ଼ଲକ୍ଷ ଟଙ୍କା କମିଟି ପଛରେ ଖର୍ଚ୍ଚ କଲେ ସେହି କମିଟି ପ୍ରସାଦରେ ଜେଲଖାନାର ବନ୍ଦୀ ବନ୍ଦିନୀମାନେ ସଂସ୍କାର ଗୃହରେ ପରମାନନ୍ଦରେ ସେମାନଙ୍କର ପୂର୍ବାଭ୍ୟାସ ଛାଡ଼ିବା ପାଇଁ ସଂସ୍କୃତ ହେଉଥିବେ– ଗୁଡ଼ ସଂସ୍କୃତ ହୋଇ ଚିନି ହେଲା ଭଳି !

କିନ୍ତୁ ହାୟ ବିଧାତା ! କଣ ଦେଖିଲି ? ଯଥା ପୂର୍ବଂ– ତଥା ପରଂ । ଜେଲର ସେଇ ୨୦ ବର୍ଷ ତଳର ପୁରାତନ ରୂପର କିଛି ପରିବର୍ତ୍ତନ ହୋଇନାହିଁ ! ବନ୍ଦିନୀମାନଙ୍କ ମେଳରେ ପ୍ରାୟ ସପ୍ତାହେ ପୂରିବା ଆଗରୁ ଆସିଲି ସେହି ଦୁଃଖିନୀ ହତଭାଗିନୀ ନାରୀଗୁଡ଼ିକ ପଶୁଠାରୁ ଅଧମ ଭାବରେ ଜୀବନପାତ କରୁଛନ୍ତି– କରିବେ । କୋଡ଼ିଏ ବର୍ଷ ପନ୍ଦର ବର୍ଷ ଧରି ସେମାନଙ୍କୁ ସପ୍ତାହକେ ବାଲେଶ୍ୱରୀ ଅଧଛଟାଙ୍କିଏ ନଡ଼ିଆ ତେଲ ମୁଣ୍ଡରେ ଲଗାଇବାକୁ ମିଳେ– ଦେହ ନୁଖୁରା ରହେ, ଲୁହାଥାଳୀ, କଂସା ପରିବର୍ତ୍ତେ ପିତଳ ବାସନ ହୋଇଛି, ଏତିକି ପରିବର୍ତ୍ତନ ମାତ୍ର ; କିନ୍ତୁ ସେମାନେ ୧୬ଜଣ ନାରୀ ଥିଲେ ସେମାନଙ୍କୁ ଶୌଚାଦି ବ୍ୟବହାର ପାଇଁ ଗୋଟିଏ ମାତ୍ର ଟିଣ ନୋଟା ବି ଦିଆ ହୋଇ ନଥିଲା । କେତେବର୍ଷ ବ୍ୟବହୃତ ଭଙ୍ଗା ଫୁଟା ମରିଚାପଡ଼ା ୪ଟି ଗିଲାସ ଆକାରର ଟିଣ ମଗମାନ ବ୍ୟବହାର କରୁଥିଲେ । ପ୍ରତି ବନ୍ଦିନୀଙ୍କୁ ପାଣି ପିଇବା ପାଇଁ ପିତଳ ଗ୍ଲାସ କି ଟିଣ ଗ୍ଲାସ ବି ଦିଆହୋଇ ନାହିଁ । ସେମାନଙ୍କର ଲୁଗା ପରିଷ୍କାର ପୂର୍ଣ୍ଣ ଭାବରେ ଅଳ୍ପ ସୋଡ଼ା ସାବୁନରେ ହୋଇ ପାରିବ ନାହିଁ । ଏ ଆପତ୍ତି ଶୁଣାଯାଏ ନାହିଁ । ସକାଳେ ଡାଲି ଡଙ୍କିଏ, ମୋଟା ଉସୁନା ଭାତରେ ହଳଦୀ ଟିକେ ପଡ଼ି ଯେ ଖେଚଡ଼ି ଥାଳୀଏ ଲେଖା ସେମାନଙ୍କର ପାଖେ କୁଢ଼ା ହୁଏ, ତାହା ବିରାଡ଼ି କୁକୁରଙ୍କ ବାନ୍ତି ଭଳି ଦିଶେ । ସେମାନେ ପଖାଳ କରନ୍ତି, କଦର୍ଯ୍ୟ ତରକାରୀରେ ଭାତ ଖାଇ ନପାରି । କିନ୍ତୁ ସେଥିପାଇଁ ତିନ୍ତୁଳି, ଲଙ୍କାମରିଚ, ପିଆଜ, ଲୁଣ ଦୂରେ ଥାଉ ଲଙ୍କାମରିଚ ଗୋଟିଏ ଲେଖାଁ ସେମାନେ ମାଗି ମାଗି ପାଆନ୍ତି ନାହିଁ । ସକାଳ ଖେଚୁଡ଼ି ଥାଳୀ ଥାଳୀ, ଖରାବେଳର ଭାତ, ଲୁହା ଗନ୍ଧି ଅସିଝା ଅବଘରା ତରକାରୀ ଶାଗପାଣି ସେମାନେ କ୍ଷୁଧା ନିବାରଣ ପାଇଁ ଯେତକ ଖାଇ ନ ପାରନ୍ତି ପ୍ରଚୁର ପରିମାଣରେ ଗୋରୁ କୁଣ୍ଡରେ ଢାଳନ୍ତି । ସମାଜରେ ଯେଉଁଠି ଅନ୍ନ ପାଇଁ ଚିତ୍କାର, ସେଠାରେ ଅନ୍ନର ଏ ବିଷମ ଅପଚୟ ଦେଖିଲି– ଠିକ୍ କଟକ ଡାକ୍ତରଖାନା ରୋଗୀଙ୍କ ଖାଦ୍ୟ ପରଷା ଓ ନଷ୍ଟକରୀ ନୀତି ଭଳି ! ସେହି ଅପଚୟ ଅନ୍ନ ନିତି ଯାଏ ବାହାରକୁ । ବଡ଼ କିରାସିନୀ ଟିଣ ଟିଣ ଭର୍ତ୍ତି ଅଇଁଠା ଭାତ ଟ୦୪/- ରେ ବିକ୍ରି ହୁଏ । କଟକର ଘୁଷୁରୀ କୁକୁର ଗୋରୁ ଖାନ୍ତି । ବାହାର ଲୋକେ କିଣି ନିଅନ୍ତି ।

ବର୍ଷେ ହେଲା ସରକାର ଗୋଟିଏ ସିଲାଇ ଶିକ୍ଷୟିତ୍ରୀ ରଖିଛନ୍ତି ବନ୍ଦିନୀମାନଙ୍କୁ ସିଲାଇ ଶିକ୍ଷା ଦେବାକୁ । ଶୁଣିଲି ସେମାନେ କ୍ଷକ୍ଷରା ହେବାକୁ ନାରାଜ ହେଲେ । ତେଣୁ ସିଲାଇ ବ୍ୟବସ୍ଥା । ସେହି ଆଦିବାସୀ ଅନୁନ୍ନତ ଶ୍ରେଣୀ ନାରୀମାନଙ୍କର ସୂଚୀ ଶିଳ୍ପ ଅତି·

ମନୋହର, ବର୍ଣ୍ଣ ସମାବେଶ ସୁନ୍ଦର ଓ ଶିଳ୍ପ ଚାତୁର୍ଯ୍ୟ ବୁଦ୍ଧି ପ୍ରଖର । ସେମାନେ ଏମ୍‌ବ୍ରୋଡରି, ଫୁଲପାତ୍ର, ଲତା ନକ୍‌ସା ଦେଖି ରଙ୍ଗ ସୂତା ନିଜେ ବାଛି ଠିକ୍ କରି ସିଲେଇ କରି ରୁମାଲ, ଟେବଲ କ୍ଲଥ, ସ୍କାର୍ପଟ, କମ୍ଫର୍ଟ, ମୋଜା ତିଆରି କରି ପାରୁଛନ୍ତି । ବେଗ୍, ତଉଲିଆ ଆଦି ବୁଣି ପାରୁଛନ୍ତି । ଯାହା ହେଉ ପଚାରିବାରେ ସେମାନେ କହିଲେ ମାଷ୍ଟ୍ରାଣୀ ଟ୩୦ଙ୍କା ସରକାରରୁ ଦରମା ପାଏ ବୋଲି ସେମାନଙ୍କୁ ସରକାର ସିଲେଇ ମଜୁରୀ ଦିଏ ନାହିଁ । ଯଦିଓ ସେମାନଙ୍କର ସୂଚୀଶିଳ୍ପ ବିଲାତର ପ୍ରଦର୍ଶନୀମାନଙ୍କରେ ଉଚ୍ଚପ୍ରଶଂସିତ ପ୍ରଶଂସାପତ୍ର ପାଇଅଛି । ସରକାରଙ୍କର କାମକୁ ଦୈହିକ ଶ୍ରମ ଏହି ବନ୍ଦିନୀମାନେ ଦେଇ ତୁଳାନ୍ତି । ଧାନ ଓ ଚାଉଳ କୁଟା, ମୁଗ ଭଙ୍ଗା, ପାଛୁଡ଼ା, ଚୁରାଚୁରି ଦିନ ତମାମ ଧରି ସବୁ କରନ୍ତି । ତାହାର ମୂଲ ବାବଦରେ ଏଇ ଦୁର୍ଭାଗିନୀମାନେ ଯାହା ଖାନ୍ତି । ଯେପରି ଗୋଡ଼ି ଚାଉଳ, ଗମରା ଚାଉଳ ଖାନ୍ତି ତାହା ଜଣା କଥା । କିନ୍ତୁ ସେମାନଙ୍କ ସିଲେଇ ପଣ୍ୟ ବିକ୍ରି କରି ସରକାର ତରଫରୁ ଜେଲ ବିଭାଗ ଯାହା ଲାଭ କରନ୍ତି ସେଥିରୁ ସେମାନଙ୍କୁ ସିଲେଇ ମଜୁରୀ ଦେବାକୁ ବି ନାରାଜ । ଜେଲ କର୍ତ୍ତାମାନଙ୍କର ବିବେକ ଏହି ବ୍ୟାପାରରେ ଦଂଶନ କରେ । କିନ୍ତୁ ସେମାନେ ତ ପରାଧୀନ ସରକାର । ନୀରବରେ ରହନ୍ତି । ଏହିପରି ଶୋଷଣ ଯନ୍ତ୍ର ଜେଲ ବିଭାଗରେ ଚାଲିଥାଏ । **ଜେଲ୍ ସଂସ୍କାରର ନମୁନା ।**

ବନ୍ଦିନୀମାନଙ୍କର ଚାରୋଟି ସନ୍ତାନ ଦେଖିଲି କି ମଇଳା, କି କୁତ୍ସିତ ଭାବରେ ସେମାନଙ୍କର କରୁଣ ଜୀବନର କ୍ରମ ପରିଣତ ଚାଲିଛି । ଖେଳନ୍ତି ସେମାନେ ଜେଲ ପାଚିରୀ ଭିତରେ । ଛୋଟ ଅଗଣାରେ । ଶୁଅନ୍ତି ମାଆ ମାନଙ୍କ ପାଖରେ ମଶୁରୀ ନଥାଇ, ସେମାନଙ୍କ ବନ୍ଦୀଖାନାର ଠିକ୍ ସାମନାରେ ଟିଣ ପାଇଖାନା ରହିଛି । ବିଷ୍ଠା ମୂତ୍ରର ତୀବ୍ରଗନ୍ଧ ବନ୍ଦୀଶାଳା ଭିତରେ ମଧ୍ୟ ତଦ୍ରୁପ । ପିଲାଟିମାନେ ଦିନେ କଣ୍ଢେଇ ଖେଳିବାକୁ ପାଇ ନାହାନ୍ତି, ଚିତ୍ର ବହିଟିଏ ଦେଖି ନାହାନ୍ତି, ଗପ ବହିରୁ କେହି ତାଙ୍କୁ ଗୋଟିଏ କାହାଣୀ ଶୁଣାଇ ନାହିଁ । ନିତି ଏକରକମ ଖାଦ୍ୟ, ଦୁଧ ନାହିଁ, ମାଂସ ତରକାରୀ ମାସକରେ ଥରେ ହୁଏ । ପାଣିରେ ସିଝି ପାଣି ଝୋଳ ଉପରେ ତଳେ ମସଲା ଗୁଣ୍ଡଟିକେ ପଡ଼େ, ଲଙ୍କା ଫୁଟେ ନାହିଁ । ସେଇଥିରୁ ଦୁଇଖଣ୍ଡ ଜାଗାରେ ତିନିଖଣ୍ଡ ପାଇବାକୁ ପିଲାମାନଙ୍କର ମାଆମାନେ ଆଗରୁ ଜମାଦାରିଣୀଙ୍କୁ କେତେ କାକୁତୀମିନତୀ ହୋଇ କହିଥାନ୍ତି । ମାଛ କି ବାଇଗଣ କଦଳୀ ଆଳୁ ସାରୁ ଭଲ ପରିବା ଖାଇବା ସେମାନଙ୍କ ପକ୍ଷରେ ସ୍ୱପ୍ନ ।

ଗୋଟିଏ ବାଳକ ହତ୍ୟାକାରିଣୀ ବୃଦ୍ଧାକୁ ଦେଖିଲି । ସେ ସମ୍ବଲପୁର ଆଡ଼ର । ପାଞ୍ଚୋଟି ପିଲା ଓ ସ୍ୱାମୀକୁ ଛାଡ଼ି ଆସିଛି । ସେ ଏତେ ବଳିଷ୍ଠା ଯେ ସବୁ କାର୍ଯ୍ୟ ଏକାକିନୀ କରିପାରେ । କିନ୍ତୁ ସ୍ୱାମୀ ଓ ପିଲାଙ୍କୁ ତା'ର ନ ଦେଖି ଘର କଥା ଭାବି ସେ ରାତିଦିନ ବାହୁନି ମୁଣ୍ଡ ବାଡ଼େଇ ଲହୁ ଲୁହ ଏକାକାର କରି ମୁଣ୍ଡପିଟି କାନ୍ଦେ, ତାକୁ ଜମାଦାରୀଣୀ ଧମକାଏ

ମାରିବାକୁ ଚମକିଯାଏ ମାତ୍ର ସେ ତୁନି ହୁଏନା । ଜମାଦାରିଣୀ ତାଠୁ ଦାସୀର ସେବାତକ ନିଏ ଓ ତାକୁ କୋହଲଇ ସବୁ କଷ୍ଟ କାମ କରାଏ । ଦେଖିଲି ସେ କାନ୍ଦି କାନ୍ଦି ଓ ସେଠି କଷ୍ଟ ପାଇ ପାଗଳିନୀ ହୋଇ ଗଲାଣି । ଜେଲ ବାବୁମାନଙ୍କୁ କହିବାରେ ସେମାନେ କହିଲେ ବିଭାଗ କର୍ତ୍ତାଙ୍କୁ ଜଣେଇ ଦିଆ ହେଲାଣି ବହୁ କାଳରୁ । ଉପରୁ ହୁକୁମ ନ ପାଇଲେ ପାଗଳୀ ହୋଇ ସ୍ତ୍ରୀଟି ମରିଗଲେବି ସେମାନେ ଛାଡ଼ି ନ ପାରନ୍ତି ।

ଆଉ ଏକ ସ୍ତ୍ରୀର ହାତର ପୁରାତନ ଘା'ରୁ କୁଷ୍ଠର ଉପକ୍ରମ ବୋଲି ଜଣା ପଡୁଥିଲା, ମାତ୍ର ସେ ସମସ୍ତଙ୍କ ସହିତ ଏକତ୍ର ବସବାସ ଖିଆପିଆ କରେ ଓ ଚଳୁଛି ।

ଜେଲରେ ଧାନ ବା ଚାଉଳ କୁଟି ଦେହ ପରାସ ହେଇ ବନ୍ଦିନୀମାନେ ଔଷଧ ଚାହିଁଲେ ଜମାଦାରିଣୀ ସୁପାରିସରେ ଡାକ୍ତର ବାବୁ ବାର୍ଲି ସାଗୁର ବ୍ୟବସ୍ଥା କରନ୍ତି । ଅର୍ଥାତ୍ ଛଳନାଟା ସେମାନଙ୍କର ଧରା ପଡ଼ିବ । ଭୋକ ହେଲେ ସେମାନେ ଭାତ ଖାଇବାକୁ କହିବେ ଓ ଦେହ ପରାସ ଥିଲେ ବି ଭଲ ଅଛି ବୋଲି କହି ପରାସ ଦେହରେ ଶ୍ରମ ଯୋଗ୍ୟ କାମ ଆଖି ବୁଜି କରାଇବେ । ବିଚିତ୍ର ବ୍ୟବସ୍ଥା ।



# ମୋ ଜୀବନରେ ଦୁଃଖ ବରଣ

ଲାଗିଲା ; କିନ୍ତୁ ତାକୁ ଷଡ଼ଯନ୍ତ୍ର କରି ସେ କଂଗ୍ରେସ ମଣ୍ଡଳି କମିଟି ସମର୍ଥନ ପାଇବା ସତ୍ୱେ ତାକୁ କଟକ ନେତା ଏ ସିଟ୍ ଦେଲେ ନାହିଁ । ତାର ଅତି ନିକଟ ଆତ୍ମୀୟ ତାର ସିଟ୍ ପାଇବାର ବିରୋଧ କରି ତାର ଦେଶ ସେବାର ସ୍ୱପ୍ନକୁ ଧୂଆଁ କରି ମାରିଦେଲେ । ସେ କେଉଁ କୁଳର ହେଲାନି– ଓକିଲ ହେଲା । ମୋର ସ୍ୱାମୀକୁ ଓ ମତେ ମଧ ଦେଶ ସେବା କରିବାର ସୁଯୋଗ ଦେଲେ ନାହିଁ ଏବଂ ବେକାର କରି ରଖିଲେ । ଗାନ୍ଧିଙ୍କର ଯେଉଁମାନେ ଛଦ୍ମଶିଷ୍ୟ ଥିଲେ ସେମାନେ ସ୍ୱାଧୀନତା ପରେ ଦେଶ ଲୋକଙ୍କ ଆଖିରେ ଧୂଳିଦେଇ– ଟଙ୍କାଦେଇ ଭୋଟ କିଣି ଦେଶର ମାଲିକାନାକୁ ମୌରସିପଟା କରିଦେଲେ । ଯେଉଁମାନେ ମଳିମୁଣ୍ଡିଆ ଜେଲଖାନା ଖଟା–ମାଡ଼ଖିଆ, ଗାଁର ମଳିମୁଣ୍ଡିଆ କର୍ମୀଥିଲେ ସେମାନଙ୍କୁ ଗାଁ ଟାଉଟର କରି ବୃତ୍ତି ଦେଇ ରଖିଲେ ଓ ଅଧିକାଂଶକୁ ପେଟରେ ଆତ୍ମାରେ ମାରିଦେଲେ । ସୁତରାଂ ଆମ ତ୍ୟାଗୀ ପରିବାରଟିକୁ ମଧ ଗଣତନ୍ତ୍ର ନାମକ କଟୁରୀରେ ତାଳପରି ହାଣିଦେଲେ । ଏଇ ହେଲା ଆମ ପରିବାରର ଇତିହାସ । ଆମର ସଂପତ୍ତି ଗଲା– ଦେହ ରୋଗୀ ହେଲା । ଆମେ ବସି ମୃତ୍ୟୁର ଦିନ ଗଣି ଦିନ ସାରୁଅଛୁ । ମୋର ସ୍ୱାମୀ ଓଡ଼ିଶାର ପ୍ରଥମ ସ୍ୱାଧୀନତା ସୈନିକ ଓ ମୁଁ ପ୍ରଥମ ସୈନିକା । ସେ ବନ୍ଦାପନା ଚାହାଁନ୍ତି ନାହିଁ ବୋଲି ସମ୍ମାନ ନେବାକୁ ଆସିଲେ ନାହିଁ ।

ମୁଁ ମଧ ମଲାପରେ ବି ଶୋକସଭା ସମ୍ମାନିତା ହେବାକୁ ପସନ୍ଦ କରିନାହିଁ । ସ୍ୱାଧୀନତା ଦେଶକୁ ଆମେ ଦେଇଛୁ କଣ ଓ ପାଇଛୁ କଣ ଇତିହାସ ବିଚାର କରିବ । ଆମ ସୈନିକମାନେ ଓ ଦେଶବାସୀ ଇଂରେଜ ଶାସନକୁ ଏବେ ଝୁରୁଛନ୍ତି ।

କଂଗ୍ରେସର ଯେଉଁ କାର୍ଯ୍ୟକ୍ରମ ଥିଲା ତହିଁରେ ଆମେ ସମସ୍ତେ ଯଥାସାଧ କରୁଥିଲୁ । ମୋର ସବୁଠାରୁ ପ୍ରିୟ କାମ ଥିଲା ଦେଶମିଶ୍ରଣ କାମରେ ଯୋଗଦାନ । ଉତ୍କଳଜନନୀର ବିଚ୍ଛିନ୍ନ ଶାସନ ନିଖିଳ ଭାରତ ଜନନୀଠାରୁ ମୋତେ ଗଭୀର ଭାବେ ଆଲୋଡ଼ିତ କରୁଥିଲା । ତେଣୁ ସିଂହଭୂମ ଟାଟାରେ ଯାଇ ମୁଁ ଓଡ଼ିଆ କଂଗ୍ରେସ କମିଟି ନଥିବାରୁ ୧୯୩୬ ସାଲରେ ଏମ.ଏଲ.ଏ ଓ ମନ୍ତ୍ରୀମାନଙ୍କୁ ସିଂହଭୂମବାସିଙ୍କୁ ଚକ୍ରଧରପୁର ଓଡ଼ିଆମାନଙ୍କ ତରଫରୁ ସ୍ମାରକପତ୍ର ସେମାନଙ୍କଠାରୁ ଆଣି ଦେଇଥିଲି । ସେମାନଙ୍କ ଦାବି ଓ ମୋର ଦାବି ଉଡ଼ିଗଲା । କେବଳ ପଣ୍ଡିତ ନୀଳକଣ୍ଠ ଦାସ, ଗୋଦାବରୀଶ ବାବୁ, ଯଦୁମଣି ମଙ୍ଗରାଜବାବୁ ଓ ଗଞ୍ଜାମର କଂଗ୍ରେସୀ ନେତାମାନେ ମୋର ସହାୟ ଥିବାରୁ

ଟାଟାରେ ଜବରଦସ୍ତ ଓଡ଼ିଆମାନଙ୍କୁ ହିନ୍ଦି ପଢ଼ାଇବାର ବିରୋଧ କରିଥିଲି । ଆସେମ୍ବ୍ଲିରେ ସେ କଥା ମଙ୍ଗରାଜ ବାବୁ କହିବାରୁ ତାଙ୍କୁ ସରକାର ସିଂହଭୂମ ପଠାଇ ଏହା ବନ୍ଦ କରାଇଲେ । ୧୯୨୯ ସାଲରେ କଟକରେ ପ୍ରଥମେ ସ୍ତ୍ରୀମାନଙ୍କୁ ନେଇ ଆନନ୍ଦବଜାର କରି ଟ୧୫୦ଙ୍କା ଦେଇ ଓଡ଼ିଆ ଆନ୍ଦୋଳନକାରୀମାନଙ୍କୁ ବୀରେନ୍ ଶାସମଲଙ୍କ ବିରୁଦ୍ଧରେ କାମ କରିବାକୁ ମେଦିନୀପୁର ପଠାଇଥିଲି । ଯେଉଁ କମିଶନ ଭାରତ ସରକାର ପଠାଇଥିଲେ ତାଙ୍କୁ ସ୍ମାରକପତ୍ର ଦେଇ ବିଚ୍ଛିନ୍ନାଞ୍ଚଳ ଦାବି କରିଥିଲି । ସରକାର ଭାଷାସୂତ୍ରରେ ଓଡ଼ିଆ ପ୍ରଦେଶ ନକଲାରୁ ଜେଲ ଗଲି । ଛାତ୍ର ଆନ୍ଦୋଳନରେ ମଧ୍ୟ ଜେଲ ଗଲି । ଆଉ କେହି ନାରୀ ଗଲେନାହିଁ ।

ଏ ଦୁଇଥର ଜେଲଖାନା ଯିବା ମୋର ଓଡ଼ିଆ ପାଇଁ ବ୍ୟକ୍ତିଗତ ଓ ଛାତ୍ରଦମନ ବିରୁଦ୍ଧରେ ଥିବା ହୋଇଥିଲା । ଗଞ୍ଜାମର ନାରୀକବି ଅନ୍ନପୂର୍ଣ୍ଣାଙ୍କ କରଜ ଟ୫୦୦ଙ୍କା ସୁଝିଲି । ବିଶାଖାପାଟଣାର ଓଡ଼ିଆମାନଙ୍କ ଦୁଃଖ ଦେଖି ମୋର ପ୍ରାଣ କାନ୍ଦିଥିଲା । ସବୁ ଅନ୍ୟାୟ ଓ ଅସତ୍ୟ ସରକାର ବିଚାର ବିରୁଦ୍ଧରେ ମୁଁ ଲଢ଼ିଛି ଏକାକିନୀ ନାରୀ । ଦେଶ ମିଶ୍ରଣ ପାଇଁ ହଜାରେ ଟଙ୍କା ଚାନ୍ଦା ମଙ୍ଗରାଜଙ୍କୁ ଦେଇଥିଲି । ଗଞ୍ଜାମର ନିରଞ୍ଜନ ପଟ୍ଟନାୟକ ଏ କାମରେ ପ୍ରାଣ ଦେଇଥିଲେ ଓ ମୋର ସହଯୋଗୀ ଥିଲେ । ଉତ୍କଳମଣି ସେ କାଳରେ ଏ ଦିଗରେ ମଧ୍ୟ ଖୁବ୍ ତତ୍ପର ହୋଇ ଲାଗିଥିଲେ । କଂଗ୍ରେସ କାମ ଓ ରିଲିଫ କାମ ସହିତରେ ଉତ୍କଳଗୌରବ ମଧୁସୂଦନଙ୍କ ନାମରେ ସାହିତ୍ୟ ସାଂସ୍କୃତିକ ସପ୍ତାହ ଶେଷକରି ମୋର ଚାନ୍ଦା ଉଠାଇଥିବା ଦଶହଜାର ଟଙ୍କା ମଧ୍ୟରୁ ଉତ୍କଳ ସାହିତ୍ୟ ସମାଜ ଅଙ୍ଗନରେ ଲାଇବ୍ରେରୀ କୋଠା ପ୍ରତିଷ୍ଠା କରାଇଥିଲି । ଉକ୍ତ ଟଙ୍କାରେ ବହିପତ୍ର ମଧ୍ୟ କିଣିକରି ନିଜେ କଲିକତାରୁ ଆଣି ଦେଇଥିଲି । ମୋର କାମର ପରିସର ଥିଲା ବହୁମୁଖୀ ଓ ବ୍ୟାପକ । ତାହା କେବଳ ରାଜନୀତି ପରିସରରେ ସୀମିତ ନଥିଲା ।

ସାହିତ୍ୟ, ସମାଲୋଚନା, ପ୍ରବନ୍ଧ ଓ ଧର୍ମଚିନ୍ତା ଧର୍ମଗ୍ରନ୍ଥକୁ ଆଶ୍ରୟକରି ମୁଁ ବଞ୍ଚି-ଯାଇଛି । ମୋର ସାଧନାକୁ ସହାୟତା କରିଥିଲେ ସ୍ୱର୍ଗତ ସଂପାଦକ ଶ୍ରୀ ଶଶି ଭୂଷଣ ରଥ, ସ୍ୱର୍ଗତଃ ସଂପାଦକ ଶ୍ରୀ ବାଳକୃଷ୍ଣ କର, ସ୍ୱର୍ଗତ ସଂପାଦକ ଶ୍ରୀ ବିଶ୍ୱନାଥ କର । ସାହିତ୍ୟ ସପ୍ତାହର ସାଂସ୍କୃତିକ ଉତ୍ସବ ସାର୍ଥକ କରିଥିଲି ମୁଁ । ସେହିକାଳୁ ଶିକ୍ଷାୟତନ ମାନଙ୍କରେ ଓ ସାହିତ୍ୟ ସଂସ୍ଥାରେ ପ୍ରତିବର୍ଷ ସାହିତ୍ୟ ସପ୍ତାହ, ସାଂସ୍କୃତିକ ସପ୍ତାହ ପାଳିତ ହୁଏ । ଉତ୍କଳଗୌରବ ମଧୁସୂଦନ ଲାଇବ୍ରେରୀ ପ୍ରତିଷ୍ଠାମୂଳରେ ଓ ଶେଷରେ ରହିଥିଲି ମୁଁ । ମାତ୍ର ମୁଁ ଆଜି କାହିଁରେ ନଥାଏ । ବରାହ ଜ୍ୟୋତିଷ ତାଙ୍କ ବୋହୂ ବିଦୂଷୀ ଖନାଙ୍କ ପ୍ରତିଭା ସ୍ଫୁରଣ ମାରିଦେବା ଈର୍ଷାରେ ଜିଭ କାଟିଦେଇଥିଲେ– ବୋହୂର କୀର୍ତ୍ତି ସହ ନପାରି । ମୁଁ କଂଗ୍ରେସ କାମ ଗାଁ କୁ ଗାଁ ଚାଲି ଚାଲି କରିଛି । ଗାଡ଼ି ମଟର ନଥିଲା ।

\+ \+ \+

ସରକାରୀ ସମାଜ ମଙ୍ଗଳ ଯୋଜନାକୁ ଓଡ଼ିଶା ସରକାରଙ୍କ ମନ୍ତ୍ରୀ ଓ ତାଙ୍କ ଲୋକେ ନିଷ୍ଫଳ କଲେ । ନାରୀ ଆଜି ବେକାର; ମାତ୍ର ଭାରତର ସବୁ ପ୍ରଦେଶ ନାରୀ ବେକାର ନୁହଁନ୍ତି– ଓଡ଼ିଆଣୀଙ୍କ ପରି ।

ସର୍ବୋଦୟ ସଂସ୍ଥାକୁ ଚାନ୍ଦା ଦେଇଛି, ସୋସାଲିଷ୍ଟ ପାର୍ଟିର କୃଷକ କାଗଜ ବାହାରିବ ବୋଲି ଏକହଜାର ଟଙ୍କା ଚାନ୍ଦା ଉଠାଇ ଦେଇଥିଲି । କମ୍ୟୁନିଷ୍ଟ ସଂସ୍ଥାକୁ ଚାନ୍ଦା ଦେଇଛି । ଯେଉଁମାନେ ରାଜନୀତି ପେଶା କରନ୍ତି ବା ସଂସ୍ଥା ଗଢ଼ନ୍ତି, ସମସ୍ତେ ଉଣା ଅଧିକେ ସମଶ୍ରେଣୀୟ ବୋଲି ମୋର ସ୍ଥିର ସିଦ୍ଧାନ୍ତ । ତେଣୁ ମନରେ ମୋର ଦଳୀୟ ସଂକୀର୍ଣ୍ଣତା ନଥିଲା । ମୋତେ ଓ ମୋର ପରିବାରକୁ ଈର୍ଷାପରାୟଣ–ହିଂସ୍ର ବଡ଼ ଓ ସାନ କଂଗ୍ରେସୀ ନେତାମାନେ ହତାଶ କରିଛନ୍ତି, ମୋର ଦେଶାତ୍ମବୋଧ କାର୍ଯ୍ୟକାରିତା ସହିନପାରି ।

+ + +

ସମବାୟ ବ୍ୟାଙ୍କ ଡିରେକ୍ଟର ଭାବରେ ୧୯୨୮ ସାଲରେ ସମବାୟ ବିଭାଗ ମେମ୍ବରମାନଙ୍କ ଦ୍ୱାରା ନିର୍ବାଚିତ ହୋଇଥିଲି । ଡିରେକ୍ଟରମାନେ ଗ୍ରାମର ସମବାୟ ସମିତି ଗୁଡ଼ିକ ତଦାରଖ କରିବା କଥା ନୁହେଁ । ଇନ୍‌ସପେକ୍ଟରର କରିବା କଥା । ମାତ୍ର ବାଲିକୁଦା ଥାନାରେ ଥିବା ସମସ୍ତ ସମବାୟ ସମିତିମାନଙ୍କୁ ମୁଁ ଯାଇ ଲୋକମାନଙ୍କ ଦେଣାପାଉଣା ବୁଝିବା ପାଇଁ ଖାତା ଦେଖୁଥିଲି । ଅଧିକାଂଶ ଖାତାରେ ଟଙ୍କା ନେବାବେଳେ ଲୋକ ଟିପ ଦେଇଛନ୍ତି ଓ ଦେବା ବେଳେ ମଧ ନିରକ୍ଷର ଥିବାରୁ ଟିପଚିହ୍ନ ଦେଇଛନ୍ତି । କିନ୍ତୁ ସେମାନେ ଟଙ୍କା ସୁଝିଥିଲେ ମଧ ମୂର୍ଖ ଦୋଷରୁ ସମବାୟ କର୍ତ୍ତା ସେମାନଙ୍କ ନାଁରେ ନାଲିସ କରିଛନ୍ତି । ନ'କଡ଼ା ଛ'କଡ଼ା ଜମି ନିଲାମ କରି ସମବାୟ ଟଙ୍କା ସୁଝି ସେମାନଙ୍କ ସଂପତ୍ତିକୁ ନିଜସ୍ୱ କରି ନେଇଛନ୍ତି । ସେଥିପାଇଁ ଡିରେକ୍ଟର ସଭାରେ ମୋର ପାଟିତୁଣ୍ଡ ବି କେହି ଶୁଣିନଥିଲେ । ଆଇନରେ ଚୋର ଓ ସାଧୁର ପାର୍ଥକ୍ୟ ନାହିଁ । ସେଥିରେ ସତମିଛ ନ୍ୟାୟ ଅନ୍ୟାୟ ଛପି ଛପି ଯାଉଛି । ମୁଁ ବହୁକାଳ ସମବାୟ ସମିତିମାନଙ୍କରେ ରହି ସମବାୟ ସମିତିଗୁଡ଼ିକ ଦେବାଳିଆ ହେବାର କାରଣ ସୁପରଭାଇଜର ଇନସ୍ପେକ୍ଟରମାନଙ୍କ ବିବରଣ ପଢ଼ି ତାହାର ପ୍ରବଞ୍ଚନା-ଛଳନା-ରୂପ ଦେଖି ଓ କର୍ମକର୍ତ୍ତାମାନଙ୍କ ଆଇନ ଲାଗୁକରିବାରେ ଉଦାସୀନତା ମୋହବତ ଧରାଧରିରେ ପରିଚାଳିତ ହେବା ଦେଖି ସମିତିରୁ ନିଜକୁ ବିଚ୍ଛିନ୍ନ କରି ଆଣିଥିଲି । ଏହି ସମବାୟ ସମିତି ଲୋକଙ୍କୁ ପ୍ରତାରଣା କରି ଓ ଲୋକଙ୍କ ଧନ ଆତ୍ମସାତ କରିବାର ସରକାରୀ ବେସରକାରୀ ସଂସ୍ଥା ବୋଲି ମୁଁ ବହୁକାଳ ପରେ ପ୍ରବୀଣ ବୟସରେ ଅନୁଭବ କରିଥିଲି ।

+ + +

ସମ୍ମାନ କରିଥିଲେ ତାହାହିଁ ଜାତିର ସଂଗ୍ରାମୀ ଜନତା ପ୍ରତି ସମ୍ମାନ ହୋଇଥାନ୍ତା । କିନ୍ତୁ ତା' ନହୋଇ ସରକାରୀ ଖର୍ଚ୍ଚରେ ମନ୍ତ୍ରି କଲେକ୍ଟର ସାହେବ ପ୍ରଭୃତି ଦିଲ୍ଲୀରେ ଓ

ଭାରତର ସବୁ ରାଜ୍ୟରେ ସରକାରୀ ଚାକରମାନଙ୍କ ଦ୍ୱାରା ସମ୍ବର୍ଦ୍ଧନା ନିର୍ଘଣ୍ଟ କରାଇବା ସ୍ୱାଧୀନତା ସଂଗ୍ରାମୀମାନଙ୍କ ପ୍ରତି ଯଥାର୍ଥ ସମ୍ମାନ ନହୋଇ ତାର ବିପରୀତ ହେଲା । କଂଗ୍ରେସବାଲା ପ୍ରଧାନତଃ ନେତା ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ ଜେଲ ଯାଇଥିଲେ । କଂଗ୍ରେସ କମିଟି ସେ ଶାସକ ହେଉ, ସଂଗଠନ ହେଉ, ଯେଉଁ ଭାବରେ ହେଉ ତାହା ରହିଛି । କିନ୍ତୁ କଂଗ୍ରେସ କମିଟିର ଲୋକେ କି ଦେଶର ସମସ୍ତେ ଚାକିରିଆ ନୁହଁନ୍ତି । କିନ୍ତୁ କଟକରେ କିଲଟର ସମ୍ମାନ କଲେ ଏହା କଂଗ୍ରେସ ସଂପାଦକ ଭୈରବ ମହାନ୍ତିଙ୍କ ଦ୍ୱାରା ସମାଧିତ ହୋଇଥିଲେ ସଂଗତ ଓ ସୁନ୍ଦର ହୋଇ ନଥାନ୍ତା କି ? ଜନ ମଙ୍ଗଳ ସରକାର କହିଲେ ହୁଏନାହିଁ । ଆମେ ସ୍ୱାଧୀନ ହେବାକୁ ଜେଲ ଗଲୁ– ସ୍ୱାଧୀନଲୋକେ ଆମକୁ ସମ୍ମାନ କରିଥାନ୍ତେ, ସେ ଯେତେ ନଗଣ୍ୟ ହେଲେବି । କିନ୍ତୁ ସରକାରୀ ଚାକର ତାହା କରିବା ଓ ତାହା କରିବା ପାଇଁ ସରକାର ନିର୍ଦ୍ଦେଶ ଥିବା ଅସଂଗତ ହେଲା । ପ୍ରଥମ ଏମ୍.ଏଲ୍.ଏ (୧୯୩୬)ଙ୍କ ଶୋଭାଯାତ୍ରା ଆସେମ୍ଲିକୁ ଗଲାଦିନ ମୁଁ ତହିଁରେ ଥିଲି । ସହରର ଛକ ବଜାରରେ ଆମକୁ ଲୋକେ ଫୁଲ ବର୍ଷିଥିଲେ ରାସ୍ତା କଡ଼ରେ ଠିଆ ହୋଇ । ଆଜି ସରକାର ଲୋକ ପ୍ରତିନିଧି ଯଦି ମନ୍ତ୍ରୀ, ଗଭର୍ଣ୍ଣର ଓ ଜଜ୍‌ଙ୍କର ଶପଥ ପାଠ କରାଯାଏ କାହିଁକି ? ଲୋକଙ୍କଠୁଁ ସରକାର ସବୁ ନୀତି ଓ କର୍ମକୁ ଗୁପ୍ତ ରଖିବା ପାଇଁ ତ ? ତେଣୁ ସରକାରୀ ସମ୍ମାନରେ ପଦପଦବୀ ଓ ଟଙ୍କା ଉପାଧି ମିଳିବା ଓ ସ୍ୱାଧୀନତା ସଂଗ୍ରାମୀକୁ ଭତ୍ତା ଓ ସଂଗ୍ରାମୀମାନଙ୍କୁ ତମ୍ବାପାତିଆର ଚିହ୍ନୋଟ ପତ୍ର ଦେବା ଏକା କଥା ନୁହେଁ ।

ଭୁବନେଶ୍ୱରକୁ ଆମେ କେତେଜଣ ଭଦ୍ରମହିଳା ଯାଇଥିଲୁ । ଜେଲ ନଯିବା ମହିଳାମାନେ ମଧ ମଠା ଚାଦର ପାଇଲେ । ଅବଶ୍ୟ ସେମାନେ କେତେଦିନ କଂଗ୍ରେସରେ କର୍ମ କରିଥିଲେ । ସେହି ସଭାରେ ମନ୍ତ୍ରୀଥିଲେ ସଭାପତି, ମୁଖ୍ୟମନ୍ତ୍ରୀ ଥିଲେ । ପ୍ରୋଗ୍ରାମ ଥିଲା ଶାସକ କଂଗ୍ରେସ ମହିଳା ସାମ୍ମୁଖ୍ୟର ତା୧୪।୮।୭୨ରିଖ ଦିନ ପତାକା ଉତ୍ତୋଳନ (ବନ୍ଦେମାତରମ), ସ୍ୱାଧୀନତା ସଂଗ୍ରାମୀ ମହିଳାମାନଙ୍କୁ ସମ୍ମାନ ପ୍ରଦର୍ଶନ, ମୁଖ୍ୟମନ୍ତ୍ରୀଙ୍କୁ ସଂବର୍ଦ୍ଧନା ଜ୍ଞାପନ, ସ୍ୱାଧୀନତା ସଂଗ୍ରାମରେ ଜେଲ ବରଣ କରିଥିବା ନାରୀଙ୍କ ଅଭିଜ୍ଞତା ବର୍ଣ୍ଣନ, ନିମନ୍ତ୍ରିତ ଅତିଥିମାନଙ୍କ ଭାଷଣ, ମୁଖ୍ୟମନ୍ତ୍ରୀଙ୍କ ଭାଷଣ, କିନ୍ତୁ ତାହା ହେଲା ନାହିଁ । ୧୯୩୦ ସାଲରେ ଓଡ଼ିଶାରୁ ବ୍ରହ୍ମପୁରରେ ସର୍ବାଗ୍ରେ ମୁଁ ଲୁଣ ମାରିବା କାମରେ ଗଲାବେଳକୁ ରେଳବାଟରେ ବନ୍ଦ କରାହୋଇ ମୋତେ ଭେଲୋର ଜେଲକୁ ନିଆ ଯାଇଥିଲା । ମୁଁ ୧୯୩୧-୩୨ରେ ଜେଲ୍ ଯାଇଛି, ପରେ ୧୯୪୧ ସାଲରେ ମଧ ମୁଁ ଜେଲ ଯାଇଛି । ମାତ୍ର ସଭାପତି ମନ୍ତ୍ରୀ ମୋର ଜେଲ ଅଭିଜ୍ଞତା ବର୍ଣ୍ଣନା କରିବାର ସୁଯୋଗ ସୁବିଧା ନଦେଇ ''ମତେ ମହାଶୟା କ୍ଷମାକରିବେ, ସମୟ ଅଭାବ (ବ୍ରଜମୋହନ ମହାନ୍ତି) ଲେଖି ପଠାଇବାରୁ ମୁଖ୍ୟମନ୍ତ୍ରୀ ଦେଇଥିବା ଉପହାରକୁ ମୁଁ ତାଙ୍କ ଟେବୁଲ ଉପରେ ଥୋଇଦେଇ ଆସିଲି । ସମସ୍ତେ ବିସ୍ମିତ ହୋଇ ପଚାରିବାରୁ କହିଲି, ମୁଁ ସଭାରେ କହିବାକୁ

ଆସିଥିଲି । ମନ୍ତ୍ରୀଙ୍କ ସ୍ତ୍ରୀ ଓ ସାମ୍ମୁଖ୍ୟର ସେକ୍ରେଟାରୀ ମୋ ଘରକୁ ଯାଇ ଡାକିଥିଲେ । ମୋ ଘରୁ ଗାଡ଼ି ଫେରିବାରୁ ମୁଁ ଏକା ଗୋଟିଏ ଟାକ୍ସିରେ ଯାଇଥିଲି । ତାର ଟ୧୫.୦୦ ଖର୍ଚ୍ଚ ଦେଲେ । ପୁଣି ପଠାଇଥିଲେ ରମାଦେବୀ ପ୍ରମୁଖ ନାରୀମାନଙ୍କ ସହିତ । କିନ୍ତୁ ମତେ କହିବାକୁ ଅନୁମତି ନଦେବାରୁ ମୁଁ ଜବରଦସ୍ତି ସଭାରେ ମୁଖ୍ୟମନ୍ତ୍ରୀ ଓ ସଭାପତିଙ୍କୁ କହିଥିଲି, ‘‘ମୁଁ ମଠା ଚାଦର ନେବାକୁ କେବଳ ଏଠିକି ଆସିନଥିଲି ମୋର ଅଭିଜ୍ଞତା ଓ ବକ୍ତବ୍ୟ କହିବାକୁ ହିଁ ଆସିଥିଲି । ତା ହେଉଛି ଦେଶରେ ଶତ ଶତ ନାରୀ ଜେଲ ଯାଇଥିଲେ । ସେମାନଙ୍କ ତାଲିକା ଆପଣ ପଞ୍ଚାୟତ, ବ୍ଲକ, ଗାଁ ସ୍କୁଲ ମାଷ୍ଟର ଯେଉଁମାନେ ସେନସସ୍ ତାଲିକା କରନ୍ତି ସେମାନଙ୍କୁ ଲଗାଇ ବା ଗାଁ ଚୌକିଆଙ୍କ ଦ୍ୱାରା କରାଇ ସେମାନଙ୍କୁ ଭତ୍ତା ଦିଅନ୍ତୁ, ଥଇଥାନ କରାନ୍ତୁ । ଜମା ୮/୯ ଜଣ ଆସିଛନ୍ତି । ସେମାନଙ୍କ ଭିତରୁ ସମସ୍ତେ ଜେଲ ଯାଇ ନାହାନ୍ତି । ମାତ୍ର ଚାଦର ପାଇଛନ୍ତି । ଏହା ଠିକ୍ ହେଲାନାହିଁ । ଏପରି ବହୁତ ସଂଗ୍ରାମୀ ପୁରୁଷମାନେ ବି ଅଚିହ୍ନା ହୋଇ ଅଜଣା ରହିଗଲେ । ସେମାନେ ମୂର୍ଖ ଓ ଅତି ଗରିବ । ସେମାନେ ଭତ୍ତା ପାଇବା ଦରଖାସ୍ତ ଆଫିଡେବିଟ ମଧ କରିପାରି ନାହାନ୍ତି । ବହୁ ଜେଲ ନଯିବା ଲୋକେ ବାନରସେନା ବେନାମକୁ ନିଜ ନାଁରେ କହି ଭତ୍ତା ଦରଖାସ୍ତ କରିଛନ୍ତି–ପାଇଛନ୍ତି । ବିଶେଷତଃ ଜେଲ ଯିବା ନାରୀମାନେ କିଏ ମଲେ କିଏ ଗଲେ, ପରଘର ଦୁଃଖ କରି ଭିଖ ମାଗି ସ୍ୱାମୀପୁତ୍ର ନାହିଁ, ଘର ବିକା ସରିଛି ଏପରି ଦୁଃଖିନୀ ଅନେକ ଅଛନ୍ତି । ସେମାନଙ୍କ ପତ୍ତା ଲଗାଇ ସେମାନଙ୍କୁ ଜୀବିକା ଦିଅନ୍ତୁ ।

ଏହା ମୌଖିକ ଭାବରେ ପ୍ରଧାନମନ୍ତ୍ରୀ ସ୍ୱୀକାର କରି ତାର ବ୍ୟବସ୍ଥା କରିବାକୁ ସଭାରେ କହିଲେ । ମୁଁ ବସିଲି । ପୁଣି ମୋତେ ନାରୀ ସାମ୍ମୁଖ୍ୟର ସେକ୍ରେଟାରୀ ଚନ୍ଦ୍ରିକାଦେବୀ ଓ ଶାନ୍ତିଦେବୀ, ମନ୍ତ୍ରୀଙ୍କ ସ୍ତ୍ରୀ ସମସ୍ତେ ଖରାବେଳେ ସଭାରେ ସଭାପତି ହେବାକୁ ଅନୁରୋଧ କଲେ । ମୁଁ ଖରାବେଳୁ ସନ୍ଧ୍ୟାଯାଏ ରହି ଯେଉଁମାନେ ଜେଲ ଯାଇଥିଲେ ଓ ଦୁଃଖରେ ଅଛନ୍ତି ସେମାନଙ୍କ ଭାଷଣ କୁହାଇଥିଲି ଓ ଶ୍ରୀମତୀ ରମାଦେବୀ ନାରୀମାନଙ୍କୁ କହିଗଲା ପରେ ମୁଁ ସଭାପତି ଅଭିଭାଷଣ ଦେଇ ଯାହା ମୁଖ୍ୟମନ୍ତ୍ରୀଙ୍କୁ ସକାଳ ସଭାରେ କହିଥିଲି, ଉପସ୍ଥିତ ସମସ୍ତେ ମୋ ପ୍ରସ୍ତାବକୁ ସମର୍ଥନ କଲେ । ଯେଉଁ ଚାଦର ସକାଳେ ଫେରାଇଥିଲି, ସାମ୍ମୁଖ୍ୟ ନାରୀ ଉଦ୍ୟୋକ୍ତିଙ୍କ ସନିର୍ବନ୍ଧ ଅନୁରୋଧରେ ପୁଣି ତାହା ଗ୍ରହଣ କରିଥିଲି, ନିଜର ଅନିଚ୍ଛାରେ । ଏଇ ହେଲା ଆମର ନାରୀ ସଂଗ୍ରାମୀମାନଙ୍କ ପ୍ରତି ଓଡ଼ିଶା ମନ୍ତ୍ରୀଙ୍କ ସମ୍ମାନ ପ୍ରଦର୍ଶନ । ତେଣୁ କର୍ମଫଳ ଆମର ଶୂନ୍ୟ– ସମ୍ମାନର ମୂଲ୍ୟ ନାହିଁ ।



ପାଏ । ସନ୍ତାନ ବୋଲି ସେତେବେଳେ ପିତାମାତା ସନ୍ତାନର ମୁହଁକୁ ଚାହାନ୍ତି ନାହିଁ । କୌଣସି କୌଣସି କ୍ଷେତ୍ରରେ ମାୟା ମମତା ବାଧା ଦେଉଥିବ, କିନ୍ତୁ ସେତେବେଳେ ଆଉ କଣ ଉପାୟ ଥିବ କି ? ପୁରୁଷ ଜାତିର ସମଷ୍ଟିଗତ ସ୍ୱାର୍ଥ ପାଇଁ ପୁରୁଷ ସାଧାରଣଭାବରେ ଥରେ ଯେଉଁ ପ୍ରଥାକୁ ଧର୍ମର ଅନୁଶାସନ ବୋଲି ପ୍ରତିଷ୍ଠା କରିନିଏ, ବ୍ୟକ୍ତିଗତଭାବରେ ପିତା ହୋଇ ସନ୍ତାନ ବେଳକୁ ଆଉ ସେ ପ୍ରଥାକୁ ଅତିକ୍ରମ କରିପାରେ ନାହିଁ । ଏଇଟା ସର୍ବ କାଳରେ, ସର୍ବ ସମୟରେ ଅତି ବାସ୍ତବିକ ଓ ଅନୁଭବସିଦ୍ଧ ନୁହେଁ କି ?

୫୦ ବର୍ଷର ବୁଢ଼ା ସଙ୍ଗେ ଯେତେବେଳେ ବାଳିକା କନ୍ୟାର ବିବାହ ଦିଆହୁଏ, ସେତେବେଳେ ସ୍ୱଭାବତଃ ଏଇଟା ମନେହୁଏ ଯେ, ପିତାର ମନକୁ ଟିକିଏ ବାଧୁଥିବ, ପ୍ରାଣରେ ଠୋକ୍‌କର ଲାଗୁଥିବ, କିନ୍ତୁ ପିତା ଉପାୟ ଖୋଜି ପାଏ ନାହିଁ । ସମାଜ ତାକୁ ଛି ଛିରେ ଉଡ଼ାଇଦେବ, ଏକଘରକିଆ କରିବ ଯେ ! ଧର୍ମରକ୍ଷା କରିବାକୁ ହେବ; ଯେଉଁ ପ୍ରଥାକୁ ସେ ପୁରୁଷ ହୋଇ ସମାଜର ମେମ୍ବରରୂପେ ସେ ନିଜ ହାତରେ ଗଢ଼ିଅଛି, ନିଜ ମୁହଁରେ ମତ (Vote) ଦେଇଅଛି, ଏଇକ୍ଷଣି ସେହି ପ୍ରଥା ହିଁ ହାତପିଠିରେ ତାକୁ ଲୁହ ପୋଛାଉଥାଏ, ଆଉ ଏକ ହାତରେ ଗୌରୀ ଦାନପାଇଁ କିଶୋରବୟସ୍କା କନ୍ୟା ସମ୍ପ୍ରଦାନ କରିବାକୁ ତାକୁ ବାଧ କରୁଥାଏ । ସ୍ନେହର ଏତେଦୂର ବଳ ନାହିଁ ଯେ, ନିର୍ଦ୍ଦୟ କର୍ମରୁ ପିତାକୁ ନିବୃତ୍ତ କରି ପାରିବ । ସୁତରାଂ ଦେଖାଯାଏ ଯେ, ସ୍ନେହ, ଦୟା ଥିବା ସତ୍ତ୍ୱେ ଲୋକେ ଅମଙ୍ଗଳ କର୍ଯ୍ୟ କରି ପାରନ୍ତି ଏବଂ ପରମାତ୍ମୀୟ ହୋଇ ସୁଦ୍ଧା ଶତ୍ରୁବତ୍ ନିଜର ଆଶ୍ରିତ ଜୀବକୁ କ୍ଳେଶ ଦେଇ ପାରନ୍ତି । ଆଜି ସେ ବିଧିପାଳନ ଦ୍ୱାରେ ବୋଧହୁଏ ବ୍ୟକ୍ତିଗତ ସ୍ନେହକଥା ମନେ କରିପାରେ ନାହିଁ, ଧର୍ମର ଦ୍ୱାହି ଦେଇ ନିଜ ମନକୁ ଥଣ୍ଡାକରି ରଖେ । କିନ୍ତୁ କାହିଁ କେଉଁଠି ତାର ସୁଦୂର ମୂଳ ନିହିତ ଅଛି ? ଯଦି ସେ ଖୋଜିବ, ତେବେ ଦେଖି ପାରିବ ଯେ, ଏ ବିଧିପାଳନର ମୂଳରେ ଅଖଣ୍ଡ ସ୍ୱାର୍ଥ ଛଡ଼ା ଆଉ କିଛି ନାହିଁ । କିନ୍ତୁ ଏପରି ଦେଖି ପାରିବା କଠିନ, ବାପ ପକ୍ଷରେ କଠିନ– ଝିଅ ପକ୍ଷରେ ମଧ କଠିନ । ପ୍ରତିଷ୍ଠିତ ନିୟମ ପାଳନ ଓ ବିଧିରକ୍ଷା ମଧରେ ମାନବ ସେତେବେଳେ ମଗ୍ନ ହୋଇଯାଏ । ଚକ୍ଷୁର ଦୃଷ୍ଟିଶକ୍ତି ସେତେବେଳେ ଲୁପ୍ତ ବା ଝାପ୍‌ସା ହୋଇଯାଏ, ସେ କୌଣସିମତେ ଦେଖିପାରେ ନାହିଁ, କେଉଁଟା ଧର୍ମ ଓ କେଉଁଟା ଅଧର୍ମ, କେଉଁଟା ମନୁଷ୍ୟତା ଓ କେଉଁଟା ପଶୁତା । ବୈଦିକ ଯୁଗରେ ଅଗଣିତ ପଶୁହତ୍ୟା ଭିତରେ କେଉଁଠି ସେ ସମୟରେ ଅନ୍ୟାୟ ଥିଲା ? ଯେତେବେଳେ ବୁଦ୍ଧଦେବ ତାକୁ ପୃଥକ୍ କରି ନେଇ ଯାଇଅଛନ୍ତି, ସେତେବେଳେ ମନୁଷ୍ୟ ଦେଖି ପାରିଅଛି । ସହମରଣ ସ୍ଥଗିତ ହୋଇ ଯାଇଅଛି ବୋଲି ଏହିକ୍ଷଣି ସେ କଥା ମନେ ପଡ଼ିଲେ ଛାତି ଭିତର କିପରି ଚମକିଉଠେ । ଗଙ୍ଗା-ସାଗରରେ ସନ୍ତାନ ବିସର୍ଜନ କରିବାରେ କେତେ ପାପ, କେତେ ନୃଶଂସତା ଜଡ଼ିତ ଥିଲା, ଆଜି ତାହା ଦେଖିପାରି ଧୀର ମନୀଷୀଗଣ ନିଶ୍ଚୟ ବୋଧହୁଏ ଇଂରାଜ ଆଇନ୍‌ଟାକୁ ପ୍ରଶଂସା କରିବାକୁ ଦୋଷାବହ

ମନେ କରିବେ ନାହିଁ । ତଥାପି ଆମ ଦେଶବାସୀଙ୍କର ଚୈତନ୍ୟ ନାହିଁ । ବଙ୍ଗଳାର ଗୌରବ, ତଥା ଭାରତର ଶ୍ରେଷ୍ଠ ହିତୈଷୀ ରାଜା ରାମମୋହନ ସମାଜକୁ ଉଚ୍ଛୃଙ୍ଖଳତାରୁ ଧର୍ମ ଆଡ଼କୁ ଟାଣିବାର ଚେଷ୍ଟା କରୁଥିଲେ ବୋଲି କେତେ ଲୋକ ତାଙ୍କ ଭ୍ରାନ୍ତ ଏବଂ କୁଦୃଷ୍ଟି ହେତୁ ଭ୍ରଷ୍ଟ ଓ ଧର୍ମଦ୍ୱେଷୀ ବୋଲି ନ କହିଅଛନ୍ତିଟି ! ତାଙ୍କର ଅପରାଧ ହେଲା, ସେ ମାନବସମସ୍ୟାର ସହଜ ସାମଞ୍ଜସ୍ୟ ଓ ମୀମାଂସା କେଉଁଠି ଓ କେଉଁଥିରେ ହେବ, ଏଇଟା ଅଖଣ୍ଡଭାବରେ ଭାବିବାକୁ ଚେଷ୍ଟା କରିଥିଲେ ଏବଂ ନାରୀକୁ ଓ ପୁରୁଷକୁ ବୈଷମ୍ୟ ଦୃଷ୍ଟିରେ ନ ଦେଖି ସାମ୍ୟପାଇଁ ସଚେଷ୍ଟ ଥିଲେ ।

ଆଜି ମଧ୍ୟ କିଏ ବିଲାତରୁ ଫେରି ଆସିଲେ, ଏହିପରି ଅଦ୍ଭୁତ କଥାରେ ସାମାଜିକ ପ୍ରଶ୍ନ ଉଠିଲେ, ଆମ୍ଭେମାନେ ମୀମାଂସା କରିବାକୁ ଟୋଲର ପଣ୍ଡିତ ଓ ଶ୍ରୀକ୍ଷେତ୍ରର ମୁକ୍ତିମଣ୍ଡପ-ମଣ୍ଡନଗଣଙ୍କ ନିକଟକୁ ଦଉଡ଼ିଯାଉଁ । କେଉଁଟା ଭଲ, କେଉଁଟା ମନ୍ଦ ପ୍ରଶ୍ନ କରୁଁ; କାରଣ ସେମାନେ ପରା ଶାସ୍ତ୍ରବିତ୍ ! କିନ୍ତୁ ଏ କଥାଟା ଥରେ କେହି ଭାବନ୍ତି ନାହିଁ ଯେ, ସେମାନେ ଖାଲି ଶାସ୍ତ୍ରର ଶ୍ଳୋକ ହିଁ ଜାଣନ୍ତି, ଆଉ କିଛି ଜାଣନ୍ତି ନାହିଁ । ଯଦି ହୃଦୟ ଓ ବିବେକକୁ ପ୍ରଶସ୍ତ କରି ନ ପାରେ, ତେବେ ସେମାନଙ୍କର ଅଧିକାଂଶ ପାଠ ଯେ ବ୍ୟର୍ଥ ହୋଇଅଛି, ଏଇଟା ଭଲା କାହା ମନକୁ ଛୁଏଁ ? *ଝିଅକୁ କେତେ ବର୍ଷରେ ବିଭା ଦେବା ଉଚିତ, ପଚାରିଲେ ସେମାନେ ଶାସ୍ତ୍ରର ଶ୍ଳୋକ ବିଳିବିଳେଇ ଉଠନ୍ତି । ବିଧବାବିବାହ ଉଚିତ୍ କି ନା, ପଚାରିଲେ ପୋଥିଡୋରି ଫିଟାଇ ବସନ୍ତି, ମିଳାଇବାକୁ ଚାହାଁନ୍ତି, ଶାସ୍ତ୍ର କଣ ଡାକୁଅଛି ?* ଶାସ୍ତ୍ର ସେମାନଙ୍କ ଦୃଷ୍ଟିକୁ କ୍ଷୀଣରୁ କ୍ଷୀଣତର କରି ଦେଇଅଛି । ଜଣେ ସାଧାରଣ ଅଶାସ୍ତ୍ରଜ୍ଞ ଲୋକ କୌଣସି ପ୍ରଶ୍ନର ସମାଧାନ କରିବାକୁ ତାହାର ମଗଜ ବୁଦ୍ଧି ଓ ବିଚାରଶକ୍ତି (reasoning) ଯେତେ ଖରଚ କରିବ, ଶାସ୍ତ୍ରଜ୍ଞ ବ୍ୟକ୍ତି ଆଦୌ ତାହା କରିପାରିବ ନାହିଁ । ଏହା ଅନୁମାନ ନୁହେଁ, ସୂକ୍ଷ୍ମ ବିଚାର୍ଯ୍ୟ ବିଷୟ ! ଏମାନେ ଶାସ୍ତ୍ରସୀମାରୁ ପଦାକୁ ତିଳେ ଗୋଡ଼ ବଢ଼ାଇ ପାରନ୍ତି ନାହିଁ, ମୁଖସ୍ଥ କରିବା ହିଁ ବୁଦ୍ଧିର ତୀକ୍ଷ୍ଣତା ବୋଲି ମନେ କରନ୍ତି, ମୁଖସ୍ଥ ହେଲେ ଜ୍ଞାନଲାଭ ହେଲା ବୋଲି ଭାବନ୍ତି । ମୋତେ ଜଣେ ସାଧାରଣ ସୁପରିଚିତ ପଣ୍ଡିତ କହୁଥିଲେ, ଏକଶତ ଶ୍ଳୋକ ଯେଚ୍ଛା ସେ କଣ୍ଠସ୍ଥ କଲେ ସେ ପଣ୍ଡିତ ଉପାଧି ପାଇବ । ଧନ୍ୟ ଯୁକ୍ତି ! ଏ କଥାଗୁଡ଼ାକ ଅନେକ ଲୋକଙ୍କୁ ଭଲ ଲାଗୁ ନ ଥିବ; କିନ୍ତୁ ଏଗୁଡ଼ାକ ତର୍କର କଥା ନୁହେଁ, ଭାବିବାର ଓ କାର୍ଯ୍ୟ କରିବାର କଥା । ସ୍ୱଦେଶ ବିଦେଶର ଇତିହାସ, ଶାସ୍ତ୍ର, ଯାବତୀୟ ପ୍ରକୃତିତତ୍ତ୍ୱ (Nature-study) ସମ୍ବନ୍ଧରେ ବହୁତ ଲୋକ (ପ୍ରାୟ ସମସ୍ତେ) ମୋ'ଠାରୁ ଖୁବ୍ ବେଶି ଜାଣନ୍ତି ଏବଂ ଇଚ୍ଛା କଲେ ତର୍କରେ ମୋତେ ପରାସ୍ତ କରିଦେବେ, କିନ୍ତୁ ଯେଉଁ ଅନୁଭୂତି, ଯେଉଁ ସତ୍ୟ ମୋର ଶକ୍ତିହୀନ ଦୁର୍ବଳତମ ପ୍ରାଣକ୍ଷେତ୍ରରେ ପିଲାଟି ଦିନୁ ସୁଦୃଢ଼ ରେଖାମାନ ଆଙ୍କିଦେଇ ଆସିଅଛି, ସେହି ସତ୍ୟକୁ କେଉଁ ବିଦ୍ୱାନ ଅଭିଜ୍ଞ ସମାଲୋଚକ ଯେ ଥଟ୍ଟା କରି ଉଡ଼ାଇ ଦେଇ ପାରିବେ ନାହିଁ, ତାହା ମୁଁ ନିଶ୍ଚୟ ବୁଝି

ପାରୁଅଛି । ପରାସ୍ତ ହେଲେ ମୋର ଅପମାନ କିମ୍ବା ଜୟୀ ହେଲେ ମୋର ମାନ କିଛି ହେବନାହିଁ ।

ସାମାଜିକ ପ୍ରଶ୍ନର ମୀମାଂସାର ଭାର ସମାଜର କାହା କାହା ହାତରେ ରହିବା ଉଚିତ ? ଯେଉଁମାନେ ଜୋର କରି ଏତେଦିନ ଉକ୍ତ ଭାର ନେଇ ଆସିଅଛନ୍ତି, ସେମାନେ ଉକ୍ତ ଅଧିକାର ଚଳାନ୍ତୁ । ଚନ୍ଦ୍ର ଗ୍ରହଣରେ କେତେ ଦଣ୍ଡ ଆଗରୁ ହାଣ୍ଡି ଛାଡ଼ିବାକୁ ହେବ, ବିଲାତଫେରନ୍ତା କେତେ ଓଜନର ଗୋବର ପାଣି ନ ପିଇଲେ ଶୁଦ୍ଧ ହୋଇ ପାରିବ ନାହିଁ, ଅମୁକ ମହନ୍ତ ଅବିଦ୍ୟା ପାଳିଲେ ସ୍ୱର୍ଗକୁ ଯିବେ ବା ବିବାହ କଲେ ପତିତ ହେବେ, ଏସବୁ ମୀମାଂସା ସେହି ସମାଜର ଅଧିକାରୀମାନେ ହିଁ କରୁଥାନ୍ତୁ, ଆମର ସେଥିରେ କିଛି ଆପତ୍ତି ନାହିଁ । କିନ୍ତୁ ସମାଜର ଭଲମନ୍ଦ କେଉଁଥିରେ ହେବ, କେଉଁ ନିୟମ ରଖିଲେ ବା ପରିବର୍ତ୍ତନ କଲେ ଆଧୁନିକ ସମାଜର କଲ୍ୟାଣ ବା ଅକଲ୍ୟାଣ ହେବ, ସ୍ୱଦେଶର ମଙ୍ଗଳାକାଂକ୍ଷାରେ ବିଲାତ ଗଲେ ଜାତି ଯିବ କି ନାହିଁ, ଏ ସମସ୍ତ ଦୁରୂହ ବିଷୟରେ ସେମାନଙ୍କର ହାତ ରହିବା କେବଳ ଅନଧିକାରଚର୍ଚ୍ଚା ମାତ୍ର । *ଏ ସମସ୍ତ ପ୍ରଶ୍ନ ନିଷ୍ପତ୍ତି କରିବାର ଅଧିକାର ଦେଶର ସେହିମାନଙ୍କର ଖାଲି ଅଛି, ଯେଉଁମାନଙ୍କ ହୃଦୟକୁ ଶିକ୍ଷା ପ୍ରଶସ୍ତ କରି ପାରିଅଛି ଓ ଅନ୍ଧ-ପ୍ରଥାର ତେଜ ଯେଉଁମାନଙ୍କ ବିବେକକୁ ଲୋପ* କରି ଦେଇ ନାହିଁ, ଏ ସମସ୍ତ ସାମାଜିକ ପ୍ରଶ୍ନ ମୀମାଂସା କରିବାର ଭାର ଦେଶର ସେଭଳି ଉନ୍ନତମନା ଉଦାରହୃଦୟ ଲୋକଙ୍କ ଉପରେ ନ୍ୟସ୍ତ ରହିବା ଭଲ; ପଣ୍ଡିତମାନଙ୍କ ଉପରେ ନୁହେଁ । କିପରି ଜାଣିବେ ଏମାନେ ଶାସ୍ତ୍ରକୁ କାହିଁକି ଶାସ୍ତ୍ର ବୋଲଯାଏ ? କେଉଁଟା ସତ୍ୟ ଅବା କେଉଁଟା ପ୍ରତାରଣା ବୋଲି କିପରି ଜାଣିବେ ? କିପରି ବୁଝିବେ ଶାସ୍ତ୍ରଯୁଗରେ ସମାଜ କିପରି ଅବସ୍ଥାରେ ଥିଲା, ଏହିକ୍ଷଣି ସମାଜ କିପରି ଅବସ୍ଥାରେ ଅଛି ? କେଉଁ ଚତୁଷ୍ପାଠୀ, କେଉଁ ଟୋଲରେ ଏ ବିଷୟରେ ଆଲୋଚନା ହୁଏ ? କେଉଁ ନ୍ୟାୟରତ୍ନ କି ବିଦ୍ୟାରତ୍ନ ଅବା କାବ୍ୟତୀର୍ଥଙ୍କର ଏ କଥା ଆଲୋଚନା କରିବାକୁ ଧୈର୍ଯ୍ୟ ଓ ସାହସ ଅଛି ? ନିଜର ଦଳ ଛଡ଼ା ଏମାନଙ୍କ ପାଖରେ ସବୁ ଅଶୁଚି ! ସମସ୍ତେ-ମ୍ଳେଚ୍ଛ ! ନିଜ ନିଜର ମତ ଛଡ଼ା ଆଉ ସବୁ ଅଶାସ୍ତ୍ରୀୟ ବ୍ୟବହାର ମାତ୍ର ! ନିଜର ବ୍ୟବହାର ଛଡ଼ା ଜଗତର ସମସ୍ତ ଆଚାର ବ୍ୟବହାର କଦର୍ଯ୍ୟ ଓ ହୀନ ! ନିଜ ସ୍ୱୟଂ ଛଡ଼ା ସଭିଏଁ ଅମନୁଷ୍ୟ । କାଳର ଗତି ସଙ୍ଗେ ସଙ୍ଗେ ଯେ ନିୟମମାନ ବଦଳେ, ଏ କଠୋର ସତ୍ୟଟି ଏମାନଙ୍କର ଚିନ୍ତାକୁ ସ୍ପର୍ଶ କରି ନାହିଁ । ଏଥିପାଇଁ ସମୟୋପଯୋଗୀ କୌଣସି ଗୋଟିଏ ନୂତନ ପନ୍ଥା ଅବଲମ୍ବନ ହେବା ବିଷୟକ ଆନ୍ଦୋଳନ ହେବା ମାତ୍ରକେ ଏମାନଙ୍କ ଦିହରେ ଗୋଟିଏ ନିଆଁ ଚମକ ପଶିଯାଏ । ତାଙ୍କ ଦେଖାଦେଖି ବଡ଼ମୁଣ୍ଡିଆ ସମାଜରକ୍ଷକମାନେ ବି ତାଙ୍କ ପନ୍ଥାନୁସରଣ କରିଥାନ୍ତି । ଅଥଚ ଦେଖିବାକୁ ଗଲେ ଏମାନେ ହିଁ ବା କଣ ସବୁ କଥାରେ ଶାସ୍ତ୍ରର ଲାଙ୍ଗୁଡ଼ ଧରି ଚାଲୁଥାନ୍ତି ? ଶାସ୍ତ୍ରରେ ଥିବା ଆସୁର ବିବାହ ଓ କ୍ଷେତ୍ରଜ ସନ୍ତାନର ବିଧି ପ୍ରଭୃତି ଯଦି ଆଧୁନିକ ସମାଜରେ ଚଳନ୍ତା, ତେବେ ଏମାନେ

କଣ ଭଲ ମନେ କରନ୍ତେ ? ସେତେବେଳକୁ ନଜିର ଗୁଡ଼ାଏ କାଢ଼ିପକାନ୍ତେ, ''ଯଦ୍ୟପି ସିଦ୍ଧଂ ଲୋକବିରୁଦ୍ଧଂ ନାଦରଣୀୟଂ ନାକରଣୀୟଂ ।'' ଅର୍ଥାତ୍ ଏସବୁ ଆମର ଦେଶାଚାର, କୁଳାଚାର ନୁହେଁ । ଏସବୁ ଆବଶ୍ୟକ ନାହିଁ, ଏମାନ ଭଲ ନୁହେଁ, ଏସବୁ ଲୌକିକ ବୁଦ୍ଧିର ଅନୁମୋଦିତ ନୁହେଁ ଇତ୍ୟାଦି । ଶାସ୍ତ୍ରରେ ଥିଲେ ଥାଉ ପଛକେ ସେମାନେ ନିଜ ଖଞ୍ଜା ମଧରେ ଆସୁର ବିବାହ, ଗାନ୍ଧର୍ବ ବିବାହ, କ୍ଷେତ୍ରଜ ସନ୍ତାନ ଆଦି ଶାସ୍ତ୍ରୋକ୍ତ ବିଷୟମାନଙ୍କୁ ପୂରାଇ ଦିଅନ୍ତି ନାହିଁ । କେହି ଏସବୁ କଲେ ତା ପାଇଁ ମୁକ୍ତିମଣ୍ଡପରୁ ସମାଜଚ୍ୟୁତ ବ୍ୟବସ୍ଥା ଆଣନ୍ତି । କୌଣସି ଶାସ୍ତ୍ରକୁ ପୁରୁଷମାନେ ଅଧିକ ଦିନ ମାନି ଚଳିଲେ ନାହିଁ, ଯଦି ସେମାନଙ୍କ ମତଲପ ସଙ୍ଗେ ଉକ୍ତ ଶାସ୍ତ୍ରର ବିଧାନ ମେଳ ନ ଖାଏ । ଯଦି ମିଳିବ, ତେବେ ତ ଠିକ୍, ନଚେତ୍ ସ୍ୱୟଂ ଭଗବାନ୍ ଆସି ଯଦି ବାଟ ଘାଟରେ ଛିଡ଼ା ହୋଇ ଚିତ୍କାର କରି କହିବେ, ତେବେ ସୁଦ୍ଧା ଶାସ୍ତ୍ରର ସେହି ବିଧି ବେଶିଦିନ ବଞ୍ଚିରହିବ ନାହିଁ । ପୁରୁଷ ପୁଅଙ୍କ ପ୍ରତି ଶାସ୍ତ୍ରଲିଖିତ ବିଧି ସମ୍ବନ୍ଧରେ ଏହି ନିୟମ । କିନ୍ତୁ ସ୍ତ୍ରୀମାନଙ୍କ ପ୍ରତି ଏ ନଜିର ଖଟିବ ନାହିଁ । ସ୍ତ୍ରୀ ପ୍ରତି ପ୍ରଣୀତ ଆଇନ ସ୍ତ୍ରୀ ଜାତିକୁ ଭଲ ଲାଗୁ କି ନ ଲାଗୁ, ତାହା ଚିରଦିନ ଅଚଳ ଅଟଳ ରହିବ । ବିଦେଶରେ ମଧ ଏହି କାଣ୍ଡ ହେଉଥିଲା, ବହୁକାଳ ପୂର୍ବେ ପାଶ୍ଚାତ୍ୟ ଦେଶର କୌଣସି ଲୁପ୍ତ ଆଇନର ଗୋଟାଏ ଧାରାରେ ସାମାଜିକ ବ୍ୟବସ୍ଥା ଥିଲା ଯେ– "If a wife hates her husband and says, Thou art not my husband', into the river they shall throw her." ଅର୍ଥାତ୍ ଯଦି କେହି ସ୍ତ୍ରୀ ଆପଣା ସ୍ୱାମୀକୁ ଘୃଣା କରେ ଏବଂ କହେ ଯେ, 'ତୁମ୍ଭେ ମୋ ସ୍ୱାମୀ ନୁହଁ' ତେବେ ଉକ୍ତ ସ୍ତ୍ରୀକୁ ନଦୀଗର୍ଭରେ ପକାଇ ଦେବ । ଆଉ ଏକ ଧାରାରେ ଲେଖା ଥିଲା "If a husband says to his wife, 'Thou art not my wife' half a minasilver he shall weigh out to her, and let her go." ଅର୍ଥାତ୍ ଯଦି କେହି ପୁରୁଷ ତା ସ୍ତ୍ରୀକୁ କହେ ଯେ ତୁ ମୋର ସ୍ତ୍ରୀ ନୋହୁ, ତେବେ ପୁରୁଷ ତାକୁ ଅଧମିନା ଓଜନ ରୂପା ବିଦାକି ଦେଇ ବିଦା କରିଦେବ । ଆହା ! କି ସୂକ୍ଷ୍ମ ବିଚାର ନରର ନାରୀ ପ୍ରତି ! ଅଧମିନା ରୂପା କେତେ, ତାହା ମୁଁ ଜାଣେ ନାହିଁ । କିନ୍ତୁ ସ୍ତ୍ରୀକୁ ନଈରେ ବୁଡ଼ାଇ ମାରିବା ଦଣ୍ଡ ସଙ୍ଗରେ କେଭେ ପୁରୁଷର ଦେୟ ମିନାର୍ଦ୍ଧ ରୌପ୍ୟ ତୁଳା ହୋଇ ନ ପାରେ । ହାଇ ରେ କୋଦିଣ୍ଡା ନିଷାପ !

ବହି ଲେଖା ଓ ବକ୍ତୃତା ବା ଆସ୍ଫାଳନ ନାରୀକୁ ପୁରୁଷେ କେଉଁଠି ଯଥାର୍ଥ ସମ୍ମାନ ଦେବାର ମୁଁ ଆଜିଯାଏ ଜାଣିନାହିଁ, କି କେଉଁଠାରେ ଦେଖିନାହିଁ । ଯଦି ଅନ୍ୟ ଦେଶରେ ବା ଆମ ଦେଶରେ ନାରୀ ପ୍ରକୃତ ଶ୍ରଦ୍ଧା ସମ୍ମାନ ଲଭିଥାଏ, ସେ ପୁରୁଷର ବାଧା ସତ୍ତ୍ୱେ ଓ ତାହାର ନିଜର ଆତ୍ମକୃତ ସାଧନା ଓ ଚେଷ୍ଟା ଫଳରେ । ପ୍ରାଚୀନ ମିଶରରେ ଏହି ଚେଷ୍ଟା ହୋଇଥିଲା ଓ ସେ ଚେଷ୍ଟାର ସ୍ରୋତ ରୋମ ପର୍ଯ୍ୟନ୍ତ ପ୍ରଭାବ ବିସ୍ତାର କରିଥିଲା । ଭାରତରେ ମଧ ସେ ଚେଷ୍ଟା ହୋଇଥିଲା, ଯେତେବେଳେ ନାରୀ ବେଦ ରଚିବାପାଇଁ ସ୍ପର୍ଦ୍ଧା ରଖୁଥିଲା । ଏହିକ୍ଷଣି ବେଦ ସ୍ପର୍ଶ କରିବା ପର୍ଯ୍ୟନ୍ତ ନାରୀର ଅଧିକାରରେ ନାହିଁ ।

ବହୁ ପୁରୁଷଙ୍କର, ଏପରି କି, ପ୍ରାୟ ସମସ୍ତଙ୍କର ନଜର ଯେ, ସଦ୍ୟବିଧବା ବା ବାଳୁତ ବିଧବାମାନେ କିପରି ସମାଜ ଭିତରେ ଅଟକି ରହିବେ; କାରଣ ସେମାନଙ୍କ ମଧ୍ୟରୁ କେହି କେହି କୁଳ ତ୍ୟାଗ କରିଯାନ୍ତି ! କୁଳତ୍ୟାଗିନୀଙ୍କ ସଂଖ୍ୟା ଯେତେବେଳେ ବଢୁଅଛି, ସେତେବେଳେ ବିଧବା ଭିନ୍ନ ଆଉ କିଏସେ କୁଳ ଛାଡ଼ିବ ? ସୁତରାଂ କିପରି ବିଧି ନିଷେଧ ଖଞ୍ଜା କଲେ, କିପରି ଶିକ୍ଷା, ଦୀକ୍ଷା, ଧର୍ମଚର୍ଚ୍ଚା, ଓଷା ବ୍ରତ ଭିତରେ ସଦ୍ୟ ବିଧବାକୁ ଓ ବାଳୁତ ବିଧବାକୁ ନିମଜ୍ଜିତ କରି ରଖି ପାରିଲେ ଏବଂ କିପରି ଦିହମିହନ୍ତ ମଧ୍ୟରେ ପକାଇ ତାହାର ଅସ୍ଥି ଚର୍ମ ପେଷି ନେଇପାରିଲେ ସମାଜ ଏହି ଅମଙ୍ଗଳ ହାତରୁ ନିଷ୍କୃତି ପାଇବ, ପୁରୁଷଙ୍କର ଦିନ ରାତି ଏହି ଚିନ୍ତା ଲାଗିଅଛି । ବସ୍ତୁତଃ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ପୁରୁଷର ଏହି ଭୟଟା ଆଗ ଆଖିରେ ଦିଶେ ଯେ, ନାରୀକୁ ଅଟକାଇ ରଖିବାକୁ ଚୋସ୍ତ ବିଧି ନ ବାନ୍ଧିଲେ ସେ ଘରୁ ବାହାର ହେବାପାଇଁ ଗୋଡ଼ ଟେକି ବସିଅଛି ! କେହି କହନ୍ତି, 'ସ୍ତ୍ରୀଷୁ ରାଜକୁଳେଷୁ ଚ ବିଶ୍ୱାସୋନୈବ କର୍ତ୍ତବ୍ୟାଃ' କିଏ ଆହୁରି ପାହାଚେ ଉପରକୁ ଉଠି କହନ୍ତି, 'ଅଙ୍କେ ସ୍ଥିତାପି ଯୁବତୀ, ପରିଶଙ୍କନୀୟା' କେହିବା ଏଥିରେ ସନ୍ତୁଷ୍ଟ ହୋଇ ନ ପାରି ପ୍ରଚାର କରନ୍ତି, 'ସ୍ତ୍ରୀୟାଶ୍ଚରିତ୍ରଂ ପୁରୁଷସ୍ୟ ଭାଗ୍ୟଂ ଦେବୋ ନ ଜାନାତି କୁତେଃ ମନୁଷ୍ୟଃ ।' କେହି କେହି 'ସ୍ତ୍ରୀବୁଦ୍ଧି ପ୍ରଳୟଂକରୀ, ସ୍ତ୍ରୀଣାଂ ବୁଦ୍ଧିଶ୍ଚତୁର୍ଗୁଣା,' ଇତ୍ୟାଦି କରାଟ ମଧ୍ୟସ୍ଥ ସତ୍ୟକୁ ପ୍ରଘଟ କରନ୍ତି ! ବୋଲିବା ବାହୁଲ୍ୟ ଯେ, ଏଥିରେ ନାରୀର ମର୍ଯ୍ୟାଦା ବୃଦ୍ଧି ପାଇ ନାହିଁ । ପୁରୁଷର କୌଣସି ସଂସ୍କାର ଉପରେ ଶାସ୍ତ୍ରର ଏତେ କଡ଼ା ବିଧି ଅଛି କି ? ବିଧବା ବିବାହର ତର୍କ ମୁଁ ଏ ପ୍ରସଙ୍ଗରେ ଉଠାଉ ନାହିଁ, କିନ୍ତୁ ବିଧବା ବିବାହ ଯଦି ଖାଲି ଏଇଥିପାଇଁ କରିବା ଦରକାର ବୋଲି ସ୍ଥିର ହୁଏ, ଅର୍ଥାତ୍ ଅନ୍ୟଥା ବିଧବାକୁ ସୁପଥରେ ରଖିବା କଠିନ ହେବ, ତେବେ ଆମ୍ଭମାନଙ୍କ ମତରେ ବିଧବା ବିବାହ ନ ହେବା ହିଁ ଭଲ । କିନ୍ତୁ କଥାଟା କଣ ସତ୍ୟ ? *ପୁରୁଷ ନିର୍ବିଚାରରେ ଏ ପ୍ରତିଜ୍ଞାଟା ସ୍ୱତଃସିଦ୍ଧ ବୋଲି ମାନି ନେଇଅଛି; କିନ୍ତୁ କେବେ ଦେଖିଅଛି କି, ବିଧବା ବାହାରକୁ ଆସିବାପାଇଁ ସ୍ୱତଃ ଉଦ୍ୟତ ହୋଇ ବସିଥାଏ ?* ଏପରି କଥାଟା ପ୍ରଚାର କରିବା ସମୟରେ, ବିଶ୍ୱାସ ବଦ୍ଧମୂଳ କରିନେବା ସମୟରେ ଥରେ କଣ ପୁରୁଷ ମନେକରେ କି, କି ଗଭୀର କଳଙ୍କିତ ମୋହରର ଛାପା ଏ ଯୁକ୍ତିଦ୍ୱାରା ପୁରୁଷ ନାରୀ ଉପରେ ବିନା ଦୋଷରେ ମାରି ଦେଇଅଛି ? ବିଲାତର ଜଣେ ବଡ଼ ଦାର୍ଶନିକ କହିଥିଲେ, ଦାସ ବ୍ୟବସାୟ ଯେପରି Sum of villaing (ପାଜିପଣିଆର ପରାକାଷ୍ଠା ବା ସମଷ୍ଟି) ବେଶ୍ୟାବୃତ୍ତି ସେହିପରି Sum of degradation (ଅଧଃପତନର ପରାକାଷ୍ଠା) । *ଏହା କଣ ନାରୀର ସ୍ୱାଭାବିକ ଚରିତ୍ର ?* ପୁରୁଷ ତାହାର ଦେହର ବଳ ଯୋଗୁଁ କହିବ, ''ହଁ'', ''ନାହିଁ'' । କିନ୍ତୁ ଅନୁସନ୍ଧାନ କଲେ, ପ୍ରମାଣ ନେଲେ ଏଥିରେ ତଥ୍ୟ ପ୍ରମାଣିତ ହୋଇ ପାରିବ । ବଙ୍ଗଦେଶରେ ଜଣେ ଭଦ୍ରଲୋକ ବହୁ ଦିନରୁ ବଙ୍ଗଳାରେ କେତେ କୁଳତ୍ୟାଗିନୀ ଅଛନ୍ତି, ତହିଁର ଇତିହାସ ସଂଗ୍ରହ କରୁଥିଲେ । ତହିଁରେ ବଙ୍ଗର ବିଭିନ୍ନ ଜିଲ୍ଲାର

ସହସ୍ରାଧିକ ହତଭାଗିନୀଙ୍କର ସଂକ୍ଷିପ୍ତ ବିବରଣ ଲିପିବଦ୍ଧ କରିଥିଲେ । ନାମ, ଧାମ, ଜାତି ଓ କୁଳତ୍ୟାଗର କାରଣ ଅନୁସନ୍ଧାନ କରି ସେଥିରେ ପ୍ରକାଶ କରିଥିଲେ । *ତହିଁରେ ଥିଲା ଯେ, କୁଳତ୍ୟାଗିନୀଙ୍କ ମଧ୍ୟରୁ ଶତକଡ଼ା ୭୦ ଜଣ ସଧବା, ବାକି ୩୦ ଜଣ ମାତ୍ର ବିଧବା । ଏମାନଙ୍କ ସମସ୍ତଙ୍କର ସମାଜତ୍ୟାଗର କାରଣ ମଧ୍ୟ ଉକ୍ତ ବିବରଣରେ ଲେଖା ଥିଲା । ତାହା ଅସହ୍ୟ ଦାରିଦ୍ର୍ୟ ଓ ସ୍ୱାମୀ ପ୍ରଭୃତି ପାରିବାରିକ ଆତ୍ମୀୟଙ୍କର ଅସହନୀୟ ଅତ୍ୟାଚାର, ଉତ୍‌ପୀଡ଼ନ ।* ସଧବା ପ୍ରାୟ ନୀଚ ଜାତିର ଥିଲେ, ବିଧବାମାନେ ପ୍ରାୟ ଉଚ୍ଚ ଜାତିର ଥିଲେ । ନୀଚଜାତୀୟା ସଧବାମାନଙ୍କଠାରୁ ପ୍ରକାଶ ହୋଇଥିଲା କି, ଦିନରେ ଉପାସ ରହନ୍ତି ଓ ରାତିରେ ସ୍ୱାମୀଠାରୁ ମାର ଧର ଖାନ୍ତି ଓ ଖାଇବା ପିଇବାକୁ ପାଆନ୍ତି ନାହିଁ ବୋଲି ପରିବାରରେ ଚଳି ନ ପାରି ସେମାନେ କୁଳ ତ୍ୟାଗ କରିଥିଲେ । ସଦ୍‌କୁଳର ବିଧବା-ମାନଙ୍କଠାରୁ ପ୍ରକାଶ ପାଇଥିଲା ଯେ, କେହି ବା ଭାଇ-ଭାଉଜଙ୍କର, କେହି ବା ଶଶୁର ଦେଢ଼ଶୁରଙ୍କର ଅତ୍ୟାଚାର ସହି ନ ପାରି ଏ କାର୍ଯ୍ୟ କରିଥିଲେ । ସବୁ କଥା ବିଚାରି ଦେଖିଲେ ଓ ଚାରିଆଡ଼କୁ ଟିକିଏ ମନଶ୍ଚକ୍ଷୁ ବୁଲାଇ ଦେଖିଲେ, ଧରା ପଡ଼ିବ, କଥାଟା ଏପରି ନୁହେଁ କି ? ଭଦ୍ର କୁଳର ବିଧବାମାନେ ସ୍ୱାମୀର ଅବର୍ତ୍ତମାନରେ ଯେପରି ନିରୂପାୟ, ନୀଚଜାତିର ସଧବାମାନେ ମଧ୍ୟ ସ୍ୱାମୀର ବର୍ତ୍ତମାନରେ ସେହିପରି ନିରୂପାୟ । (ଆମ ଓଡ଼ିଶାର ମୂଲିଆ ଶ୍ରେଣୀୟ ଲୋକଙ୍କ ସଂସାରକୁ ଆଖି ପକାଇଲେ ଏବଂ କରଣ ବ୍ରାହ୍ମଣ ଶ୍ରେଣୀର ସଂସାରକୁ ଚାହିଁଲେ ଚିନ୍ତାଶୀଳ ବିବେକୀ କେହି ଏ କଥାକୁ ଅବିଶ୍ୱାସ କରିବେ ନାହିଁ) । କିନ୍ତୁ ନୀଚକୁଳର ବିଧବାମାନଙ୍କ ଅବସ୍ଥା ଅପେକ୍ଷାକୃତ ଭଲ । କାରଣ ନୀଚକୁଳର ସ୍ତ୍ରୀ ବିଧବା ହେଲେ ସେମାନେ ସେତେ କାହାକୁ ଭୟ କରି ଚଳନ୍ତି ନାହିଁ । ଅନେକ ପରିମାଣରେ ସ୍ୱାଧୀନ ହୋଇ ଚଳନ୍ତି । ସେମାନେ ହାଟ ବଜାରକୁ ଯା-ଆସ କରନ୍ତି, ଧାନ କୁଟି ଦୁଃଖ କରି ଖାଆନ୍ତି । ପ୍ରୟୋଜନ ହେଲେ ଦାସୀବୃତ୍ତି କରନ୍ତି । ସୁତରାଂ ସଦ୍ ଉପାୟରେ ଜୀବିକା ନିର୍ବାହ କରିବା ସେମାନଙ୍କ ପକ୍ଷରେ ସହଜ । ସେମାନେ କୁଳ ନ ଛାଡ଼ି ପେଟ ପୋଷନ୍ତି । ଅଥଚ ସେମାନଙ୍କ ଘରର ସଧବାଙ୍କ ପକ୍ଷରେ ସେ ବାଟ ବନ୍ଦ । ସ୍ୱାମୀ ବିଦ୍ୟମାନରେ ସେ ନ ପାଏ ମେହନତ କରିବାକୁ, ନ ପାଏ ମୁଠିଏ ଖାଇ ପିଇ ସୁସ୍ଥରେ ରହିବାକୁ ! ଅଥଚ ତାକୁ ଗରିବ ସ୍ୱାମୀ ଭାତ ଲୁଗା ଯୋଗାଇ ପାରେ ନାହିଁ, କେବଳ ପାରେ ଡାଟିକିଳା ମାଡ଼ ଦେଇ ଶାସନ କରିବାକୁ ! ଆଉ ଭଦ୍ର ଘରର ବିଧବାମାନଙ୍କର ଅବସ୍ଥା ମଧ୍ୟ ନୀଚ ଜାତିର ସଧବାଙ୍କ ପରି । ତାଙ୍କୁ ସ୍ୱାଧୀନଭାବରେ କାୟିକ ପରିଶ୍ରମ କରି ଜୀବିକାର୍ଜନ କରିବାକୁ ଦିଆହୁଏନାହିଁ, କାରଣ ତହିଁରେ ପିତୃକୁଳ ବା ସ୍ୱାମୀକୁଳର ମର୍ଯ୍ୟାଦା ହାନି ହୁଏ । ଅଥଚ ଘରେ ଥିବା ବିଧବାମାନଙ୍କର ଦୁର୍ଦ୍ଦଶା କାହାରିକୁ ଅବିଦିତ ନାହିଁ । ଅତଏବ ଦେଖା ଯାଇଅଛି ଯେ, ଶତକଡ଼ା ସତୁରିଜଣ ହତଭାଗିନୀ ଅନ୍ନ ବସ୍ତ୍ର ଅଭାବରେ ଏବଂ ଆତ୍ମୀୟ ସ୍ୱଜନଙ୍କ ଅନାଦର, ଉପେକ୍ଷା, ଉତ୍‌ପୀଡ଼ନ ଯୋଗୁଁ ଗୃହ ତ୍ୟାଗ କରିବାକୁ ବାଧ୍ୟ ହୁଅନ୍ତି;



ଉତ୍କଳ ସାହିତ୍ୟ ସମାଜର କର୍ମକର୍ତ୍ତାଙ୍କ ଗହଣରେ ଶ୍ରୀମତୀ ସରଳା ଦେବୀ

ବୈଧବ୍ୟର ପୀଡ଼ାରେ ଘର ଛାଡ଼ି ନାହାନ୍ତି ! ଏଥିପାଇଁ ଏହି ଶ୍ରେଣୀରେ ବିଧବାଙ୍କ ଅପେକ୍ଷା ସଧବା ହିଁ ଅଧିକ । କିନ୍ତୁ କିଛି ମାତ୍ର ଅନୁସନ୍ଧାନ ନ କରି ପୁରୁଷ ଧରି ନେଇଅଛି ଯେ, କୁଳତ୍ୟାଗ ଖାଲି ବିଧବା ହିଁ କରନ୍ତି ! ଅତଏବ ଅଦ୍ଭୁତ ବିଧି ନିଷେଧଦ୍ୱାରା ବାଡ଼ାବନ୍ଦି କରି ବିଧବାକୁ ବାଡ଼ ଭିତରେ ଜବତରେ ରଖିବା ହିଁ ଉଚିତ କାର୍ଯ୍ୟ । କିନ୍ତୁ ପ୍ରକୃତ ପକ୍ଷରେ କୁଳତ୍ୟାଗ ଯେ ପତିଯୁକ୍ତା ଓ ପତିତ୍ୟକ୍ତାମାନେ ହିଁ ଅଧିକ କରନ୍ତି ଏବଂ ତାହା ପୁରୁଷର ଅତ୍ୟାଚାର ଉତ୍‌ପୀଡ଼ନର ଫଳ, ଏ କଥା କେଉଁ ପୁରୁଷ ସ୍ୱୀକାର କରିବାକୁ ସମ୍ମତ ହେବେ କି ? ଏକ ପକ୍ଷରେ ସ୍ୱ-ପୁରୁଷ ଯେପରି ଦାରିଦ୍ର୍ୟ ଓ ଉତ୍‌ପୀଡ଼ନରେ ନାରୀର ସ୍ୱାଭାବିକ ଶୁଭବୁଦ୍ଧିକୁ ବିକୃତ କରି ଘରେ ତାକୁ କଳବଲ କରେ, ଅନ୍ୟ ପକ୍ଷରେ ପରପୁରୁଷ ସେପରି ତାହାକୁ ଆପାତମଧୁର ସୁଖର ପ୍ରଲୋଭନରେ ଭୁଲାଇ ଘରୁ ବାହାର କରି ତାହାର ସର୍ବନାଶ କରେ । ନାରୀର 'ସର୍ବନାଶ' ପାଇଁ କଣ ନାରୀ ନିଜେ ଦାୟୀ ? *ଯେଉଁମାନେ ଦୁର୍ବଳା, ଚଞ୍ଚଳା, ଆତ୍ମରକ୍ଷା ଶକ୍ତିବିହୀନ ପ୍ରଭୃତି ବିଶେଷଣଦ୍ୱାରା ନାରୀଙ୍କୁ ମଣ୍ଡିତ କରି ନିଜର ଭାବୁକତାର ଓ ବହୁଦର୍ଶିତାର ପରିଚୟ ଦିଅନ୍ତି, ସେମାନେ କଣ ଏ କ୍ଷେତ୍ରରେ 'ପତିତା'କୁ ଦୋଷୀ ସାବ୍ୟସ୍ତ କରିବାର ଅଧିକାରୀ ଅଟନ୍ତି ?* ପୁରୁଷର ଭୟ ନାହିଁ । ସେ ଯଥେଚ୍ଛା ସୁଖଭୋଗ କରି ଆପଣା ଘରକୁ, ଆପଣା ସମାଜକୁ, ଆପଣା ପରିବାରକୁ ଫେରି ଆସିପାରେ । *ସେ ଯାଇ ଘର କଣରେ ଅନୁତପ୍ତଭାବରେ ବସିଯାଏ; ଆତ୍ମୀୟ ସ୍ୱଜନ ତାହାର ପୁନରାଗମନରେ ଖୁସି ହୋଇ, ସହାନୁଭୂତିରେ ତରଳିପଡ଼ି, ତାକୁ ହେମତ ଦେଇ କହନ୍ତି, ''ହଉ ! ସେଥିରେ କଣ ଅଛି, ଅଣ୍ଡିରିପୁଏ ଇମିତି ହୁଅନ୍ତି ।* ଏ କଣ ଆଚମ୍ବିତ କଥାଟାଏ ? ଯା, ଗତ କଥା ଖତକୁ ପକାଇ ଦେ, ଘର କଣରୁ ଦାଣ୍ଡକୁ ଚାଲିଆସି ମୁହଁ ଦେଖା !'' ସେ ମଧ ଖୁସିଟାଏ ହୋଇ ଦାଣ୍ଡରେ ମୁହଁ ଦେଖାଏ ଏବଂ ସଙ୍ଗେ ସଙ୍ଗେ ସମାଜପତି ରୂପରେ ନିର୍ଘାତ ସ୍ୱରରେ ପ୍ରଚାର କରେ ଯେ, ''ନାରୀର ପଦସ୍ଖଳନ କୌଣସିମତେ ମାର୍ଜନା କରାଯାଇ ନ ପାରେ ।'' ଯେଉଁ କାରଣରୁ ହେଉ ପଛକେ ଯେଉଁ ନାରୀ ଥରେ ବୁଡ଼ିଅଛି, ହିନ୍ଦୁଜାତିର ଅଭିଜାତସମ୍ପ୍ରଦାୟ ତାହା ସହିତ କୌଣସି ସମ୍ପର୍କ ରଖେନାହିଁ, ତା' ହାତରୁ ଜଳ ସ୍ପର୍ଶ କରେ ନାହିଁ । କ୍ରମଶଃ ଭୁଲ୍‌ଟା ଯେତେବେଳେ ତା ଜୀବନରେ ପାପରୂପେ ସୁପ୍ରତିଷ୍ଠିତ ହୋଇପଡ଼େ, ଦିନକୁ ଦିନ ସେତେବେଳେ ତାହାର ସମସ୍ତ ନାରୀତ୍ୱଟିକ ଛାଣି ଚିପୁଡ଼ି ନିଗିଡ଼ି ହୋଇ ଲୋପ ପାଇଯାଏ ଅର୍ଥାତ୍ ସେ ଯେଉଁ ସମୟରେ ପିଶାଚୀରୂପରେ ଦାଣ୍ଡରେ ଠିଆ ହୁଏ, ସେତେବେଳେ ପୁଣି ତାହା ଅଭାବରେ ହିନ୍ଦୁ ସମ୍ଭ୍ରାନ୍ତ ବଂଶର, ସମାଜ-ରକ୍ଷକମାନଙ୍କର ସ୍ୱର୍ଗଭୋଗଟା ମଧ ସର୍ବାଙ୍ଗସୁନ୍ଦର ପୂର୍ଣ୍ଣତା ଲାଭ କରିପାରେ ନାହିଁ । ପାରିବାରିକ ଉତ୍ସବରେ, ଦେବମନ୍ଦିରରେ ସେ ଲୋଡ଼ା ହୁଏ । ଦେଶର ଲୋକେ ଯେପରି ଭକ୍ତିରେ ଭାସିଯାଇ କୃଷ୍ଣଙ୍କର ଶତନାମ, ରାମଙ୍କର ସହସ୍ରନାମ ଦେଇଥିଲେ, ସଂସ୍କୃତ ସାହିତ୍ୟରେ ବୋଧହୁଏ ତହିଁରୁ କମ୍ ଶ୍ରଦ୍ଧାର ନାମ ବେଶ୍ୟାର ନ

ଥିବ ! ଦେବତାଙ୍କ ଭିତରେ ସ୍ୱର୍ବେଶ୍ୟା ଫେର ସବୁଠାରେ ଆଦରଣୀୟା ଓ ପ୍ରାର୍ଥନୀୟା । ଏହି ସବୁରୁ ବୁଝା ଯାଉଅଛି, ସ୍ୱାର୍ଥପରତା ଓ ଚରିତ୍ରଗତ ପାପବୃଦ୍ଧି କାହାର ଅଧିକ, ସମାଜରୁ ପାପ ଦୂର କରିବାକୁ ହେଲେ ଶାସ୍ତ୍ରର କଡ଼ା ଆଇନ କାହା ସମ୍ବନ୍ଧରେ ଅଧିକ ହେବା ଉଚିତ, ସାମାଜିକ ଜୀବନ ବିଶୁଦ୍ଧ କରିବାକୁ ହେଲେ ନର ନାରୀ ମଧ୍ୟରୁ କାହାକୁ ସତର୍କ ଦୃଷ୍ଟିରେ ଗୋଡ଼େ ଗୋଡ଼େ ଜଗିବା ଉଚିତ ଏବଂ ଶାସ୍ତି କାହାକୁ ଅଧିକ ଦେବା ଉଚିତ । ସମାଜ ନାରୀର କାଣିଚାଏ ଭୁଲ ଭ୍ରାନ୍ତି କ୍ଷମା କରିବ ନାହିଁ, ଅଥଚ ପୁରୁଷର ଷୋଳଅଣା କରିବ କି ହେତୁ ? ହେତୁ ଖାଲି ଦିହବଳ ବା ପାଶବିକତାର ତେଜ– ହେତୁ ଖାଲି ସମାଜ ଚକ୍ଷୁରେ 'ପୁରୁଷ', 'ଅବଳ' ନୁହେଁ ବୋଲି !

ପୁରୁଷର ଦୋଷ କି ରୂପକୁ ସମାଲୋଚନା କଲେ, ସମାଜ ମଶାଣିରୁ ମୁଣ୍ଡ ଟେକି କହିଉଠିବ, ଯେତେ ହେଲେ ମରଦ ପୁଅ ତ । ଏ କି କଥା ! ସାସାରରେ କେଉଁଠି ଅଣ୍ଡିରିପୁଅଙ୍କୁ ବାଛନ୍ଦ ହେଉଥାଏ ? ସୁନ୍ଦର ଅସୁନ୍ଦର, ଦୁଷ୍ଟ ଶାନ୍ତ ଧରା ହେଉଥାଏ ? ମାଇକିନିଆ ଝିଅର ସିନା ରୂପ ଗୁଣ ଲୋଡ଼ା ! ପୁଅ ମନ୍ଦ ହେଲେ କଣ ତାକୁ କନ୍ୟା ଅପ୍ରାପ୍ତ ? ଝିଅକୁ ସିନା ବର ମିଳିବ ନାହିଁ ?'' ଇତ୍ୟାଦି । ଏ ବୋଲିଗୁଡ଼ାକ ସମାଜର ଏତେ ରକ୍ତମାଂସଗତ ହୋଇଗଲାଣି ଯେ, ସ୍ତ୍ରୀମାନେ ସୁଦ୍ଧା ପୁରୁଷର ସଂଘର୍ଷ ଓ ପ୍ରଭାବରେ ପୁରୁଷପୁଅଙ୍କ ବୋଲିକୁ ଘୋଷୁଅଛନ୍ତି ! ମୁଁ ଦିନେ ଜଣେ ଭର୍ଣ୍ଣାକୁଲର ପାଶ୍ କରିଥିବା ବର୍ଷୀୟସୀ ଓ ଶିକ୍ଷିତା ରମଣୀଙ୍କ ସଙ୍ଗେ ମୋର ଏହି ମତ ନେଇ ତର୍କ କରୁଥିଲି । ସେ ଶେଷରେ କହିଲେ କି, ''ଆମେ ଆମ କ୍ଷୁଦ୍ର ସୀମାର କଥା ଛାଡ଼ି ଆମ ସଂସାର ବାହାରର ବିଷୟ ଭାବିପାରୁନାହୁଁ । ଆମ ବାପ ଭାଇ, କି ସ୍ୱାମୀ ପୁତ୍ରାଦି ପଞ୍ଚୁଟାଙ୍କ ମତରେ ଆମ ମତ; ତେବେ କୌଣସି କୌଣସି କଥାରେ ମତଭେଦ ଥିଲେ ସୁଦ୍ଧା ଆମେ ତାକୁ ପ୍ରକାଶ କରୁ ନାହୁଁ, କାଳେ ଆମ ଘରର ଅଣ୍ଡିରିପୁଅମାନଙ୍କ ସଙ୍ଗେ ମତାନ୍ତର ହେବ ଓ ସେମାନଙ୍କ ମନରେ କଷ୍ଟ ହେବ । ସେଥିପାଇଁ ଆମେ ସେମାନଙ୍କ ମତାନୁସାରେ କାର୍ଯ୍ୟ କରିଯାଉ ଓ ଆପତ୍ତି ନ କରି ଗୁଜରାଣ ମେଣ୍ଟାଇ ଚଳିଯାଉ । ଆମର ଘରକରଣା ଓ ଘର ଭିତରର ଜୀବନ ଛଡ଼ା ଅନ୍ୟ ଆଡ଼ର ବିଷୟ ଆମେ ଭାବୁନାହୁଁ । ଆମକୁ ସେ ଆରେଇ ଯାଇଛି ।'' ମୁଁ କହିଲି, ''ଆହୁରି ବେଶିକରି କହ; ମୁଁ ସେଗୁଡ଼ାକ ନୋଟ କରି ପକାଏଁ, ସାମାଜିକ ପ୍ରବନ୍ଧ ଲେଖିବାକୁ ହେଲେ ପୁରୁଷ ଲେଖକଙ୍କୁ ତହିଁରୁ ବହୁତ ମାଲ ମସଲା, ଉପକରଣ ମିଳିବ ।''

''ଅମୁକ କାର୍ଯ୍ୟଟା ଘୃଣା କାର୍ଯ୍ୟ ।'' ଏଥିଯୋଗେ ପୁରୁଷ ନାରୀକୁ ଘୃଣା କରେ । ତାକୁ ଘୃଣା କରିବାର ଅଧିକାର ଦିଆ ହୋଇଛି ବୋଲି ସେ ଘୃଣା କରେ; ନାରୀକୁ ସେ ଅଧିକାର ଦିଆ ହୋଇନାହିଁ । ପୁରୁଷ ଯେତେ ଘୃଣ୍ୟ ହେଉ ପଛକେ ସେ 'ସ୍ୱାମୀ' ! ସ୍ୱାମୀକୁ ଘୃଣା କରିବ ସେ କିପରି ? ଶାସ୍ତ୍ର ମହାପ୍ରଭୁ ଭାଷୁଅଛନ୍ତି; ସ୍ୱାମୀ ଯେପରି ହେଉନ୍ତୁ ପଛକେ

ସତୀ ସ୍ତ୍ରୀର ସେହି ଏକା ଆରାଧ୍ୟ ଦେବତା । ଦେବତାଙ୍କ ମୃତ୍ୟୁ ଘଟିଲେ ତାଙ୍କ ପଦପଙ୍କଜ କ୍ରୋଡ଼ଗତ କରି ଚିତାଗ୍ନି ବାଟଦେଇ ତାଙ୍କୁ ଅନୁଗମନ କରିବା ସ୍ତ୍ରୀର କର୍ତ୍ତବ୍ୟ । ଅନ୍ତତଃ ଏ ଯୁଗରେ ସହମୃତା ନ ହୋଇ ଜୀବନମ୍ମୃତ ହୋଇ ପଡ଼ି ରହିବାରେ ଯଥାର୍ଥ ନାରୀତ୍ୱ ଓ ବୀରତ୍ୱ ଅଛି । ମରିଗଲେ ଏକାଥରକେ ସବୁ ନାଟ ଛିଣ୍ଡିଯାନ୍ତା । କିନ୍ତୁ ସ୍ୱାମୀଙ୍କ ମୃତ୍ୟୁ ପରେ ସମାଜ ଓ ପରିବାର ବିଧବାକୁ ଆଜୀବନ ଯେପରି କାଲୁବାଲୁ କରେ ସେ କଳବଲ ଦାଉକୁ ଆଜୀବନ ପାଟି ନ ଫିଟାଇ ଠେଙ୍ଗହଣା ଚୋଟମାନ ଦିହରେ ବିଡେଇନେଇ ପରିବାରରେ ଚଳିଯିବା ହିଁ ପ୍ରକୃତ ବୀରତ୍ୱ ଅଟେ ।

କେହି କେହି ବୈଜ୍ଞାନିକ ତର୍କର ଅବତାରଣା କରି କହନ୍ତି, ଭବିଷ୍ୟତ ବଂଶଧରର ଭଲ ମନ୍ଦ ଲକ୍ଷ୍ୟ କରି ଦେଖିଲେ, ନାରୀର ଭୁଲ ଭ୍ରାନ୍ତିରେ ପରିବାରର ବେଶି କ୍ଷତି ହୁଏ, ପୁରୁଷର ଭ୍ରାନ୍ତିରେ ତେତେ କିଛି ହୁଏନାହିଁ । ଡାକ୍ତରମାନେ ଜାଣନ୍ତି, କେତେ କୁଳବତୀଙ୍କୁ ପାପୀ ସ୍ୱାମୀଙ୍କ ଅପକର୍ମରୁ ଅସତୀର ପାପ ଓ କୁତ୍ସିତ ବ୍ୟାଧି ଯନ୍ତ୍ରଣା ଭୋଗ କରିବାକୁ ହୁଏ ! ଆଉ କେତେ ସଂଖ୍ୟାତୀତ ଶିଶୁଙ୍କୁ ଚିରରୁଗ୍ଣ ହୋଇ ଜନ୍ମ ଗ୍ରହଣ କରିବାକୁ ହୁଏ ଏବଂ ସାରା ଜୀବନ ପିତୃପିତାମହଙ୍କ ଦୁଷ୍କର୍ମର ପ୍ରାୟଶ୍ଚିତ୍ତ କରିବାକୁ ହୁଏ ! ଅଥଚ ଶାସ୍ତ୍ର ଏଥିରେ ଅସ୍ପଷ୍ଟ, ଲୋକାଚାର ନିର୍ବାକ୍, ସମାଜ ମୌନ ! ତାହାର ପ୍ରଧାନ କାରଣ ଏହି ଯେ, ଶାସ୍ତ୍ରବାକ୍ୟଗୁଡ଼ାକ ସମସ୍ତ ହିଁ ପ୍ରାୟ ଗୁଳିହୀନ ବନ୍ଧୁକ ଆବାଜ ପରି ବୃଥା ଶବ୍ଦର ଆସ୍ଫାଳନ ମାତ୍ର । ପୁରୁଷର ଇଚ୍ଛା ଏବଂ ଅଭିରୁଚି ହିଁ ଅସଲ କଥା ଏବଂ ତାହା ହିଁ ସମାଜର ଯଥାର୍ଥ ସୁନୀତି । ମନୁ, ପରାଶର, ହାରିତ ଏସବୁଗୁଡ଼ାକ ମିଥ୍ୟା କଳ୍ପନା, ଅସହ୍ୟ ଭଣ୍ଡତା । ପୁରୁଷ ଆଖି ଆଗରେ ଗାଇ ବଜାଇ ଅନ୍ୟାୟ ଅଧର୍ମ କରି ଯାଉଥିବ, ଅଥଚ ସତୀତ୍ୱ ବଜାୟ ରଖିବା ପାଇଁ ନାରୀ ପଦେ ପାଟି ଫିଟାଇବ ନାହିଁ, ଏପରିକି, ତାହାର ବୀଭତ୍ସ ଜଘନ୍ୟ ବ୍ୟାଧିଗୁଡ଼ାକ ପର୍ଯ୍ୟନ୍ତ ଜାଣି ଶୁଣି ନିଜ ଦେହରେ ସଂକ୍ରମିତ କରିନେବାକୁ ହେବ । ଏହା ଅପେକ୍ଷା ନାରୀର ଆଉ ଅଗୌରବର ବିଷୟ କଣ ହୋଇପାରେ ? ଏଥିରେ କେହି ଶାସ୍ତ୍ରଜ୍ଞ ଭ୍ରୂକୁଞ୍ଚିତ କରି କହିବେ, ''ସୀତା ରାମ ଆଦର୍ଶ ଦମ୍ପତି, ତଥା ଆଦର୍ଶ ନର-ନାରୀ ! ରାମ ଯେତେବେଳେ ସୀତାଙ୍କ ଶରୀରର ବିଶୁଦ୍ଧତାକୁ ପରଖିବା ପାଇଁ ଏତେଥର ଅଗ୍ନିପରୀକ୍ଷା କଲେ, ପ୍ରଜାରଞ୍ଜନ ପାଇଁ ଅନ୍ତଃସତ୍ତ୍ୱାବସ୍ଥାରେ ସୀତାଙ୍କୁ ବନକୁ ଘଉଡ଼ିଦେଲେ, ତେତେବେଳେ ସୁଦ୍ଧା ସୀତା ରାମଙ୍କ ପାଦପଦ୍ମ ଚିନ୍ତା କରି କରି କାନ୍ଦୁଥାନ୍ତି । ଏତେ କଷ୍ଟରେ ଦିନେ ତାଙ୍କ ଅଦୃଷ୍ଟ ଛଡ଼ା ରାମଚନ୍ଦ୍ରଙ୍କୁ ଦୋଷ ଦେଇ ନ ଥିଲେ । କିନ୍ତୁ ତହିଁରେ ସୀତାଙ୍କର କିଛି ଗୌରବ ହ୍ରାସ ହୋଇ ନ ଥିଲା; ପରନ୍ତୁ ବଢ଼ିଥିଲା ।'' କିନ୍ତୁ ରାମଙ୍କର ଛୋଟ ସ୍ୱାର୍ଥ ମନେ କରି ବଡ଼ ସ୍ୱାର୍ଥପାଇଁ ସ୍ତ୍ରୀ ତ୍ୟାଗ କଣ ଶୋଭନୀୟ ନ୍ୟାୟ ହୋଇଥିଲା କି ? ବିଶେଷତଃ ରାମ ଯେତେବେଳେ ଆମ ଆଖିରେ ଅବତାର ବା ଆଦର୍ଶ । ରାମ ବାରମ୍ବାର ସୀତାଙ୍କୁ ଅଗ୍ନିପରୀକ୍ଷା କଲାରୁ ସୀତାଙ୍କର ଧୈର୍ଯ୍ୟ ସୀମା ଟପିଗଲାରୁ, ସେ ଦେବୀ ହୁଅନ୍ତୁ

ବା ମାନବୀ ହୁଅନ୍ତୁ, ସେ ଲୋକାଚାର ସୀମା ମଧ୍ୟରେ ନିଜକୁ ସମ୍ଭାଳି ରଖି ପାରିଲେ କି ? ସୀମା ଟପିଗଲେ । *ସୀତା ନାରୀଜାତିକୁ ତାଙ୍କ ଆଦର୍ଶଦ୍ୱାରା ଏଇଟା ଦେଖାଇ ଦେଇଗଲେ ଯେ, ସମାଜପାଇଁ, ଲୋକଙ୍କପାଇଁ, ପୁରୁଷପାଇଁ ନିଜକୁ ବଳି ଦେଇ ସମାଜର ପିପାସା ତୃପ୍ତ କରିବା ଛଡ଼ା ନାରୀର ଅନ୍ୟ ଉପାୟ ନାସ୍ତି ।* ସତରେ ସେଇଆ ସର୍ବଯୁଗରେ କମ ବେଶି ଘଟିଆସୁଛି ତ । କିନ୍ତୁ ଏଇଟା କେହି କହି ପାରିବେ କି, ବିଧାତାର ନାରୀ ସୃଷ୍ଟି କେବଳ ପୁରୁଷ ପଦତଳେ ଦଳି ହେଇ ତାହାର ପାଶବିକତାର ତୃପ୍ତି କରିବାକୁ ? ଛାଡ଼ ସେ କଥା ।

ଅନ୍ୟାନ୍ୟ ଦେଶରେ Divorce (ସ୍ତ୍ରୀତ୍ୟାଗ) ଅଛି, ସେଠିକାର ରମଣୀଙ୍କର କିଛି ହେଲେ ଉପାୟ ଅଛି । କିନ୍ତୁ ଆମ୍ଭମାନଙ୍କର ଏହି ଯେ ସ୍ୱୟଂ ଭଗବାନଙ୍କର ଦେଶ, ଦେବଭୂମି, କର୍ମଭୂମି, ଯେଉଁ ଦେଶର ଶାସ୍ତ୍ର ପରି ଶାସ୍ତ୍ର ନାହିଁ, ଯେଉଁ ଦେଶର ଧର୍ମ ପରି ଧର୍ମ ନାହିଁ, ଯେଉଁଠି ଜନ୍ମି ନ ପାରିଲେ ମନୁଷ୍ୟ ମନୁଷ୍ୟ ନୁହେଁ, ସେ ଦେଶର ନାରୀଙ୍କ ପାଇଁ ଲେଶମାତ୍ର ପଥ ଉନ୍ମୁକ୍ତ ନାହିଁ । *ଏ ଦେଶରେ ପୁରୁଷେ ରମଣୀର ହାତ ଗୋଡ଼ ବାନ୍ଧି ଅସଭ୍ୟ ବର୍ବରଙ୍କ ପରି ଠେଙ୍ଗାରେ ବାଡ଼ାନ୍ତି ।* ତାଙ୍କର ସ୍ୱାର୍ଥକୁ ସର୍ବାଙ୍ଗସୁନ୍ଦର କରି ସେ ନାରୀଠାରୁ ଷୋଳପଣ ଆଦାୟ କରି ନ ପାରିଲେ ନାରୀର ଗାଲ ମୁଣ୍ଡ ଫଟାଇ ଫଟାଇ ରକ୍ତରେ ସ୍ନାନ କରାଇ ଦିଅନ୍ତି । ସେ ବିଚାରୀ ହଲଚଲ ହୋଇପାରେ ନାହିଁ । ସେଥିପାଇଁ ପୁରୁଷ ବାହାରେ ଆସ୍ଫାଳନ କରି କହେ, ‘‘ଦେଖ, ଆମ ଦେଶର ନାରୀଙ୍କ ପରି କଷ୍ଟସହିଷ୍ଣୁ ଜୀବ ଜଗତରେ ଆଉ କେଉଁଠି ଅଛି ?’’ ନାହିଁ । ତାହା କିଏ ନ ଜାଣେ ? କିନ୍ତୁ ଯେଉଁଥିପାଇଁ ନାହିଁ, ସେ କାରଣଟା କଣ ପୁରୁଷର ବଡ଼େଇ କରି ଆତ୍ମଗାରିମା କରିବାର ବିଷୟ ? ବିଦେଶର ଖବର କାଗଜରେ ଯଦି କେବେ ବାହାରେ, ଅମୁକର ସହିତ ଅମୁକ ସ୍ୱାମୀ ସ୍ତ୍ରୀ ସମ୍ବନ୍ଧ ଛେଦ କରିବାକୁ ମକଦ୍ଦମା ଦାଏର କରିଅଛି, ଆମ ସ୍ୱଦେଶୀ କାଗଜର ସମ୍ପାଦକମାନଙ୍କର ଆହ୍ଲାଦଧାରା ଉଚ୍ଛୁଳି ଫାଟିପଡ଼େ ! ଚିତ୍କାର କରି ବଡ଼ ଅକ୍ଷରରେ ବିସ୍ମୟାତ୍ମକ (!) ଚିହ୍ନ ଦେଇ ସେ ଦିଗ୍‌ବିଦିଗ କମ୍ପାଇ ଲେଖନ୍ତି, ‘‘ସାବଧାନ ! ସାବଧାନ ! ଚାହିଁ ଦେଖ, ଧନ୍ୟ ପାଶ୍ଚାତ୍ୟ ସଭ୍ୟତା !!!’’ ସେମାନଙ୍କର ମନର ଭାବ ଏହି ଯେ, ପରର ଦୋଷଗୁଡ଼ାକ ପ୍ରଚାର କରିପାରିଲେ ନିଜର ଗୁଣଗୁଡ଼ାକ ବଳେ ବଳେ ଉଜ୍ଜ୍ୱଳି ଫୁଟିଉଠିବ । Divorce (ବିବାହ ବନ୍ଧନ ଛେଦନ) ଜିନିଷଟା ବାଞ୍ଛନୀୟ ନୁହେଁ, ସେ କଥା ସେମାନେ ମଧ୍ୟ ବୁଝନ୍ତି, କିନ୍ତୁ ମାଡ଼ଖାଇ ସେମାନେ ଚୁପ୍‌ଚାପ୍ ହୋଇ ରହି ପାରନ୍ତି ନାହିଁ, ଲେଉଟି ମରାମରି କରନ୍ତି ଓ ଦିଓଟି ଗୋଟିଏ ବଜାନ୍ତି । ମାଡ଼ ମରାମରି କାର୍ଯ୍ୟଟା ନିଃଶବ୍ଦରେ ହେବା ବସ୍ତୁ ନୁହେଁ । ସେଥିପାଇଁ ବାହାରର ଲୋକେ ଶୁଣନ୍ତି; ତାହା ଶୁଣି ଶତ୍ରୁପକ୍ଷ ଓ ବିରୁଦ୍ଧବାଦୀଗଣ ଦାନ୍ତ ନେଫଡ଼ି ହସି ବେଦମ ହେବାକୁ ଅବସର ପାନ୍ତି; କିନ୍ତୁ ଯଦି ସେମାନଙ୍କୁ ପଚରାଯାଏ, ଯେଉଁ କାରଣରେ ସେ ଅଞ୍ଚଳରେ ଏପରି ମକଦ୍ଦମା ଦାଏର ହୁଏ, ସେ କାରଣ କି ହିନ୍ଦୁ ଗୃହରେ ଘଟୁନାହିଁ ? ମୋର ବିଶ୍ୱାସ, ଯେ ଅତି ବଡ଼ ନିର୍ଲଜ୍ଜ,

ବେହେଲ, ସେ ମଧ୍ୟ ବୋଧହୁଏ ନାହିଁ କରିବ ନାହିଁ, କି ହଁ କରି ପାରିବ ବି ନାହିଁ । ଯଦି ତାହା ହୁଏ, ତେବେ ଦାନ୍ତ ନେଫଡ଼ିବାର ହେତୁଟା କେଉଁଠି ରହିଲା ? ମକଦ୍ଦମାଟା କଣ ଅସଲ କଥା ? କାରଣଟା କଣ କିଛି ନୁହେଁ ? ୟୁରୋପରେ ଆଗେ ବିବାହ ବନ୍ଧନ ଅଛେଦ୍ୟ ଥିଲା । ଏଥିଯୋଗୁଁ ଡାକ୍ତର Ethic of Free thoughtରେ କହିଅଛନ୍ତି, "Church's irrational rigidity as regards divorce tended to foster disorder and shame."

ଏହାଦ୍ୱାରା ମୁଁ ବିବାହବନ୍ଧନ ଛେଦ ବିଧିକୁ ସମର୍ଥନ କରୁଅଛି ବୋଲି ଯେପରି କେହି ମନେ ନ କରନ୍ତି । ହଣାକଟା ହେବା ଯେ ଭଲ କଥା, ଏଇଟା ସମାଜରେ ଘଟୁ, ଏ କଥା ନିଶ୍ଚୟ କେହି କାମନା କରନ୍ତି ନାହିଁ । *କିନ୍ତୁ ସ୍ତ୍ରୀତ୍ୟାଗ ବୋଲି ଗୋଟାଏ ବିଷମ କଥା ଆମ ଭାରତୀୟ ସମାଜ ଭିତରେ ଯେତେବେଳେ ପ୍ରଚଳିତ ଅଛି, ସେତେବେଳେ ଉଭୟ ପକ୍ଷରେ ଏ ଜିନିଷଟା ଥିବା କାହିଁକି ଅନୁଚିତ ? ଏହି ବୈଷମ୍ୟଟା ମୁଁ ବୁଝିବାକୁ ଅକ୍ଷମ ! ଅବଶ୍ୟ ପୁରୁଷ ଏ କଥା କେବେହେଁ ମାନିବ ନାହିଁ ଯେ, ତାହାରି ପରି ତ୍ୟାଗ କରିବା କ୍ଷମତା ତାହାର ସ୍ତ୍ରୀର ମଧ୍ୟ ରହୁ ।* କାହିଁକି ଅନ୍ୟାନ୍ୟ ଦେଶର ସ୍ତ୍ରୀମାନଙ୍କ ପରି ତାକୁ ତାହାର ନ୍ୟାର୍ଯ୍ୟ ଅଧିକାର ଦିଆ ହେବ ନାହିଁ ? ଏହାର ମଧ୍ୟ କିଛି ସଙ୍ଗତ କାରଣ ପୁରୁଷ ନିର୍ଦ୍ଦେଶ କରି ପାରିବ ନାହିଁ, ଖାଲି ପ୍ରଜ୍ୱଳିତ କୋପରେ ଜବାବ ଦେବ, "କି ଅସମ୍ଭବ ! ଆମ ସମାଜରେ ଯେଉଁଟା ହୋଇ ଆସି ନାହିଁ, ସେ କିପରି ହେବ ?" ଅସଲ କଥାଟା ଏହି, ସ୍ତ୍ରୀକୁ ସମାନ ଅଧିକାର ଦିଆଗଲେ ପୁରୁଷର ଅପରାଧ କରିବାର ଅବାଧ ସ୍ୱାଧୀନତା ଖର୍ବ ହୋଇଯିବ । ପୁରୁଷ ଏହା ଚାହେଁ ନାହିଁ – ବିଶେଷତଃ ଆମ ଦେଶର ପୁରୁଷ । ଯେ ନିଜେ କାପୁରୁଷ, ଭୀରୁ, ଅନ୍ୟାନ୍ୟ ଦେଶ ତୁଳନାରେ ନାରୀ ପରି ନିରୂପାୟ, ଯେ ନାରୀ ପାଖରେ ପୁରୁଷ ବୋଲି ପରିଚୟ ଦେବାର ଯଥାର୍ଥ କ୍ଷମତାରୁ ବଞ୍ଚିତ, ସେ ଯେ କାପୁରୁଷ ପରି ତାହା ଅପେକ୍ଷା ଦୁର୍ବଳ ଓ ନିରୂପାୟକୁ ହିଁ ପୀଡ଼ନ କରି କର୍ତ୍ତୃତ୍ୱ କରିବାର ଆନନ୍ଦ ଉପଲବ୍ଧି କରିବାକୁ ଚାହିଁବ, ନାରୀର ମହତ୍ୱକୁ ଉପେକ୍ଷା କରିବ, ତାହାର ମୂଲ୍ୟ ମାଡ଼ଗାଳିରେ ନିର୍ଦ୍ଦିଷ୍ଟ କରିବ, ଏହା ଅତି ସ୍ୱାଭାବିକ । ସେ ମରିଗଲେ ସୁଦ୍ଧା ସ୍ୱେଚ୍ଛାରେ ଏ ଅଧିକାରରୁ କାଣିଚାଏ– ସୂଚ୍ୟଗ୍ର ପରିମାଣରେ– ଛାଡ଼ିବାକୁ ଇଚ୍ଛା କରିବ ନାହିଁ । ସେ ଯେ ଶାସ୍ତ୍ର ଗାୟନ କରିବ, ବିଜ୍ଞାନର ଦ୍ୱାହି ଦେବ, ସମାଜ ଓ ଲୌକିକତାର ନଜିର ବାଢ଼ିବ, ସୁନୀତିର ଛଦ୍ମ ଅଭିନୟ ଏ ମଡ଼ା ସମାଜରେ କରିବ, ଏଗୁଡ଼ାକ ମଧ୍ୟ ଜଣା କଥା । କିନ୍ତୁ ନାରୀର ବୁଝି ଦେଖିବାର ଓ ଚେଇଁ ଉଠିବାର ସମୟ ଆସିଲାଣି । ସେ ତାହାର ଈଶ୍ୱରଦତ୍ତ ସମସ୍ତ ଶକ୍ତି ବ୍ୟୟ କରି ତାହାର ହୃତ ନାରୀତ୍ୱକୁ ପୁନଃପ୍ରତିଷ୍ଠିତ କରିବାର କ୍ଷମତା ଅର୍ଜନ କରୁ । 'ନାରୀତ୍ୱ' ଯେ 'ପୁରୁଷତ୍ୱ' ଅପେକ୍ଷା ହେୟ ନୁହେଁ, ସେ ଜୀବନପଣରେ ସାଧନା କରି, ଆପଣାକୁ ବଳି ଦେଇ ପୁରୁଷଜଗତକୁ ଦେଖାଇବାରେ ଯତ୍ନବତୀ ହେଉ । ଯେଉଁ କ୍ଷମତା-ମଦ-ଗର୍ବିତ

ପୁରୁଷ ସ୍ତ୍ରୀକୁ ନିଜ ପୁରୁଷ ଜାତିର ଦାଉରୁ ବାଟ ଘାଟରେ ରକ୍ଷା କରି ପାରିବ ନାହିଁ ବୋଲି ଜାଣିକରି ଶାସ୍ତ୍ର ଗଢେଇଛି– 'ପଥି ନାରୀ ବିବର୍ଜିତା', ତାହାର ଶାସ୍ତ୍ରକୁ ମଧ୍ୟ ତେତିକି ମୂଲ୍ୟ ଦେବା ଉଚିତ । ମୋର ମନେ ହେଉଛି, ଏକଥାଗୁଡ଼ାକ ପୁରୁଷମାନଙ୍କୁ ଭଲ ଲାଗୁ ନ ଥିବ ଏବଂ ଅନ୍ତଃପୁରଚଉଁରିରେ ଏ ଆହ୍ୱାନଗୁଡ଼ାକ ପହଞ୍ଚୁ, ଏହା ସେମାନଙ୍କର ଇଚ୍ଛା ନୁହେଁ । କିନ୍ତୁ ଯେଉଁ ଦେଶରେ ଅର୍ଥଶୂନ୍ୟ ଅବିଚାର ଅତ୍ୟାଚାର ବା ଅଖାଡୁଆ ବୁଝାମଣା ଯୋଗୁଁ ସ୍ତ୍ରୀଜାତି ଦିବାନିଶି ପିଷ୍ଟ, ମର୍ଦ୍ଦିତ, ଜର୍ଜରିତ ଓ କ୍ଷତବିକ୍ଷତ ହେଉଅଛି, ସେ ଦେଶରେ ଅବଶ୍ୟ ଦିନେ ନାରୀଜାତି ଏ ନିର୍ଯାତନାର କୈଫିୟତ୍ ପୁରୁଷ ଜାତିଠାରୁ ତଲବ କରିବ, ଅତ୍ର ସନ୍ଦେହୋ ନାସ୍ତି । ନାରୀକୁଳକୁ ଖପ୍ପା ହୋଇ ପୁରୁଷ ନିର୍ମୂଳ କରୁ ପଛକେ ପୁରୁଷକୁ ଭଲ ଲାଗୁ ଅବା ପିତା ଲାଗୁ, ସତ୍ୟ ତାହାର ଉଜ୍ଜ୍ୱଳ ପ୍ରଭାବ ନିଶ୍ଚୟ କାଳକ୍ରମେ ବିସ୍ତାର କରିବ । ଏହାକୁ ହୁରୁଡ଼ାଇ ଦେବାର କ୍ଷମତା ପୁରୁଷର ନାହିଁ । ଫ୍ରାନ୍ସର ନେପୋଲିୟନ ବୋନାପାର୍ଟ ଦିନେ ମ୍ୟାଡାମ୍ କନ୍‌ଡୋର ସେଣ୍ଟଙ୍କୁ କହିଥିଲେ, I do not like women to meddle with things. ତହିଁରେ ମ୍ୟାଡାମ୍ ମଧ୍ୟ ଜବାବ ଦେଇଥିଲେ, You are right General, but in a country where it is the custome to cut off the heads of women, it is natural that they should wish to know the reason, why.



(ଉତ୍କଳ ସାହିତ୍ୟ ୨୫/୮ ସଂଖ୍ୟା, ମାର୍ଗଶିର ୧୩୨୯ ସାଲ ପୃ ୨୬୮-୨୮୦)

# ଭାରତ-ନାରୀଙ୍କୁ ମହାତ୍ମାଗାନ୍ଧୀଙ୍କ ପ୍ରେରଣା

୧୯୨୧ ସାଲରୁ ୧୯୪୭ ପର୍ଯ୍ୟନ୍ତ ଭାରତରେ ନାରୀ ଜାଗରଣ ସମ୍ବନ୍ଧରେ ତଥ୍ୟ ନେଲେ ଏ ଦେଶରେ ନାରୀର ଯାହା କିଛି ଶିକ୍ଷା, ଆର୍ଥିକ, ସାମାଜିକ ତଥା ରାଷ୍ଟ୍ରୀୟ ଉନ୍ନତି ଘଟିଅଛି, ତାର ମୂଳ କାରଣ ଖୋଜିଲେ ଜଣାଯାଏ ଯେ, ଏହି ମହାବିକାଶର ଏକମାତ୍ର ନିୟାମକ ମହାତ୍ମାଗାନ୍ଧିଜୀ । ତାଙ୍କରି ପ୍ରେରଣାରେ ଏ ଦେଶରେ ନାରୀ ଜାଗୃତିର ଅଗ୍ରଦୂତୀ ନେତ୍ରୀ ତଥା ନାରୀକର୍ମୀଙ୍କର ସୃଷ୍ଟି । ନାରୀଏ ଏ କ୍ଷେତ୍ରରେ ଯାହା କରୁଛନ୍ତି, ସେସବୁର ମୂଳରେ ହେଉଛି, ମହାତ୍ମାଙ୍କର ଭାବ, କର୍ମ ଓ ମତବାଦ । ତେଣୁ ଭାରତର ନାରୀଙ୍କ ଜାଗରଣର ଆଦିଗୁରୁଭାବରେ ଆମ ଦେଶ ମହିଳାଙ୍କର ସେ ଚିରନମସ୍ୟ ।– ଏଇ କାଳରେ ନମସ୍ୟ, ଭାବୀ ଯୁଗରେ ନମସ୍ୟ । ସେ ନିଜ ରଚନାରେ ନାରୀମାନଙ୍କ ସମ୍ବନ୍ଧରେ ଯେପରି ଉଦାର ଓ ନିର୍ଭୀକ ମନୋଭାବ ପ୍ରକାଶ କରିଛନ୍ତି, କେବଳ ଭାରତରେ ନୁହେଁ, ପୃଥିବୀର ଅନ୍ୟ କୌଣସି ନେତା ସେପରି ମତବାଦ ପ୍ରକାଶ କରିଥିବାର ମତେ ଜଣା ନାହିଁ । ସେ ଭାରତର ନାରୀ ସମସ୍ୟାର ଯେପରି ସମାଧାନ କରିଛନ୍ତି, ତାହା କେବଳ ଭାରତ ନାରୀ ନୁହେଁ, ପୃଥିବୀର ପ୍ରତିଟି ନାରୀ ଜୀବନ ପ୍ରତି ପ୍ରଯୁଜ୍ୟ । ତାଙ୍କରି ଡାକରେ ଦେଶମାତୃକାର ସେବା ନିମନ୍ତେ ଗାଁ ଗହଳରେ ସଡୁଥିବା ଅସଂଖ୍ୟ ଅଶିକ୍ଷିତା, ଅନାଦୃତା ନାରୀ ଭାରତର ମୁକ୍ତି ନିମନ୍ତେ ସତ୍ୟାଗ୍ରହ ସମରରେ ଯୋଗଦେଇ ଦେଶର ତଥା ଦଶର ସମ୍ମାନ ରଖିଛନ୍ତି । ବର୍ତ୍ତମାନ ମଧ ବହୁ ନାରୀ ମହାତ୍ମାଗାନ୍ଧୀଙ୍କ ପ୍ରଦର୍ଶିତ ଗଠନମୂଳକ କର୍ମମାନ ଗାଁମାନଙ୍କରେ ପ୍ରସାର କରୁଛନ୍ତି । ସେହି ନାରୀମାନେ ଲୋକଚକ୍ଷୁରେ ନିଜର ତ୍ୟାଗ ଓ ସେବାଦ୍ୱାରା ସମ୍ମାନିତା ଓ ଆଦୃତା ହୋଇଛନ୍ତି । ସେମାନଙ୍କ କର୍ମ ଓ ସେବା ଦେଖି ନାରୀଚେତନା, ଯୁଗାନ୍ତରର ନିଦ୍ରାଭଙ୍ଗ କରି ସଂସ୍କାରମୁକ୍ତ ବନ୍ଧନହୀନ ଅଙ୍ଗନ ତଳେ ଆତ୍ମା ଢାଳିବାର ସାହସ ଓ ପ୍ରେରଣା ପାଇଅଛି । ଊନବିଂଶ ଓ ବିଂଶ ଶତାବ୍ଦୀର ଭାରତର ଧର୍ମପ୍ରଚାରକ ଓ ସମାଜସଂସ୍କାରକ ରାଜା ରାମମୋହନ, କେଶବ ଚନ୍ଦ୍ର, ବିବେକାନନ୍ଦ, ଈଶ୍ୱରଚନ୍ଦ୍ର, ଦୟାନନ୍ଦ ସରସ୍ୱତୀ ଆଦି, ଅତୀତ ଭାରତର ବିଭୂତିମାନ୍ ପୁରୁଷମାନେ ସମାଜର ଯେ ତମିସ୍ରା, କାର୍ଯ୍ୟରେ ଦୂର କରିପାରି ନଥିଲେ, ତା ଏ ଯୁଗର ଋଷି ଗାନ୍ଧିଜୀଙ୍କ ଦ୍ୱାରା ସମାହିତ ଓ ସୁସାଧ ହୋଇ ପାରିଲା । ଆଜି କଂଗ୍ରେସର ସ୍ୱାଧୀନତା ଆନ୍ଦୋଳନରେ ଯଦି କେହି ଭାରତର ଉପକୃତ ହୋଇଥାଆନ୍ତି, ତେବେ ସେ ହେଉଛନ୍ତି ଭାରତର ନାରୀ, ହରିଜନ, କୃଷକ ଓ ଦେଶର ଦଳିତ ସମ୍ପ୍ରଦାୟ । ଏଇମାନଙ୍କ ରୁଦ୍ଧକଣ୍ଠରେ ଗାନ୍ଧୀ ଦେଇଛନ୍ତି

ବିପ୍ଳବର ବାଣୀ । ସହସ୍ର ବର୍ଷ 'ହାରେମର' ଶିକୁଳି ଭାଙ୍ଗି, ନାରୀ ନିଜର ଆତ୍ମ-ସଂପଦ ଜାତୀୟ ଜୀବନରେ ଢାଳିଦେବାକୁ ଆଜି ସମର୍ଥ ହୋଇଛି ମହାତ୍ମାଜୀଙ୍କ ହେତୁରୁ । ଏହା ଊନବିଂଶ ଶତାବ୍ଦୀରେ ବିଲାତରୁ ଆସିଥିବା ପାଦ୍ରୀ ସାହେବ ଓ ମେମ୍ ପ୍ରଚାରିତ ଖ୍ରୀଷ୍ଟୀୟ ସଭ୍ୟତାର ପ୍ରତିଷ୍ଠା ନୁହେଁ । ଭାରତ ନାରୀଠାରେ ଯେ ସୁପ୍ତ ଶକ୍ତି ନିହିତ ଥିଲା ତାକୁ ବିଜୟ-ଶଙ୍ଖ ବଜାଇ ପୁରଶ୍ଚରଣ ଓ ପ୍ରାଣଦାନ କରିଛନ୍ତି ମହାତ୍ମାଗାନ୍ଧୀ ।

ଓଡ଼ିଶା ଭଳି ଅତି ଅଧଃପତିତ ସଢ଼ା କୁସଂସ୍କାର ଓ କୁପ୍ରଥାପୂର୍ଣ୍ଣ ପ୍ରଦେଶରେ ମହାତ୍ମା ହିଁ କେବଳ ଜାଗୃତିର ନିୟାମକ ଥିଲେ । ଆମ ଦେଶରେ କନ୍ୟାମାନଙ୍କ ଆର୍ଥିକ ସଂସ୍ଥା, ସମାଜ ଓ ଆଇନ ଦୃଷ୍ଟିରେ ଦୃଢ଼ ନ ଥିବାରୁ ପିତାମାତା ଯେଉଁ କନ୍ୟାକୁ ବହୁତ ଆଦରରେ ବଢ଼ାଇ ଥାଆନ୍ତି, ସେମାନଙ୍କୁ ଦୋଭେଇ ଓ ବୁଢ଼ାବରମାନଙ୍କୁ ବେଳେବେଳେ ଧନ ଲୋଭରେ ବିଭା କରାଇ ଦିଅନ୍ତି । ଏ ବିବାହ ଗୋଟିଏ ବ୍ୟବସାୟ-ଧର୍ମ । ଏହାଦ୍ୱାରା କନ୍ୟାମାନେ ଅଳ୍ପ ବୟସରେ ବିଧବା ହୋଇ ସାମାଜିକ ଲାଞ୍ଛନାର ଶିକାର ହୁଅନ୍ତି । ମହାତ୍ମାଜୀ ଏ କୁପ୍ରଥାର ନାଶ ନିମନ୍ତେ ବାଲ୍ୟବିବାହ ବିରୋଧରେ ଘୋର ସଂଗ୍ରାମ କରିଛନ୍ତି । ଆମ ଦେଶରେ ଯେତେ ଜନ୍ମ ଓ ମରଣ, ସାରା ସଂସାରରେ ତାହା ନାହିଁ । ଏହା ଦାରିଦ୍ର୍ୟର ଉପସର୍ଗ । ସେଥିପାଇଁ ଅବସ୍ଥା ଭଲ ନ ହେଲେ, ପଙ୍ଗପାଳ ଭଳି ସନ୍ତାନଗୁଡ଼ିଏ ସୃଷ୍ଟିକରି ସେମାନଙ୍କୁ କଲବଲ ଓ ମୂର୍ଖ କରି ରଖିଲେ ଆମେ ପାପ କରିବୁ । ଏଥିପାଇଁ ମହାତ୍ମାଗାନ୍ଧୀ ବାରମ୍ବାର ଦେଶର ଯୁବକ ଓ ଯୁବତୀଙ୍କୁ ସତର୍କ କରି ବ୍ରହ୍ମଚର୍ଯ୍ୟ ଓ ସଂଯମରେ ରହି ଜନ୍ମ ନିରୋଧ କରିବାକୁ କହିଛନ୍ତି । ତାଙ୍କ ମତରେ ନାରୀର ଚରିତ୍ର ହେଉଛି ଆଳଙ୍କାର । ସେଥିପାଇଁ ସେ ନାରୀମାନଙ୍କୁ ଅଳଙ୍କାର ଓ ବିଳାସ ଭୂଷଣ ତ୍ୟାଗ କରି ଦରିଦ୍ରର ସେବାରେ ଆତ୍ମ ନିୟୋଗ କରିବାକୁ କହିଛନ୍ତି । ନାରୀମାନଙ୍କଠୁଁ ସେ ତ୍ୟାଗପୂତ ସେବାର ଆଶା ରଖିଥିଲେ । ବିଧବା ବିବାହ ଏବଂ ଅସବର୍ଣ୍ଣ ବିବାହ ସପକ୍ଷରେ ତାଙ୍କର ମତ ଥିଲା । ମେଦିନୀପୁର ନାରୀସଭାରେ ସେ ଉଦ୍‌ବୋଧନ କରି ନାରୀଙ୍କୁ କହିଥିଲେ ଯେ, ବର୍ତ୍ତମାନ ଅବସ୍ଥାରେ ନାରୀମାନେ ଯେବେ ସୁମାତା ହୋଇ ଉପଯୁକ୍ତଭାବରେ ନିଜର ସନ୍ତାନ ପାଳି ସେମାନଙ୍କୁ ଦେଶ ଓ ଦଶର ସେବାରେ ଆତ୍ମନିୟୋଗ କରିବାପାଇଁ ତିଆରି କରି, ଦେଶ ସେବା ପାଇଁ ଉତ୍ସର୍ଗ କରି ପାରିବେ, ତେବେ ଦେଶର ତାହା ହିଁ ସବୁଠାରୁ ବଡ଼ ସେବା ହେବ । କେବଳ ଓଡ଼ିଆ ନାରୀ ମନରେ ନୁହେଁ ଭାରତନାରୀ ମନରେ ସାହସ ଓ ଦମ୍ଭ ଦେଇଛନ୍ତି ସେ । ଭାରତୀୟ ନାରୀ ଆଜି ପର୍ଦ୍ଦା ଛିଣ୍ଡାଇଛି ଓ ବିଶ୍ୱରେ ଆତ୍ମଦାନ ଦେଇ ମନୁଷ୍ୟ ବା ବ୍ୟକ୍ତିରୂପେ ଛିଡ଼ା ହୋଇଛି ତାଙ୍କରି ତପସ୍ୟାରୁ । ଆଜି ଯେ ସରୋଜିନୀ, ବିଜୟଲକ୍ଷ୍ମୀ, ଅରୁଣା, ସୁଚେତା, ଅମୃତ କାଉର ପ୍ରଭୃତି ଭାରତରେ ପ୍ରତିଷ୍ଠିତା ଓ ସମ୍ମାନିତା, ତା ମୂଳରେ ଗାନ୍ଧୀଙ୍କ ପ୍ରେରଣା ନିହିତ । ଓଡ଼ିଶାରେ କଂଗ୍ରେସ ଗହଣରେ ଯେଉଁ ନାରୀମାନେ ଲୋକସେବା କରି ଆସିଛନ୍ତି, ସେମାନେ ମଧ୍ୟ ଏହି ଆଦର୍ଶରେ ଅନୁପ୍ରାଣିତ ।

ବର୍ତ୍ତମାନ ମୁସଲମାନ ଧର୍ଷିତା ଲାଞ୍ଛିତା ନାରୀମାନଙ୍କୁ ସମାଜରେ ଗ୍ରହଣ କରି ସେମାନଙ୍କୁ ସାମାଜିକ ସମ୍ମାନ ଦେବାପାଇଁ ଗାନ୍ଧିଜୀଙ୍କର ହିନ୍ଦୁସମାଜକୁ ଆକୁଳ ଆହ୍ୱାନ ଆସେ । ଶୁଣିପାରୁ, ନୂଆଖାଲି କଲିକତାର ଧର୍ଷିତା କୁମାରୀମାନଙ୍କୁ ହିନ୍ଦୁସମାଜରେ ଗ୍ରହଣ କରି ବିଭା ହେବା ପାଇଁ ହିନ୍ଦୁ ଯୁବକଙ୍କୁ ନିବେଦନ, ଗାନ୍ଧୀ ମହାତ୍ମାଙ୍କର ମାହାତ୍ମ୍ୟ ଆଉରି ଫୁଟାଇଛି । ନାରୀସମାଜ ସମ୍ପର୍କରେ ଲିଖିତ ତାଙ୍କ ବହିମାନ ନାରୀମାନେ ପଢ଼ି ତାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ, ଜନସେବାରେ ଆତ୍ମବଳି ଦେଲେ ଜେତକ ଭାରତ ଓ ଓଡ଼ିଶାର ନାରୀମାନେ ନିଜ କର୍ତ୍ତବ୍ୟ କରିପାରିବେ । ପରପାଇଁ ଜୀବନର ସାର୍ଥକତା, ଅହିଂସାରେ, ସଂସ୍କୃତି ଓ ମାନବିକତାର ଗୌରବ, ସତ୍ୟରେ ବ୍ୟକ୍ତିତ୍ୱର ବିକାଶ ଓ ମହିମା—ଏକଥା ଏ ଯୁଗରେ ଆମେ ତାଙ୍କଠାରୁ ଶୁଣିଛୁ କିନ୍ତୁ ଶିଖି ନାହୁଁ । ଶିଖିବାରେ ଓ ଆଚରଣରେ କେବଳ ତାଙ୍କର ପୂଜା ଆମେ କରିପାରୁ, ଆଉ କାହିଁରେ ନୁହେଁ ।

ରାଜନୀତିରେ ସେ ସତ୍ୟ ଓ ଅହିଂସା ରଖିବାକୁ ଚେଷ୍ଟା କରି ଆସିଛନ୍ତି, ତାହା ସେ ପାରିଛନ୍ତି ନିଜର ଜୀବିତ କାଳରେ । କିନ୍ତୁ ତାହା ଆମ ଜୀବନରେ ନିୟାମକ ହୋଇପାରିବ କି ନା, ତାହାର ସାକ୍ଷୀ ହେବେ ଭାବି ଐତିହାସିକଗଣ । ସେହି ମାନଦଣ୍ଡରେ ଆଗାମୀ ଶତାବ୍ଦୀ, ଏ ଦେଶର ନାରୀ ଓ ନରମାନଙ୍କର ଯୋଗ୍ୟତାର ବିଚାର କରିବ । ନାରୀଜାତିକୁ ଭାରତରେ ଗାନ୍ଧୀଙ୍କ ଭଳି ସମ୍ମାନ ଆଉ କେହି କରି ନାହାନ୍ତି । କେବଳ ଆଦର୍ଶ ଓ ମତବାଦରେ ଏହା ପର୍ଯ୍ୟବସିତ ନୁହେଁ । ତାଙ୍କ ପତ୍ନୀଙ୍କ ବିୟୋଗରେ ଭାରତର ନାରୀକଲ୍ୟାଣ ଓ ଉନ୍ନତ ପରିକଳ୍ପନା କରି ସେ ଯେ 'କସ୍ତୁରବା ପାଣ୍ଠି' କରି ଗାଁମାନଙ୍କରେ ନାରୀର ଶିକ୍ଷା, ସ୍ୱାସ୍ଥ୍ୟ ଓ ଚିକିତ୍ସା, ଶିଶୁ ମଙ୍ଗଳ ଓ ନାରୀର ଆର୍ଥିକ ସଂଗତିର ବ୍ୟବସ୍ଥା କରିଯାଇଅଛନ୍ତି, ତାହାର ତୁଳନା ପୃଥିବୀର କୁତ୍ରାପି ନାହିଁ । ହୁଏତ ଆମେମାନେ ଅତି ଅଧମ ଓ ସ୍ୱାର୍ଥସର୍ବସ୍ୱ ଥିବାରୁ ମହାତ୍ମାଙ୍କ ପ୍ରଦର୍ଶିତ ପନ୍ଥାରେ ଆମର କର୍ମନିୟନ୍ତ୍ରଣ ସାଧନା ଓ ବିକାଶ ହେଉ ନାହିଁ । ଆମେମାନେ ନାରୀ-ଉନ୍ନତି ପ୍ରତି ଉଦାସୀନ । ମାତ୍ର ମହାତ୍ମା ବିଶ୍ୱାସ କରୁଥିଲେ, ଭାରତର ନାରୀ ନ ଜାଗିଲେ ଭାରତର ସମୂହ ମଙ୍ଗଳ ଓ ଉନ୍ନତି କଦାପି ସମ୍ଭବ ନୁହେଁ । ଆଧୁନିକ ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତାରେ ବଢୁଥିବା କୁମାରୀମାନଙ୍କ ବିକାଶକୁ ଅପ୍ରାକୃତିକ ଓ ହିଂସାତ୍ମକ ବୋଲି ମନେକରି ମହାତ୍ମାଗାନ୍ଧୀ ନାପସନ୍ଦ କରୁଥିଲେ । ନାରୀ ଦେଶର ମେରୁଦଣ୍ଡ । ନାରୀଶିକ୍ଷା, ସ୍ୱାଧୀନତା ଓ ସମୂହ ଉନ୍ନତି ପାଇଁ କର୍ମ ଓ ତ୍ୟାଗ, ଗାନ୍ଧୀ-ସଭ୍ୟତାର ଗୋଟିଏ ପ୍ରଧାନ ଅଙ୍ଗ ଥିଲା । କିନ୍ତୁ ଆମେ ଆଜି କେଉଁଠି ? କେତେ ଦୂରରେ ?



(ନବଭାରତ ମକର ୧୩୫୫ ସାଲ, ଫେବୃୟାରୀ ୧୯୪୮, ପୃ ୨୨-୨୪)

# ନାରୀର ଆର୍ଥିକ ସ୍ୱାଧୀନତା

ମୋର ସହକର୍ମୀ ପଚାରିଲେ– ''ନାରୀର ପୁଣି ଗୋଟିଏ ଆର୍ଥିକ ସ୍ୱାଧୀନତା କଣ ହେବ ? ହେଲେ ତାହା ସବୁ କ୍ଷେତ୍ରରେ ଯେ ବାଞ୍ଛନୀୟ, ତାହା ତ ମନେହୁଏ ନାହିଁ।''

ମୋର ଜବାବ ଥିଲା – ''ନାରୀର ଆର୍ଥିକ ସ୍ୱାଧୀନତା ତାର ଏଇଥିପାଇଁ ଆବଶ୍ୟକ, ଯେଉଁଥିପାଇଁ ତାର ନାରୀତ୍ୱ ବା ତାହାଠାରୁ ବଳି ବ୍ୟକ୍ତିତ୍ୱ ଏ ସଂସାର କ୍ଷେତ୍ରରେ ଦୁର୍ବାର । ଯେଉଁ ସାମ୍ରାଜ୍ୟ କୌଣସି ସମ୍ରାଟ କର୍ତ୍ତୃକ ଶାସିତ, ସେ ସାମ୍ରାଜ୍ୟର ସମ୍ରାଟହୀନ ନିଃଶଙ୍କ ନିରଙ୍କୁଶ ରାଜତ୍ୱ କଣ ସେହି ସାମ୍ରାଜ୍ୟର ସମସାମୟିକ ଅଧିବାସୀ କଦାପି କଳ୍ପନା କରିପାରନ୍ତି ? ଏ ସେହିପରି ଜିନିଷ । ନାରୀର ଯେ ସ୍ୱାଧୀନତା କଥା ଆମ୍ଭେମାନେ ଉତ୍ସାହିତଭାବରେ ଶୁଣିଥାଉଁ, ତାର ଅର୍ଥ କେବଳ ତାର ନିଜସ୍ୱ ଆର୍ଥିକ ପରିସ୍ଥିତିର ଅପେକ୍ଷା ରଖେ । ଆଉ କେଉଁ କ୍ଷେତ୍ରରେ, କେଉଁ ପରିସ୍ଥିତିରେ ବା ତାର ଆର୍ଥିକ ସଙ୍ଗତିର ଆବଶ୍ୟକତା ନାହିଁ ? ମନୁଷ୍ୟ ତ ଯେତେହେଲେ ସାମାଜିକ ଜୀବ; ସମାଜରେ ସେ ଚଳିଲେ ତାର ଧର୍ମ, ଅର୍ଥ, କାମ, ମୋକ୍ଷ କେଉଁଟାର ଊଣା ହେଲେ ଜୀବନର ପ୍ରଗତି ମୂଳରେ ଅସାମଞ୍ଜସ୍ୟର ଛନ୍ଦପାତ ନ ହେବ, ତାହା ବୁଝିପାରିହେବ ନାହିଁ।''

ନାରୀ ପତ୍ନୀ, ନାରୀ ମାତା, ନାରୀ ଭଗିନୀ । ସେ ପୁରୁଷର ଅର୍ଦ୍ଧାଙ୍ଗିନୀ, ସହଧର୍ମିଣୀ ଓ ସହକର୍ମିଣୀ । ଏ ସମସ୍ତଙ୍କୁ ସ୍ୱୀକାର କରିନେଲେ ତାର ବ୍ୟକ୍ତିତ୍ୱକୁ ସେହିଠାରେ ସ୍ୱୀକାର କରାଗଲା ।

ସେ ସହାୟ-ସମ୍ପଦଶୂନ୍ୟ ବିଧବା ହେଲେ, ଦୁଃସ୍ଥ ହେଲେ, ନିଜର ସନ୍ତାନ ପାଳନରେ ଅକ୍ଷମ ହେଲେ, ସର୍ବଦା ପରନିର୍ଭରଶୀଳା ହେଲେ ଯେ ସମାଜର, ଗୃହର ପରିବାରର ସମୂହ କ୍ଷତି ! ସମାଜରେ ଯେଉଁମାନେ ଯଥାର୍ଥରେ ସ୍ୱାମୀ ସମ୍ପତ୍ତିର ଉତ୍ତରାଧିକାରିଣୀ ହୁଅନ୍ତି, କେଉଁଠି ବା ପୁତ୍ର ସହିତରେ ଆଂଶିକଭାବରେ ସେମାନଙ୍କର ଅଧିକାର ବଜାୟ ରହେ– ଯେଉଁମାନେ ଚକ୍ଷୁଷ୍ମାନ୍, ସେମାନେ କଣ ଦେଖିପାରୁ ନ ଥିବେ ଯେ, ଏହି ଅଧିକାର ସେ କେତେଦୂର ଭୋଗ କରିବାକୁ ସମର୍ଥ ହୋଇଥାଏ ? ହିନ୍ଦୁ-ବିଧବାର ଦୁର୍ଦ୍ଦଶା ତ ମୋ ପରି ଜଣେ ଯଦି ବସି ଗାଇବେ, ତଥାପି ସେ କଳ୍ପିଷକାହାଣୀ ଅସରନ୍ତି ହେବ । କଲିକତାର ଲୁଗାକଳ କେତୋଟି ଦେଖିବାକୁ ଦୁର୍ଭାଗ୍ୟ ମୋତେ ଥରେ ମିଳିଥିଲା । ଦେଖିଛି, ଆମ ଦେଶର କେତେ ଶହ ବାଳକ ସେହିଠାରେ ଠିକା କୁଲିରୂପେ

କାମ କରନ୍ତି । କଳର ତାକୁଡ଼ିରୁ ସୂତା ଛିଡ଼ିଗଲେ ସେହିମାନଙ୍କ ଆଙ୍ଗୁଳିରେ ସେହି ସୂତାଗୁଡ଼ିକୁ ଯୋଡ଼ିବାର ଭାର ରହିଛି । ସେହି ଅପୋଗଣ୍ଡ ବାଳକଗୁଡ଼ିକଙ୍କର ଶାରୀରିକ ପୁଣି ନୈତିକ ଦୁରବସ୍ଥା କଥା ଅକଥନୀୟ । ମୋର ମନେ ହୋଇଥିଲା, ଯଦି ଏମାନଙ୍କର ଦରିଦ୍ର ମାତାମାନଙ୍କର ଦେଶର ଧନ ଉପରେ ଅଧିକାର ଥାଆନ୍ତା କିମ୍ବା ଅନ୍ୟ କୌଣସି ଉପାୟରେ ଧନାଗମର ପନ୍ଥା ସେମାନଙ୍କ ଆଗରେ ଉନ୍ମୁକ୍ତ ରହିଥାଆନ୍ତା, ତେବେ ଏ ବାଳକଗୁଡ଼ିକ ଏ ଦୂର ବିଦେଶକୁ ଆସି କଳ ସହିତରେ ଗୋଟିଏ ଗୋଟିଏ ଜୀବନ୍ତ କଳ ପାଲଟି ଯାଉ ନଥାନ୍ତେ ବୋଧହୁଏ । ଜାତିର ଶତ ଶତ ବାଳକ-ବାଳିକାଙ୍କର ଏହି ପ୍ରକାର ନ ହେଉ, ଭିନ୍ନ ପ୍ରକାର ଦୁର୍ଦ୍ଦଶାର ସୀମା ନାହିଁ । ତାହାର ଦୁର୍ବଳ ପରିସ୍ଥିତି କେବଳ ଏହିପରି ନର-ନାରୀକୁ ଦେଶରେ ସୃଷ୍ଟି କରାଉଅଛି । ସମାଜରେ, ଦେଶରେ ସେମାନଙ୍କ ସ୍ଥାନ ଆଜି କେଉଁଠି, ତାହା ବିଚାରନ୍ତୁ । ଏହି ପ୍ରସଙ୍ଗରେ କେତେକ ଚିନ୍ତାଶୀଳ ବ୍ୟକ୍ତିଙ୍କର ଦୃଷ୍ଟି ଯାଇଁ ରାଜନୈତିକ ଅବସ୍ଥା ଉପରେ ପଡୁଥିବ କିମ୍ବା କେଉଁଠି କେଉଁଠି ଯାଇଁ ପାଶ୍ଚାତ୍ୟର ସଭ୍ୟତାବାଦୀ ଦେଶଗୁଡ଼ିକର ସାମାଜିକ ତଥା ରାଜନୈତିକ ପରିସ୍ଥିତି ଉପରେ ପଡ଼ିଥିବ । ଏହା ଅତ୍ୟନ୍ତ ସହଜ କଥା ଯେ, ଯେଉଁସବୁ ବିଷୟରେ ସମାଜର ପ୍ରତ୍ୟେକ ସାମାଜିକ ବ୍ୟକ୍ତିଙ୍କର ଓ ଦେଶର ପ୍ରତ୍ୟେକ ନାଗରିକଙ୍କର ଦାୟିତ୍ୱର ଗୁରୁଭାର ଅଦୃଶ୍ୟଭାବରେ ରହିଅଛି, ସେହିସବୁ ବିଷୟରେ ଦାୟିତ୍ୱର ଭାଗଟା ଅନ୍ୟ କୌଣସି ତୃତୀୟ ବା ଦ୍ୱିତୀୟ କାରଣ ଉପରେ ପକାଇଦେଲେ ସେମାନେ ଆପାତତଃ ନିଶ୍ଚିନ୍ତ ହୁଅନ୍ତି ।

ମାନିଲୁଁ, ରାଜନୀତିକ କାରଣ ଗୋଟିଏ ପ୍ରଧାନ କାରଣ, କିନ୍ତୁ ଦେଶର ଆଇନ ଆମର ଦେଶବାସୀ ବାପ ଭାଇମାନେ କରିଛନ୍ତି । ସେ ପୁଣି ତ ଅଦଳ ବଦଳ ଚାଲିଛି । ଶାରଦା ଆଇନ୍ ଭଳି ଗୋଟିଏ ଆଇନ ପରା ସମାଜର ଗୋଟିଏ କୁପ୍ରଥା ବିରୋଧରେ ପ୍ରୟୋଗ ହୋଇଥିଲା । ତାର ଫଳ କଣ ହୋଇଛି ? ଆଉ ଦିନ ଦି' ପହରେ ତ ଦେଶବାସୀ ସେଇ ଦନ୍ତରା ଆଇନକୁ ଉପହାସ କରି ସ୍ୱେଚ୍ଛାକୃତ ଆଇନ ଭଳି କରିଚାଲିଛନ୍ତି ? ସେଇ ନାରୀ ସମ୍ବନ୍ଧରେ ତାହାର ଅଧିକାର ମୂଳତଃ ଆଇନଗୁଡ଼ିକ ମଧ ତିଆରି କରାଇବା ଓ ତାହା ଦେଶରେ ସର୍ବଜନୀନ କରିବା କଣ ସେମାନଙ୍କର କ୍ଷମତାର ବହିର୍ଭୂତ ବିଷୟ ହୋଇପାରେ ? ପୁଣି ପାଶ୍ଚାତ୍ୟ ଦେଶର ନାରୀର ଆର୍ଥିକ ପରିସ୍ଥିତି ଆଡ଼କୁ ଯେଉଁମାନେ ଦୃଷ୍ଟିପାତ କରିବେ, ସେମାନେ ମଧ ଦେଖିପାରିବେ— ନାରୀ ସେଠାରେ କିପରିଭାବରେ ସେଠାକାର ଜାତୀୟ ସମ୍ପଦର ପ୍ରତୀକସ୍ୱରୂପ ହୋଇ ପାରିଅଛି । ସେଠାରେ ପୁରୁଷ ସହିତ ପ୍ରତିଦ୍ୱନ୍ଦୀ ହୋଇ ନାରୀ ଗୃହର ମଧୁର ଜୀବନକୁ ଯେପରି ନଷ୍ଟ କରୁଛି ବୋଲି ଅଭିଯୋଗ ଆସୁଅଛି, ଠିକ୍ ସେହି ଧାରାରେ ଭାରତୀୟ ସମାଜର ନାରୀ ଯେ କଦାପି ନିଜକୁ ନିୟନ୍ତ୍ରିତ କରିପାରିବ, ତାହା ଭାରତର ଆବହାଉଆରେ ବଢ଼ିଥିବା ନାରୀ ପକ୍ଷରେ ଅତ୍ୟନ୍ତ ଅସମ୍ଭବ କଥା । ନାରୀର ଆର୍ଥିକ ସ୍ୱାଧିକାରର ପଥ ଅର୍ଗଳମୁକ୍ତ ହେଲେ ସମାଜରେ ସାମାଜିକ

ପଚା-ସଢ଼ା କଦର୍ଯ୍ୟ ପ୍ରଥାର ଲୋପ ପାଇବ । ସେ ତାର ଜାତୀୟ ସଭ୍ୟତାକୁ ଗଢ଼ିବ, ତାର କୋମଳ ହୃଦୟବୃତ୍ତିର ଅବଦାନରେ ଏହି ଭାରତୀୟ ସଭ୍ୟତାର ମହତ୍ତ୍ୱ ଆହୁରି ମହୀୟାନ ଓ ଗରୀୟାନ ହୋଇଉଠିବ । ସେ ବର୍ତ୍ତମାନ ସମାଜରେ ନାଁଆକୁ ରାଣୀ ହୋଇଛି ସତ୍ୟ; କିନ୍ତୁ ଏଇ ରାଣୀ ନାଁ ଫାଙ୍କ ତଳେ ଯେ କାଙ୍ଗାଳୁଣୀ ନାଁଟି ଊହ୍ୟ ରହିଛି, ଏହା ତ ସମସ୍ତେ ଦେଖୁଥିବେ । କହିବାକୁ ଗଲେ ନାରୀ ହେଉଛି ଜାତୀୟ ସୃଷ୍ଟିର ଉତ୍ସସ୍ୱରୂପା, ଜାତି ଗଠନରେ, ପୁରୁଷର ସୃଷ୍ଟିରେ, ସଭ୍ୟତାରେ, ଶିକ୍ଷାରେ, ଦୀକ୍ଷାରେ, ମନନ ଶକ୍ତିରେ, ମେଧାରେ, ହୃଦୟରେ, ରୁଚିରେ ତାର ହସ୍ତ ଅଦୃଶ୍ୟଭାବରେ ପ୍ରସାରିତ ହୋଇ ରହିଛି । ଯଦିଚ ତା ପ୍ରତ୍ୟକ୍ଷରେ ନୁହେଁ, ପରୋକ୍ଷରେ । ଆମ୍ଭମାନଙ୍କର ଜାତୀୟ ଦୁର୍ଦ୍ଦଶାର ଗୋଟିଏ ପ୍ରଧାନ କାରଣ କଣ ଏହା ନୁହେଁ ଯେ, ଆମ୍ଭମାନଙ୍କର ସମାଜ ବା ସମୂହ ଜାତି ନାରୀର ଏହି ଅବଦାନରୁ ବଞ୍ଚିତ ହୋଇ ରହିଛି ?

ଏବେ ନୁହେଁ, ଚିରକାଳରୁ ନାରୀଜାତି ଏହି ନିର୍ଯାତନା ଭୋଗକରି ଆସୁଅଛି । ଆମ ହିନ୍ଦୁଶାସ୍ତ୍ର ପୁରାଣମାନଙ୍କରେ ଅନେକ କଥା ଲେଖାଅଛି ସତ୍ୟ; କିନ୍ତୁ ତାହା ଅନୁସାରେ କିଛି ଚଳୁଛି ? ବର୍ତ୍ତମାନର ସଂସାରର ଗତି ଯେପରି ହେଲାଣି, ସେଥିରେ ସେହି ନୀତିଗୁଡ଼ିକର ପରିବର୍ତ୍ତନ ଯେ ନିତାନ୍ତ ଆବଶ୍ୟକ – ଏଥିରେ ସନ୍ଦେହ ନାହିଁ ।

''ଅସାର ସଂସାର ବିବର୍ତ୍ତନେଷୁ
ମା ଜାତି ତୋଷଂ ପ୍ରସଭବ୍ରବାମି ।''

ହିନ୍ଦୁଜାତିର ଏ ବୈରାଗ୍ୟ ଭାବ ସମାଜତନ୍ତ୍ରରେ ଆଦର୍ଶରୂପେ ଗ୍ରହଣ କରାଗଲେ ମଧ୍ୟ ତାକୁ ଲାଭ କରିବା ପାଇଁ କି ପ୍ରଗାଢ଼ ଯତ୍ନ କରିବାକୁ ହେବ, ତାହା ବିଶେଷଭାବରେ ବୁଝାଇବା ଅନାବଶ୍ୟକ । ହିନ୍ଦୁର ଏ ବୈରାଗ୍ୟ ଭାବ ସନାତନ ଯୁଗରୁ ସମାଜରେ ସଜୀବଭାବରେ ବିଦ୍ୟମାନ ଥିଲା; ବର୍ତ୍ତମାନ ମଧ୍ୟ କେତେକ ପରିମାଣରେ ଅଛି । କିନ୍ତୁ ବିଂଶ ଶତାବ୍ଦୀର ଏହି ବସ୍ତୁତାନ୍ତ୍ରିକ ଯୁଗରେ ଏହି ଆଦର୍ଶ କେତେଦୂର କାର୍ଯ୍ୟକାରୀ ହେବ, ତା କହିହେଉ ନାହିଁ । ପ୍ରତିଯୋଗିତା ନ ଥାଇ କେବଳ ବୈରାଗ୍ୟ ଉପରେ ସଂସାର ଚଳିବ ବୋଲି ବିଶ୍ୱାସ ହେଉନାହିଁ । ବୈରାଗ୍ୟ କହ, ପ୍ରତିଯୋଗିତା କହ କିମ୍ବା ସହଯୋଗିତା କହ, ଏଗୁଡ଼ିକ ସମସ୍ତରର ବ୍ୟକ୍ତିମାନଙ୍କ ମଧ୍ୟରେ କେବଳ ସମ୍ଭବପର । ଯେଉଁଠାରେ ଅସାମ୍ୟ ରହିଅଛି, ସେହିଠାରେ ଏଗୁଡ଼ିକ ସନ୍ତୋଷଜନକ ଭାବରେ କାର୍ଯ୍ୟକାରୀ ହୋଇପାରୁ ନାହିଁ । ଆମର ହିନ୍ଦୁସମାଜ 'ବସୁଧୈବ କୁଟୁମ୍ବକମ୍' 'All for one and one for all' ଏହି ଆଦର୍ଶକୁ ପ୍ରତିପାଦନ କରିଛି ସତ୍ୟ; କିନ୍ତୁ ଏହାରି ଭିତରେ ଅଧିକାର ଭେଦକୁ ମଧ୍ୟ ମାନିନେଇଛି । ଏହି ଅଧିକାର ଭେଦ ହେତୁ ଆମ ସମାଜରେ ଅସାମ୍ୟତା ବେଶୀ ପରିମାଣରେ ରହିଛି । 'All man are born equal' ସମସ୍ତେ ତ ଜନ୍ମତଃ ସମାନ –

ରୁଷୋଙ୍କର ଏହି ନୀତିଟି 'ବସୁଧୈବ କୁଟୁମ୍ବକମ୍' ଏହି ଭାବର ଖୁବ୍ ନିକଟବର୍ତ୍ତୀ ହେଲେ ମଧ୍ୟ ହିନ୍ଦୁ ଜାତି 'All men are born equal'କୁ ମାନୁନାହିଁ; କିନ୍ତୁ ଆମ୍ଭେମାନେ 'All are born all are made equal' ଏହି କଥାରେ ବିଶ୍ୱାସ କରିବା ପାଇଁ ଆମ୍ଭମାନଙ୍କ ନୀତିକାର ମଧ୍ୟ କହିଅଛନ୍ତି । ଶେଷ ବୟସରେ ଯେତେବେଳେ ସର୍ବଶ୍ରେଣୀର ଲୋକେ– କି ବ୍ରାହ୍ମଣ, କି ବୈଶ୍ୟ, କି କ୍ଷତ୍ରୀୟ, କି ଶୁଦ୍ର ବାନପ୍ରସ୍ଥାଶ୍ରମ ଅବଲମ୍ବନ କରନ୍ତି, ସେତେବେଳେ ଆମ୍ଭେମାନେ 'All are made equal' ଏହି ଯେ ଐକ୍ୟତା ଦେଖିବାକୁ ପାଉଁ; କିନ୍ତୁ ଯାର ମୂଲ୍ୟ କେତେ, ତାହା ବର୍ତ୍ତମାନ ଆଲୋଚନା କରିବା ନିଷ୍ପ୍ରୟୋଜନ ।

ଯେତେଦିନ ପର୍ଯ୍ୟନ୍ତ ସମାଜର ଅଧିକାର ଭେଦ, ତା ପୁଣି ବଳାତ୍କାରଭାବରେ ବିଦ୍ୟମାନ ଥିବ, ସେତେଦିନ ପର୍ଯ୍ୟନ୍ତ କି ସମାଜ, କି ବ୍ୟକ୍ତି କାହାର ବିଶେଷ ଉନ୍ନତି ସମ୍ଭବପର ହୋଇ ପାରିବ ନାହିଁ ।

ଏହି ଯେ ଅଧିକାର ଭେଦ, ଏହା ଜଗତର ଯାବତୀୟ ଗଣ୍ଡଗୋଳର ମୂଳ କାରଣ ବୋଲି ଅନେକ ମନୀଷୀଙ୍କର ମତ ।

ସମାଜର ଶ୍ରେଣୀ ଭିତରେ ପରସ୍ପର ମଧ୍ୟରେ ଯେପରି, ସାଧାରଣ ଭାବରେ ସ୍ତ୍ରୀ ଓ ପୁରୁଷ ଜାତି ମଧ୍ୟରେ ମଧ୍ୟ ଏହି ବଳାତ୍କାର ଅଧିକାର-ଭେଦ ବହୁତ ଅନିଷ୍ଟ ଘଟାଇଅଛି । ସନାତନ କାଳରୁ ପୁରୁଷ ସୁବିଧା ପାଇଛି ବୋଲି ସମାଜରେ ଉଚ୍ଚସ୍ଥାନ ଅଧିକାର କରି ରହିଅଛି । ନାରୀ ସେ ସୁବିଧା ପାଇ ନାହିଁ ବୋଲି ତାହା କରିପାରି ନାହିଁ । ଆଜି ସେଥିପାଇଁ ସେ କ୍ଷୁବ୍ଧ ଏବଂ ତାର ନ୍ୟାର୍ଯ୍ୟ ସ୍ଥାନ ପାଇବା ପାଇଁ ସେ ବଦ୍ଧପରିକର ।

ସଂସାରର ସବୁ କ୍ଷେତ୍ରରେ ଅର୍ଥ ହେଉଛି ମେରୁଦଣ୍ଡ ସ୍ୱରୂପ । ଅର୍ଥର ଏହି ପ୍ରାଧାନ୍ୟ ଦୃଷ୍ଟିରେ ଯାରି ଉପରେ ଯେପରି ପୂର୍ଣ୍ଣ ଅଧିକାର ରହେ, ସେଥିପାଇଁ ସମସ୍ତେ ବ୍ୟାକୁଳ । ବିଭିନ୍ନ ଜାତି ଯେପରି ଆର୍ଥିକ-ସ୍ୱରାଜ୍ୟ ପାଇବା ପାଇଁ ପ୍ରାଣପଣେ ଯତ୍ନ କରୁଛନ୍ତି; ନାରୀ-ସମାଜ ମଧ୍ୟ ତାର ଆର୍ଥିକ ସ୍ୱରାଜ୍ୟ ପାଇବା ପାଇଁ ଯତ୍ନ କରୁଅଛି । କି ପ୍ରାଚ୍ୟ, କି ପାଶ୍ଚାତ୍ୟ, ପ୍ରତ୍ୟେକ ଦେଶରେ ଏହି ଆର୍ଥିକ ସ୍ୱାଧୀନତାର ଆନ୍ଦୋଳନ ଦେଖାଦେଇଛି । ପାଶ୍ଚାତ୍ୟ ଦେଶରେ ଅନେକ ସ୍ଥାନରେ ନାରୀଜାତି ଅନେକ ପରିମାଣରେ ଯଶସ୍ୱୀ ହୋଇ ସାରିଲେଣି; କିନ୍ତୁ ଆମର ଭାରତବର୍ଷ ଏହି ଆନ୍ଦୋଳନ ଶିଶୁ ଅବସ୍ଥାରେ ରହିଅଛି କହିଲେ ଅତ୍ୟୁକ୍ତି ହେବନାହିଁ ।

ନାରୀଜାତି ଯେତେ ପ୍ରକାର ଦୁର୍ଦ୍ଦଶା ଭୋଗ କରୁଛି, ତାର ମୂଳ କାରଣ ହେଉଛି– ତାର ଆର୍ଥିକ-ପରାଧୀନତା । ଏବେ ନୁହେଁ, କେଉଁ ସନାତନ ଯୁଗରୁ ହିନ୍ଦୁସମାଜ ସ୍ତ୍ରୀର ଆର୍ଥିକ ସ୍ୱାଧୀନତା କଥା ପସନ୍ଦ କରିନାହିଁ । ଜନ୍ମଠାରୁ ମରଣ ପର୍ଯ୍ୟନ୍ତ ସେ ପରାନ୍ନପାଳିତା ହୋଇ ରହିବ । ''ପିତା ରକ୍ଷତୁ କୌମାରେ, ଭର୍ତ୍ତା ରକ୍ଷତୁ ଯୌବନେ, ପୁତ୍ର ରକ୍ଷତୁ ବାର୍ଦ୍ଧକ୍ୟେ ନ ସ୍ତ୍ରୀ

ସ୍ୱାତନ୍ତ୍ର୍ୟ ମର୍ଦ୍ଦିତା ।'' ଏଥିରେ ସ୍ପଷ୍ଟଭାବରେ ଜଣାପଡୁଛି, ପ୍ରାଚୀନ କାଳରେ ଆମ୍ଭମାନଙ୍କ ଧର୍ମାଚାର୍ଯ୍ୟମାନଙ୍କର ନାରୀଜାତିର ଆର୍ଥିକ ସ୍ୱାଧୀନତା ସମ୍ବନ୍ଧରେ କି ମତ ଥିଲା ।

ପ୍ରଜାତନ୍ତ୍ର କହ, ସାମ୍ୟ, ମୈତ୍ରୀ, ସ୍ୱାଧୀନତା କହ, ସବୁ ସୁବିଧା ଭୋଗ କରୁଛି ପୁରୁଷ ଜାତି । ମନୁଷ୍ୟଜନ୍ମ ପାଇ ସୁଦ୍ଧା ଯାହା ମାନବୋଚିତ ଅଧିକାର, ତାହା ସୁଦ୍ଧା ସ୍ତ୍ରୀ ଭୋଗ କରିପାରୁ ନାହିଁ । "Light of the world and salt of the earth" ଏହିତକ ଭୋଗ କରିବା ମଧ୍ୟ ତାର ଭାଗ୍ୟରେ ନାହିଁ । ପେଟ ପୂରିବା ପାଇଁ ମୁଠାଏ ଭାତରେ, ମୁଣ୍ଡ ଗୁଞ୍ଜିବା ପାଇଁ ଟିକିଏ ସ୍ଥାନରେ, ନଗ୍ନତା ଦୂରକରିବା ପାଇଁ ଖଣ୍ଡିଏ ଲୁଗାରେ ତାର ଅଧିକାର ନାହିଁ । ସେ ପୁରୁଷର କ୍ରୀତଦାସୀ– ଏହି ଶବ୍ଦ ଠାରୁ ଆହୁରି ଯଦି କିଛି ମୌଳିକ ଶବ୍ଦ ଥାଏ ଓ ତାହା ଏହାର ଭାବ ପ୍ରକାଶ କରୁଥାଏ; ତେବେ ନାରୀର ଉପାଧି ତାହା ହିଁ । ପୁରୁଷର ସ୍ୱାଭାବିକ ନ୍ୟାୟପରତା ଜ୍ଞାନ ଓ ବିଚାରବୁଦ୍ଧି ସ୍ତ୍ରୀକୁ ବା ଏତେ ଅଧିକାର ଦେବ କାହିଁକି !

ପତିର ସମ୍ପତ୍ତିରେ, ପିତାର ସମ୍ପତ୍ତିରେ, ପୁତ୍ରର ସମ୍ପତ୍ତିରେ ନାରୀର ଅଧିକାର ନାହିଁ । ସେ କୁଟୁମ୍ବ ଭିତରେ ଅନୁଗ୍ରହର ପାତ୍ରୀ । ଗୃହ-ପରିଚାଳନାରେ ତାର ସର୍ବମୟ ଆଧିପତ୍ୟ ଓ କର୍ତ୍ତୃତ୍ୱ ନାହିଁ । ଶିକ୍ଷା କହ, ଦୀକ୍ଷା କହ, ସ୍ୱାସ୍ଥ୍ୟ କହ ସବୁ ବିଷୟ ଆର୍ଥିକ ପରାଧୀନତା ଦୃଷ୍ଟିରେ ନାରୀଜାତିକୁ ନିଆ ଯାଉଅଛି । ଅର୍ଥାତ୍ ତାହାର ଭାଗ ପୁରୁଷ ଅନୁପାତରେ ଉଣା ପଡୁଛି, ଯେପରି କି ପୁରୁଷ ଶ୍ରମିକ ଅପେକ୍ଷା ନାରୀ-ଶ୍ରମିକ ସେହି ଏକା ପରିଶ୍ରମରେ ସ୍ୱଳ୍ପ ପାରିଶ୍ରମିକ ପାଇଥାଏ । ଘରେ ନିଜର ସହୋଦର ସହିତ ଶିକ୍ଷାରେ ଓ ଉତ୍ତରାଧିକାରୀତ୍ୱରେ ସେ ସମାନ ନୁହେଁ । ସବୁ ବିଷୟରେ ପୁରୁଷ ଅପେକ୍ଷା ତାର ନିମ୍ନ ସ୍ଥାନ ବୋଲି ଧରାଯାଇଥାଏ । ବିବାହ ତ ତା ଜୀବନ ପକ୍ଷରେ ଗୋଟିଏ matter of fact ଅବଶ୍ୟମ୍ଭାବୀ ପରିଣତି । ସେ ବିବାହ କରିବ ପୁରୁଷର ସବୁ ପ୍ରକାର ସୁଖ ପାଇଁ, ପୁରୁଷର ଅଧୀନତା ସ୍ୱୀକାର ପାଇଁ । ମାନ ସମ୍ମାନ ସହିତ ପରିଶ୍ରମ କରି ସ୍ୱାଧୀନଭାବରେ ଜୀବିକା ଅର୍ଜନ କରିବ, ଏହା ହିନ୍ଦୁଜାତି ସହିବାକୁ ନାରାଜ । ହିନ୍ଦୁସମାଜରେ ନାରୀ ଓ ପୁରୁଷ ମଧ୍ୟରେ ଏହି ଅସମାନତା ହେତୁ ନାରୀ-ଜାତି ଯେଉଁ ନିର୍ଯାତନା ଓ ଲାଞ୍ଛନା ଭୋଗ କରି ଆସୁଅଛି, ତାହା ମସୀ-ଲିପିକାରେ ସୀମାବଦ୍ଧ କରିବାକୁ ଯିବା– ବେଳାଭୂମିରେ ବାଲି ମୁଠି ମୁଠି ପକାଇ ସମୁଦ୍ର ମଧ୍ୟରେ ବନ୍ଧ ପକାଇବା ପରି ଅତ୍ୟନ୍ତ ଅସମ୍ଭବ କଥା ।

ହିନ୍ଦୁନାରୀର ଆର୍ଥିକ-ପରାଧୀନତାକୁ ଲକ୍ଷ୍ୟ କରି ବିଶ୍ୱବରେଣ୍ୟ କବି ରବୀନ୍ଦ୍ରନାଥ କହିଛନ୍ତି– ''ପୂର୍ବ କାଳରେ ଏକାଧିପତ୍ୟ ଲାଳସା ବେଶ୍ ପରିମାଣରେ ଥିଲା । ସେହି ସମୟରେ ସ୍ତ୍ରୀ ଓ ପୁରୁଷ ସମ୍ପର୍କୀୟ ଅନେକ ପ୍ରକାର ବିଧିବିଧାନ ତିଆରି ହୋଇଛି । ନାରୀର ଆର୍ଥିକ ପରାଧୀନତା ହେତୁ ଏହିସବୁ ବିଧିବିଧାନରେ ବହୁତ ନୀଚତା ରହିଅଛି । ଆମର ଆର୍ଥିକ ପ୍ରଭୁତ୍ୱ ଆମକୁ ଯେପରିଭାବରେ ନୀଚ କରିଦେଇଛି, ସେପରି ଅନ୍ୟ କିଛି କରିଛି

ବୋଲି ମନେହେଉନାହିଁ । ପ୍ରତ୍ୟେକ ଚିନ୍ତାଶୀଳ ସମାଜ-ହିତୈଷୀ ବ୍ୟକ୍ତି ନାରୀଜାତିର ଏହି ଗୁରୁତର ସମସ୍ୟାର ସନ୍ତୋଷଜନକ ସମାଧାନର ଆବଶ୍ୟକତା ବୁଝିପାରୁଅଛନ୍ତି । ସ୍ତ୍ରୀ ଜାତି ମଧ୍ୟ ଏଥି ପ୍ରତି ଉଦାସୀନ ନୁହେଁ ।"

ପାଶ୍ଚାତ୍ୟ ଦେଶମାନଙ୍କର ମହିଳାମାନେ ନିଜର ଆର୍ଥିକ ସ୍ୱାଧୀନତା ପାଇଁ ଭୀଷଣ ଆନ୍ଦୋଳନ କରୁଛନ୍ତି । ଜର୍ମାନୀ, ଫ୍ରାନ୍ସ, ଆମେରିକା, ଇଂଲଣ୍ଡ ପ୍ରଭୃତି ଦେଶମାନଙ୍କର ସ୍ତ୍ରୀମାନେ ଆଶାତୀତଭାବରେ ଏ ଦିଗରେ ଅଗ୍ରସର ହୋଇ ସାରିଲେଣି ।

ପ୍ରାୟ ୩୦/୪୦ ବର୍ଷ ପୂର୍ବେ ଜର୍ମାନୀରେ ମହିଳାମାନେ ବିଶ୍ୱବିଦ୍ୟାଳୟରେ ପ୍ରବେଶ କରିବାକୁ ସାହସୀ ହେଉ ନଥିଲେ । ମହିଳା ଛାତ୍ରୀମାନଙ୍କୁ ବିଶ୍ୱବିଦ୍ୟାଳୟ ଅତିଥିରୂପରେ ଗ୍ରହଣ କରୁଥିଲା । କେବଳ ଡାକ୍ତରୀ ଓ ଶିକ୍ଷୟିତ୍ରୀ ବିଦ୍ୟା ଶିଖିବା ଛଡ଼ା ଶିକ୍ଷାର ଅନ୍ୟ କୌଣସି ଦିଗରେ ସେମାନଙ୍କର ମନ ନ ଥିଲା । କିନ୍ତୁ ବର୍ତ୍ତମାନ ସେ ସମୟ ଆଉ ନାହିଁ । ପ୍ରତ୍ୟେକ ବିଭାଗରେ ନାରୀମାନଙ୍କର ଆଧିପତ୍ୟ ବଢ଼ିଯାଇଛି । ଅନେକ ମହିଳା ଅଧ୍ୟାପିକା ହୋଇପାରିଛନ୍ତି । ବୈଜ୍ଞାନିକ ଗବେଷଣା, କି ଇତିହାସ ଚର୍ଚ୍ଚା, କି ଅର୍ଥନୀତି ଚର୍ଚ୍ଚା, କି ଆଇନ ବ୍ୟବସାୟ, ସବୁ ଦିଗରେ ନାରୀମାନେ କୃତିତ୍ୱ ଲାଭ କରିଛନ୍ତି । ଅନେକ ସ୍ତ୍ରୀ ପୁଲିସ ବିଭାଗରେ ମଧ୍ୟ କର୍ମଚାରୀ ନିଯୁକ୍ତ ଅଛନ୍ତି । ୧୯୧୩ ସାଲରେ ସ୍ତ୍ରୀ ଡାକ୍ତରମାନଙ୍କ ସଂଖ୍ୟା ଥିଲା ୧୯୫; କିନ୍ତୁ ୧୯୨୭ ସାଲରେ ୧୬୨୭ ହୋଇଯାଇଛି । ୧୯୧୪ ସାଲରେ ବିଶ୍ୱବିଦ୍ୟାଳୟରେ ଛାତ୍ରୀମାନଙ୍କର ସଂଖ୍ୟା ଥିଲା ୪୧୦୦, ୧୯୨୬ରେ ୭୨୫୯ ହୋଇଯାଇଛି । ଏହି ୭୨୫୯ ଛାତ୍ରୀମାନଙ୍କ ମଧ୍ୟରୁ ୩୦୫୦ ଜଣ ଦର୍ଶନ, ୧୨୦୦ ଜଣ ବିଜ୍ଞାନ, ୧୧୫୦ ଜଣ ଆଇନ ଓ ରାଷ୍ଟ୍ରୀୟ ଅର୍ଥନୀତି, ୧୨୦୦ ଜଣ ଡାକ୍ତରୀ, ୨୫୦ ଜଣ ଦାନ୍ତ ବିଜ୍ଞାନ, ୨୭୦ ଜଣ ଫର୍ମାସୀ (କମ୍ପାଉଣ୍ଡରୀ) ଓ ୭୦ ଜଣ ଧର୍ମତତ୍ତ୍ୱ ପଢୁଥିଲେ । ୧୯୧୭ ସାଲରେ ଟେକ୍ନିକାଲ କଲେଜରେ ଛାତ୍ରୀ ଥିଲେ ୬୨; କିନ୍ତୁ ୧୯୨୩ରେ ଏହି ସଂଖ୍ୟା ହେଲା ୪୭୧ ।

୧୯୨୦ ସାଲରେ ଜର୍ମାନୀର ମୋଟ ଜନସଂଖ୍ୟା ଛଅକୋଟି ମଧ୍ୟରୁ ୯୫ ଲକ୍ଷ ସ୍ତ୍ରୀ ଲୋକ ବ୍ୟବସାୟ ବାଣିଜ୍ୟ, ଚାକିରି ପ୍ରଭୃତିରେ କାର୍ଯ୍ୟ କରୁଥିଲେ । ଯୁକ୍ତରାଜ୍ୟର ମୋଟ ଜନସଂଖ୍ୟା ୧୧ କୋଟିରୁ ୮୫ ଲକ୍ଷ ସ୍ତ୍ରୀ ଲୋକ ବ୍ୟବସାୟ ବାଣିଜ୍ୟ ଓ ଚାକିରି କରି କାଳାତିପାତ କରୁଥିଲେ ।

ଇଂଲଣ୍ଡର ମୋଟ ଜନସଂଖ୍ୟା ୪ କୋଟି ମଧ୍ୟରୁ ୬୫ ଲକ୍ଷ ସ୍ତ୍ରୀଲୋକ ଏହିପରି କାର୍ଯ୍ୟରେ ନିଯୁକ୍ତ ଥିଲେ ।

ଆର୍ଥିକ ପରାଧୀନତା ଯୋଗୁଁ ନାରୀଜାତି ଯେଉଁ ଦୁର୍ଦ୍ଦଶା ଭୋଗ କରୁଅଛି, ତାହା କଣ ବୋଲି ବର୍ଣ୍ଣନା କରିବି ? ଅଧିକାର ମଦରେ ମତ୍ତ ଧନୀ ପରାକ୍ରମଶାଳୀ ପୁରୁଷର

ପାଶବିକତା ଚରିତାର୍ଥ କରିବା ପାଇଁ ନିରୀହ ଅବଳାର ସର୍ବନାଶ ଘଟୁଛି । ତାହା କେତେମତେ ହେଉଛି, ତାର ହିସାବ ଦେବାକୁ ଆମ୍ଭମାନଙ୍କର ପୁଞ୍ଜି ନାହିଁ ।

ବିବାହ– ଯାହାକୁ ଆମେ ସମାଜର ଗୋଟିଏ ଉତ୍କୃଷ୍ଟ ଅନୁଷ୍ଠାନ ବୋଲି ଧରି ନେଉଅଛୁଁ, ସେଥିରେ ନାରୀଜାତିର ମୁହଁ ଖୋଲିବାର ଅଧିକାର ନାହିଁ । ବାପ ମାଆ ‘‘ଦେଲା ନାରୀ, ହେଲା ପାରି’’ ହେବାପାଇଁ ଯେଡ଼େ ଅଜ୍ଞାତ କୁଳଶୀଳ ପାତ୍ରରେ ପକାଇ ଦିଅନ୍ତୁ ପଛକେ, ସେଥିରେ ପ୍ରତିବାଦ କରିବାକୁ ତାର ଅଧିକାର ଓ ଶକ୍ତି ନାହିଁ । ଆଜି ଯଦି ପୁରୁଷ ପରି ତାର ସମାନ ଅଧିକାର ଥାଆନ୍ତା, ତେବେ ସେ ତାର ମନୋନୀତ ପୁରୁଷ ସହିତ ବିବାହ କରି ତାର ସୁଖର ନୀଡ଼ ରଚନା କରି ପାରିବାକୁ ସମର୍ଥା ହୋଇଥାଆନ୍ତା । ତାର ମନ ପାଉ କି ନ ପାଉ, ସ୍ୱାମୀ ନିର୍ବୋଧ ହୁଣ୍ଡା ହେଉ ବା ଗୁଣ୍ଡା ହେଉ, ତାକୁ ଆଜୀବନ କପାଳ ଆଦରି ରହିବାକୁ ହେବ । ଇଚ୍ଛା କଲେ ସ୍ୱାମୀ ତାକୁ ତ୍ୟାଗ କରିପାରେ; କିନ୍ତୁ ସେତ ଅପାରଗ ସେ ତାହାର ସ୍ୱାମୀକୁ ତ୍ୟାଗ କରି ନ ପାରେ । ଏହି ଆଇନ ବିଧିବଦ୍ଧ ବ୍ୟଭିଚାରର ଏକ ପ୍ରତ୍ୟକ୍ଷ ନିଦର୍ଶନସ୍ୱରୂପ । ଯେତେଦିନ ପର୍ଯ୍ୟନ୍ତ ପରସ୍ପରର ପ୍ରକୃତ ପ୍ରୀତି ବିବାହ ମୂଳରେ ନାହିଁ, ସେତେଦିନ ପର୍ଯ୍ୟନ୍ତ ସମାଜର ମଙ୍ଗଳ ହୋଇ ପାରେ ନା । ଏହି ସମସ୍ୟାର ସମାଧାନ ହୋଇ ପାରିବ, କେବଳ ନାରୀଜାତିର ଆର୍ଥିକ ସ୍ୱାଧୀନତାରେ ।

ଆର୍ଥିକ ସ୍ୱାଧୀନତା ସମ୍ପର୍କୀୟ ଅନେକଗୁଡ଼ିଏ ଦାବି ସ୍ଥଳବିଶେଷରେ ବିଭିନ୍ନ ଲୋକଙ୍କ ଦ୍ୱାରା ଉପସ୍ଥାପିତ କରାଯାଇଛି । ଭାରତବର୍ଷରେ କେତେକ ମହିଳାନୁଷ୍ଠାନ ଏ ଦିଗରେ ଅଗ୍ରସର ହୋଇଛନ୍ତି । ନିଖିଳ ଭାରତ ମହିଳା ସମ୍ମିଳନୀ ଓ ନିଖିଳ ଭାରତ ନାରୀ-ସ୍ୱାଧୀନତା ସଂଘ ଏ ଦିଗରେ ବିଶେଷ ଯତ୍ନବାନ ଅଛନ୍ତି । ୧୯୩୧ ମସିହାରେ ତାମିଲ ପ୍ରଦେଶର ମହିଳା-ସମ୍ମିଳନୀରେ ସଭାପତି ଅଭିଭାଷଣରେ ମୁଁ ଯେଉଁ ଦାବିଗୁଡ଼ିକ ଉପସ୍ଥାପନ କରିଥିଲି, ସଂକ୍ଷେପରେ ସେଗୁଡ଼ିକ ନିମ୍ନରେ ବିବୃତ କରୁଅଛି :

୧. କେବଳ ହିନ୍ଦୁ-ପରିବାରରେ କାହିଁକି, ଅନ୍ୟାନ୍ୟ ଜାତିରେ ମଧ୍ୟ ପରିବାରର ସାଧାରଣ ସମ୍ପତ୍ତି ଉପରେ ନାରୀମାନଙ୍କର କୌଣସି ମୌଳିକ ଅଧିକାର ନାହିଁ । ବର୍ତ୍ତମାନ ଯେଉଁ ଟିକକ ଅଛି, ତାହା କିଛି ନୁହେଁ କହିଲେ ଚଳେ । ସମ୍ପତ୍ତିର ଅଧିକାର ନ ଥିବା ହେତୁ ନାରୀଜୀବନ କି ଯନ୍ତ୍ରଣାମୟ, ତାହା ଅଧିକ ଲେଖିବା ବାହୁଲ୍ୟ ମାତ୍ର । ସମାଜର ସମୂହ ଉନ୍ନତି ନିମନ୍ତେ ସମ୍ପତ୍ତି ଉପରେ ସ୍ତ୍ରୀ ଓ ପୁରୁଷ ଉଭୟଙ୍କର ତୁଲ୍ୟ ଅଧିକାର ରହିବା ଉଚିତ । ଆହୁରି ମଧ୍ୟ ଦେଖାଯାଉଛି, ସାଧାରଣ କାର୍ଯ୍ୟକ୍ଷେତ୍ରରେ ନାରୀ ଅପେକ୍ଷା ପୁରୁଷ ବେଶି ସୁବିଧା ପାଉଛି; କେବଳ ନାରୀ ନାରୀ ବୋଲି ସୁବିଧା ପାଉ ନାହିଁ । ନାରୀର ଯେତେ ଯୋଗ୍ୟତା ଥାଉ ପଛକେ ପୁରୁଷ ସହିତ ସେ ସମାନ ଦୃଷ୍ଟି ଆକର୍ଷଣ କରିପାରୁ ନାହିଁ । ଏହାଦ୍ୱାରା ତାର ଉନ୍ନତିରେ ବ୍ୟାଘାତ ଘଟିବା ସହଜରେ ଅନୁମେୟ । ଯଦି ଉପଯୁକ୍ତ

ଯୋଗ୍ୟତା ଥାଏ, ତେବେ ନାରୀ କିମ୍ବା ପୁରୁଷ ଏହି ଭେଦଭାବ କର୍ମକ୍ଷେତ୍ରରେ ବିଚାର କରିବା ଅନୁଚିତ । ତାକୁ ପୂରା ସୁବିଧା ଦେବା ସମାଜର କର୍ତ୍ତବ୍ୟ ଏବଂ ଏ ଦିଗରେ ସମାଜ ନାରୀକୁ ବଞ୍ଚିତ କରିବା ଅର୍ଥ ନିଜେ ବଞ୍ଚିତ ହୋଇ ରହିବା ।

୨. ସମାଜ ଦେଖୁଛି, ପୁରୁଷ-କୃଷକ ସହିତ ନାରୀ-କୃଷକ ସମାନଭାବରେ ଯେତିକି ଖରାବର୍ଷା-ଶୀତ ସହି କାମ କରୁଅଛି ।

ଏପରି ଅବସ୍ଥାରେ ମୂଲ ପାଇବା ବେଳକୁ ତାଙ୍କର କେତେ ଅଂଶ ପଡ଼େ, ତାହା ସମାଜ ଜାଣେ । ଯେଉଁଠି କୋଠା କାମ ହୁଏ, ଚୁନକୁଟା ଗୋଡ଼ିଚଲା, ଲଟା ଓ ମାଟି ବୁହା ଆଦି କାର୍ଯ୍ୟରେ ନାରୀ ତାର ଶ୍ରମ ଦିଏ; କିନ୍ତୁ ପୁରୁଷ ମଜୁରିଆ ସହିତ ତାର ମଜୁରୀ ଅଂଶ ପ୍ରଣିଧାନର ବିଷୟ ଅଟେ ।

ସେହିପରି କଳଘରମାନଙ୍କ କଥା ମଧ୍ୟ ଦେଶବାସୀ ଜାଣନ୍ତି । ସେଠି ତ ନାରୀ ନାରୀତ୍ୱ ନେଇ ଯା ଆସ କରନ୍ତି ନାହିଁ, ସଫା କଳ ହୋଇଯାଆନ୍ତି ! ଯେ କଦର୍ଯ୍ୟଭାବରେ ସେମାନେ ଖଣିମାନଙ୍କରେ ଓ କଳଘରେ କାମ କରନ୍ତି, ରକ୍ତ ପାଣି କରନ୍ତି, ଦୁଗ୍ଧପୋଷ୍ୟ ସନ୍ତାନଙ୍କୁ ନ ଖୋଇ, ପାଳିବାକୁ ସମୟ ନ ପାଇ, ବିକଳାଙ୍ଗ କରିଦିଅନ୍ତି ଓ କ୍ଷେତ୍ରବିଶେଷରେ ଅବହେଳା ପାଇ ଶିଶୁର ମୃତ୍ୟୁ ହୁଏ, କିପରିଭାବରେ ନିଜେ ରୋଗ ତାପକୁ ଓ ନିଜର ସମ୍ଭ୍ରମକୁ ଆଖି ବୁଜି ଖଟନ୍ତି, ସେହି ଖଟିବା ସମୟ ସହିତ ପୁରୁଷ ଅନୁପାତରେ ତାଙ୍କ ମଜୁରୀର ତାରତମ୍ୟ କଥା ଭାବିଲେ ତ ହୃଦୟବାନ୍ ବ୍ୟକ୍ତିଙ୍କର ରକ୍ତ ଫୁଟିବାର କଥା ! ଚାକିରି ଇତ୍ୟାଦି କ୍ଷେତ୍ରରେ ମଧ୍ୟ ସେହି କଥା । ଠିକ୍ ସେହି ଏକା ଯୋଗ୍ୟତା ଥିବା ନାରୀ-କର୍ମଚାରୀଙ୍କର ଦରମା ପୁରୁଷକର୍ମଚାରୀଠାରୁ ଢେର ନ୍ୟୂନ ।

୩. ନାରୀକୁ ତାର ବ୍ୟକ୍ତିତ୍ୱକୁ ଏବଂ ଆର୍ଥିକ ସ୍ୱାଧୀନତା ଆଣିବାକୁ ହେଲେ ତାର ସ୍ୱାଭାବିକ ଦ୍ୱୈତ ପ୍ରକୃତି ମୂଳରେ ତାକୁ କୁଠାର-ଆଘାତ କରିବାକୁ ହେବ । ସେ ଯଦି ଗୁଡ଼ିଏ ଅନାବଶ୍ୟକ ଓ ଅଧିକ ସଂଖ୍ୟକ ଶିଶୁର ମାତା ହୁଏ, ତେବେ ତାର ଜୀବନରେ ସେ କଦାପି ଶାନ୍ତି ଓ ସୁଖର ମୁଖ ଦେଖିବ ନାହିଁ; ପୁଣି ଆର୍ଥିକ ସ୍ୱାଧୀନତା ତାର ହୋଇ ପାରିବ ନାହିଁ । ସ୍ଥଳ-ବିଶେଷରେ ଏହାର ବ୍ୟତିକ୍ରମ ଘଟିପାରେ; କିନ୍ତୁ ଏ ତ ସାଧାରଣ କଥା, ସେ ଦ୍ୱୈତପ୍ରକୃତିବିଶିଷ୍ଟ ବୋଲି ତାର ଆର୍ଥିକ ସ୍ୱାଧୀନତା ପଥରେ ଚିରକାଳ କଣ୍ଟକ ପୋତା ହୋଇଥାଏ । ଏହି ପ୍ରକୃତିକୁ ସେ ପରାଭବ କଲେ ତାର ଅର୍ଥନୈତିକ ମୁକ୍ତି କେବଳ ସମ୍ଭବପର । ଜନ୍ମନିରୋଧ କରି ହେଉ କିମ୍ବା ସ୍ୱାଭାବିକ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରି ହେଉ– ଯେପରି ହେଉ ସେ ଯଦି ସମାଜରେ ତାର ସ୍ୱାତନ୍ତ୍ର୍ୟକୁ ନେଇ ସେ ମୁଣ୍ଡ ଟେକିବ, ତେବେ ତାକୁ ଏହି ଦାୟିତ୍ୱମୟ ଜୀବନର ଦୁଃଖ ବହନ କରି, ସେହି ବୋଝ ଧରି ପଥ ବାହିବାକୁ ହେବ । ଏହା ବୋଲି ଯେ ତାର ଆର୍ଥିକ ସଙ୍ଗତିରେ ସମ୍ଭବପର ହେଲେ ସେ

ମାତୃତ୍ୱ ସ୍ୱୀକାର ନକରିବ– ଏହା ନୁହେଁ; କିନ୍ତୁ ଯେଉଁଠି ସେପରି ସମ୍ବଳ ନାରୀର ନାହିଁ, ସେଠି ସେ ମାତୃତ୍ୱ ସ୍ୱୀକାର କରି ବିଧାତାର ଶ୍ରେଷ୍ଠ ଆନନ୍ଦ ଲାଭକଲେ ସୁଦ୍ଧା ଏବଂ ଅନ୍ୟ ସମସ୍ତ ପ୍ରକାର ଦୁଃଖ ଓ ଅସମ୍ମାନ ବରଣ କରିନେଲେ ସୁଦ୍ଧା, ଆର୍ଥିକ ପରାଧୀନତାର ନାଗଫାଶରେ ତାର କଣ୍ଠ ରୁଦ୍ଧ ହୋଇଯିବା କଥା ନିଶ୍ଚିତ । ସେଥିଯୋଗୁଁ ନାରୀର ଆର୍ଥିକ ସ୍ୱାଧୀନତା ପାଇଁ ନାରୀର ଦାୟିତ୍ୱପୂର୍ଣ୍ଣ ମାତୃତ୍ୱର ଉପଲବ୍ଧି ଆବଶ୍ୟକ ।

୪. ନାରୀର ଆର୍ଥିକ-ସ୍ୱାଧୀନତା ସଙ୍ଗରେ ତା'ର ସ୍ୱାମୀକୁ ସ୍ୱେଚ୍ଛାନୁଯାୟୀ ଛାଡ଼ପତ୍ର ଦେବା ସହିତରେ କିଛି ବିଶେଷ ସମ୍ବନ୍ଧ ଯେ ଅଛି, ତା' ଦୂରକୁ ଆମ୍ଭମାନଙ୍କୁ ଦିଶେନାହିଁ । ଦେଖିବାକୁ ମିଳେ, ଯେଉଁମାନେ ଦୈହିକ ପରିଶ୍ରମ ଉପରେ ସେମାନଙ୍କ ଜୀବିକା ନିର୍ବାହ କରିଥାଆନ୍ତି, ସେମାନଙ୍କ ଘରେ ନାରୀମାନେ ସ୍ଥଳବିଶେଷରେ, ପୁରୁଷଙ୍କଠାରୁ ଅଧିକ କମାନ୍ତି । ଧୋବାଘର, ଗୁଡ଼ିଆଘର, ତନ୍ତୀଘର, ବାଉରୀ, ହାଡ଼ିଘର, କେଉଟଘର ଆଡ଼କୁ ଦୃଷ୍ଟି ଦେଲେ ଓ ଗଡ଼ଜାତୀ ଅସଭ୍ୟ ଜାତିଙ୍କ ସମାଜକୁ ଦେଖିଲେ ଏହାର ସାରବତ୍ତା ଜଣାପଡ଼େ । କିନ୍ତୁ ସେହି ଅର୍ଜିତ ଅର୍ଥର ସଦ୍‌ବ୍ୟୟ ନାରୀ କରିପାରେ ନାହିଁ, ତାର ବୁଦ୍ଧି ହୁଏ ତ ଏ ବ୍ୟୟ କରିବାକୁ ଅନୁକୂଳ ହୁଏନାହିଁ । ପୁଣି ଅଜ୍ଞତା ଦୋଷ ମଧ୍ୟ ଅଛି । ସବୁଠାରୁ ବଡ଼ କଥା, ପୁରୁଷ ସେହି ଅର୍ଜିତ ପଇସା ଜୋର କରି ଉଡ଼ାଇ ନିଶା ପିଇଦିଏ, ନିଜ ପିଲାଏ ବି ଖାଇବାକୁ ପାଆନ୍ତି ନାହିଁ; ଯେ ଅର୍ଜିଛି ସେ ମଧ୍ୟ ଭୋକରେ ପଡ଼େ । ଶେଷରେ ରାଗ ବଢ଼ିଲେ– ସେମାନେ ଛେଚା ବି ଖାଆନ୍ତି, କିନ୍ତୁ ନିଜ କମେଇ ପଇସା ସ୍ୱାମୀଠାରୁ ଦାବି କରିବା କି ନେବାର ଶକ୍ତି ସେମାନଙ୍କଠି ନ ଥାଏ ।

ଏପରି ଅବସ୍ଥାରେ ଏହି ଶ୍ରେଣୀମାନଙ୍କର ନାରୀଙ୍କୁ ଦୁର୍ଦ୍ଦଶାରୁ ବଞ୍ଚାଇବାକୁ ହେଲେ ଛାଡ଼ପତ୍ର ଅତୀବ ଆବଶ୍ୟକ । ତା ନ ହେଲେ ଏହି ସାମାଜିକ ମିଥ୍ୟା-ବନ୍ଧନ ହେତୁ ସେ ସ୍ଥଳବିଶେଷରେ ଆର୍ଥିକ ସ୍ୱାଧୀନତା ନିଜର ଦୈହିକ ପରିଶ୍ରମରେ ଅର୍ଜନ କରି ମଧ୍ୟ ନିତ୍ୟ-ପରାଧୀନ ଓ ଅଭାବଗ୍ରସ୍ତ ରହିଥିବ ।

ପୁଣି ଉଚ୍ଚ ବର୍ଣ୍ଣରେ ମଧ୍ୟ ଏହାର ଆବଶ୍ୟକତା ଅଛି । ଯେଉଁ ସ୍ୱାମୀ ତାର ବିବାହିତା ନାରୀକୁ ଦୋଷରେ ବା ବିନା ଦୋଷରେ ତ୍ୟାଗ କରିଛି ବା ଅନ୍ୟତ୍ର ସ୍ତ୍ରୀ ବର୍ତ୍ତମାନ ବିବାହ କରିଛି, ସେପରି କ୍ଷେତ୍ରରେ ଛାଡ଼ପତ୍ର ଏପରି ଉଦାରଭାବରେ ପ୍ରଚଳିତ ହେବା ଦରକାର । ଯେଉଁଠି ସେହି ପରିତ୍ୟକ୍ତା ପତ୍ନୀ କେଉଁଠି ଏକୁଟିଆ ବା କ୍ଷେତ୍ରବିଶେଷରେ ନିଜର ଶିଶୁସନ୍ତାନ ସହିତ ନିଜର ଜୀବନ ସଂଗ୍ରାମ ପାଇଁ ଆର୍ଥିକ-ସ୍ୱାଧୀନତା ଜଗତରେ ନିଜର ବଳ କଷି ନବାକୁ ସୁବିଧା ପାଇପାରେ । ସବୁଠି ତ ଖୋରାକ-ପୋଷାକ ମକଦ୍ଦମା ସଫଳ ହୁଏନାହିଁ । ବିଶେଷତଃ ହିନ୍ଦୁ ଆଇନର ପେଁଚ ନାରୀଜୀବନର ସ୍ଫୁର୍ତ୍ତି ମୁହଁକୁ ସେହି ପେଞ୍ଚଦ୍ୱାରା ଚିପି ଦେଇଥିବା ସ୍ଥଳେ ସେ ଆର୍ଥିକ-ସ୍ୱାଧୀନତା କେବଳ ଏହି ଛାଡ଼ପତ୍ର ଦ୍ୱାରା

ହିଁ ଅର୍ଜନ କରିବାକୁ ସମର୍ଥ ହୋଇପାରେ । ତା ନ ହେଲେ ସମାଜରେ ତାର ଓ ତାର ଶିଶୁର ଦାସ୍ୟବୃତ୍ତି ଛଡ଼ା ଓ ଶହେ ଶାଗୁଣାଙ୍କର ଶବରୂପେ ପଡ଼ି ରହିବା ଛଡ଼ା ଗତି ନାହିଁ କି ମୁକ୍ତି ନାହିଁ । ଏଥିପାଇଁ ଏ ଦିଗଟା ଫିଟାଇ ନାରୀକୁ ସଂସାର କ୍ଷେତ୍ରରେ ଆହୁରି ଦାୟିତ୍ୱମୟ ଓ ଗୌରବପୂର୍ଣ୍ଣ ଜୀବନର ତୋରଣପଥ ମୁକ୍ତ କରି ନ ଦେଲେ ସେ ବଞ୍ଚିବ କିପରି ? ଆର୍ଥିକ-ସ୍ୱାଧୀନତା ତା ପ୍ରତି ସମ୍ଭବପର ହେବ କିପରି ?

୫. ରାଜ୍ୟ ପରିଚାଳନାରେ ପୁରୁଷ ଓ ନାରୀ ଉଭୟଙ୍କର ଅଧିକାର ରହିବା ଯେ କେତେ ଆବଶ୍ୟକ, ତା ଏଠାରେ ବିସ୍ତୃତଭାବରେ କହିବା ଅନାବଶ୍ୟକ ଅଟେ । ଆର୍ଥିକ ଦୃଷ୍ଟିରୁ ଦେଖିଲେ ନାରୀମାନେ ନିଜର ଭୋଟ କ୍ଷମତା ଥିବାରୁ ଉପଯୁକ୍ତ ପ୍ରତିନିଧି ନିର୍ବାଚନ କରି ରାଜ୍ୟ ପରିଚାଳନାର ଗୁରୁଦାୟିତ୍ୱ ପ୍ରତିନିଧିଙ୍କ ଉପରେ ନ୍ୟସ୍ତ କରିବା ନିତାନ୍ତ ବାଞ୍ଛନୀୟ । ଏହି ଭୋଟ୍ କ୍ଷମତାରେ କୌଣସି ପ୍ରକାର ଭେଦଭାବ ରହିବା ଅନୁଚିତ । ଏ ସମ୍ବନ୍ଧରେ ଆଉ ବିଶେଷ ନ ଲେଖି ନିବୃତ୍ତ ରହିଲୁଁ । କାରଣ ଗତସଂଖ୍ୟା 'ସହକାର'ରେ ନାରୀର ଭୋଟ ଅଧିକାର ନେଇ ଏକ ପ୍ରବନ୍ଧ ଛପା ହୋଇଯାଇଅଛି ।

ଆହୁରି ସଂକ୍ଷେପରେ କହିବାକୁ ଗଲେ ବିଶେଷକରି ଦିଓଟି କଥା ମୋ ମନକୁ ଆନ୍ଦୋଳିତ କରେ ।

ନାରୀର ଆର୍ଥିକ ପରାଧୀନତାର ମୂଳ ଯେଉଁଦିନ ଉଠିଯିବ, ସେଦିନ ଦିଓଟି ମହାଲାଭରେ ଜାତି ଲାଭବାନ ହୋଇପାରିବ ।

୧-ଦେଶରୁ ବଂଶଗତ ବେଶ୍ୟାର ଲୋପ ।

୨-ନାରୀର ତାର ଦେହ ଉପରେ ଜନ୍ମଗତ ସ୍ୱାଧୀନ ଅଧିକାର ।

ଏହି ଦିଓଟି କିଛି ସାମାନ୍ୟ କଥା ନୁହେଁ । ଦେଖନ୍ତୁ, ରୁଷିୟା ସରକାରୀ ଆଇନ୍ ଦ୍ୱାରା ଏହି ବଂଶପରମ୍ପରା ବେଶ୍ୟା ବ୍ୟବସାୟ ବନ୍ଦ କରାଇ ଦେଇଅଛି, ତାର କାରଣ ନାରୀର ଅର୍ଥାଗମ ଓ ଭରଣପୋଷଣ ପାଇଁ ବିଶାଳ କର୍ମପନ୍ଥା ଓ କ୍ଷେତ୍ର ସେଠା ସରକାର ସୃଷ୍ଟି କରିଦେଇଛି । ନାରୀ ଯେଉଁଠି ତାର ସ୍ୱାଭାବିକ ଜୈବିକ ଅଭାବର (ଖାଦ୍ୟବସ୍ତ୍ରର) ତୀବ୍ରତା ଅନୁଭବ କରେ, ଅନେକ କ୍ଷେତ୍ରରେ ସେ ନିଜର ବ୍ୟକ୍ତିତ୍ୱ ବା ନାରୀତ୍ୱର ମର୍ଯ୍ୟାଦାକୁ ବିପଣୀରେ ଅନ୍ଧ ହୋଇ ଫିଙ୍ଗି ଦେଇଥାଏ । ସେଇଟା କିନ୍ତୁ ତାର ସହଜାତ ବୃତ୍ତିର ଏକ ବିରୋଧୀ ବୃତ୍ତି ଅଟେ ।

ସୁତରାଂ ଏହି ବେଶ୍ୟାଜାତିର ଅବସ୍ଥାନ ଦେଶର ଗୋଟିଏ ମହା-ଅଧୋଗତିର ମୂଳ । ତାହାର ପଥ ସେହିଦିନ ବନ୍ଦ ହେବ, ଯେଉଁଦିନ ନାରୀ ଅର୍ଥର ଅଧିକାରିଣୀ ହୋଇପାରିବ ।

୨. ନାରୀର ଦେହରେ ତାର ଅଧିକାର ନାହିଁ । ଯଦିଚ ଆଦିମ ଯୁଗର ମନୁଷ୍ୟ ଶିକ୍ଷା ସଭ୍ୟତା ଓ ପାରିପାର୍ଶ୍ୱିକ ସ୍ରୋତରେ ଆଜିକାର ଏହି ବୈଜ୍ଞାନିକ ବିଂଶ ଶତାବ୍ଦୀର ଯୁଗର

ବକ୍ଷକୁ ଟାଣି ହୋଇ ଆସିଅଛି, ତଥାପି ସେ ଯେ ପୂର୍ଣ୍ଣ ସଭ୍ୟ ହୋଇଗଲାଣି ଓ ବର୍ବରତାର ସମସ୍ତ ପ୍ରବୃତ୍ତି ତା'ଠାରୁ ଲୋପ ହୋଇଗଲାଣି, ତାହା ନୁହେଁ । ସଂସାରରେ ସବୁ ଦେଶରେ ଏହାର ଭୂରି ଭୂରି ପ୍ରମାଣ ଯୁଦ୍ଧର ଅବ୍ୟବହିତ ପୂର୍ବକାଳ ପର୍ଯ୍ୟନ୍ତ ରହିଥିଲା । ଏବେ ମଧ୍ୟ ତାର କିଛି କିଛି ଉଦାହରଣ ଆଇନ-ଚକ୍ଷୁରେ ଧୂଳି ଦେଇ ସେହିସବୁ ସମାଜରେ ଛପି ରହିଛି । ଭାରତବର୍ଷରେ ମଧ୍ୟ ଆଜିଯାଏ ସେହି ଯୁଦ୍ଧ ପୂର୍ବକାଳର ଜେର ଚାଲିଛି । ଜଗତରୁ ଯଦିଚ କ୍ରୀତଦାସ ପ୍ରଥା, ବେଠି ବେଗାରୀ, ସାମନ୍ତ ପ୍ରଭାବ ଉଠିଯାଇଛି ଓ କ୍ରମେ ଯାଉଛି ବୋଲି ଦେଖୁଥାଇଁ, ତଥାପି ପ୍ରବଳର ଦୁର୍ବଳ ପ୍ରତି ଧର୍ଷଣ ଥିବା ତକ ଏହାର ଜେର ଚାଲିଛି, ଚାଲୁଥିବ, ସନ୍ଦେହ ନାହିଁ । ଭାରତରେ ଆଇନ୍ ଆଖିରେ ଧୂଳି ନ ଦେଇ ମଧ୍ୟ କ୍ରୀତଦାସ ବା (କୁଲି ଚାଲାଣ) ବେଠି-ବେଗାରୀ, ସାମନ୍ତ ପ୍ରଭାବ ଇତ୍ୟାଦି କେତେ ପ୍ରଥା ସେହିପରି ଜଣା ଅଜଣାରେ ଚାଲୁଅଛି । ମନୁଷ୍ୟର ଏହି ଆଦିମତା, ସେଇଠି ହିମାଳୟର ଉଚ୍ଚତାକୁ ଲଙ୍ଘା ଦେଇଛି, ଯେଉଁଠି ସେ ନାରୀଜାତିର ମନ ତ ମନ, ଦେହକୁ ମଧ୍ୟ ନିଜର ସ୍ୱାର୍ଥପରତାର କବ୍‌ଜା ଭିତରେ କୋଲପ ଦେଇ ବନ୍ଦୀ କରିଛି । ଜଳ ଯେଉଁଠି ଆବିଳ ହୋଇଥାଏ, ସେହି ଜଳକୁ ଆହୁରି ମନ୍ଥନ କଲେ ଯେ ପୂତିଗନ୍ଧମୟ ପଙ୍କବଦ୍ଧ ଜଳ ଉଠେ, ସେହି ଜଳର ଆବର୍ତ୍ତନକୁ ଭାଷାରେ ବର୍ଣ୍ଣନା କରି ଫୁଟାଇଦେବାକୁ ମୁଁ କୁଣ୍ଠାବୋଧ କରୁଅଛି । ତେବେ ଏତିକି କହେ ଯେ, ନାରୀର ଆର୍ଥିକ ସ୍ୱାଧୀନତାର ଅପର ଅର୍ଥ ତାର ନିଜ ଦେହ ଉପରେ ପୂରା ସ୍ୱାତନ୍ତ୍ର୍ୟ ଲାଭ । ଏହି ସମସ୍ୟା ମୂଳରେ ଯେତେକଥା ଅଛି, ଏହି ସମସ୍ୟା ବିପକ୍ଷରେ ଯେତେଗୁଡ଼ିଏ ଯୁକ୍ତି କରାଯାଇପାରେ, ତାହା ଅତୀତର କ୍ରୀତଦାସ ବ୍ୟବସାୟୀ ଏବଂ ବର୍ତ୍ତମାନର କୁଲି ସର୍ଦ୍ଦାର (Contractor) ବା କୁଲି ଦଲାଲଙ୍କର ଯୁକ୍ତି ସାଙ୍ଗରେ ପୂରା ସମାନ ହେବ । ଗୋଟାଏ ଜାତି ସେ ତାର ଦେହ ଉପରେ ଅଧିକାର ପାଇବାକୁ ଯେ ତାର ଅନ୍ତର ସାରା ଜୀବନକାଳ କିପରି ବିଦ୍ରୋହ କରେ ଏ କଥା ସମସ୍ତେ ହୁଏତ ବୁଝିବେ କି ନା ସନ୍ଦେହ; କିନ୍ତୁ ଶିକ୍ଷିତ, ମାର୍ଜିତ ବ୍ୟକ୍ତିମାନେ ଏହାର ଗୁରୁତ୍ୱ ଅନୁମାନ କରିବେ ବୋଲି ମୁଁ ବିଶ୍ୱାସ କରେ । ଏହି ସ୍ୱଦେହ ଉପରେ ନାରୀର ଯେ ଦାବି, ସେ ତ ତାର ଜୀବନର ଗୋଟାଏ ମସ୍ତବଡ଼ ଅଧିକାରର ଦାବି । ତାର ଦେହର ଦାବି ଓ ଅଧିକାର ତା' ପକ୍ଷରେ ଗୋଟାଏ ସାମ୍ରାଜ୍ୟର ଦାବି ଓ ଅଧିକାର । ଏହି ଅଧିକାର କିନ୍ତୁ ସେ କେବଳ ସେତିକିବେଳେ ପାଇପାରେ, ଯେତେବେଳେ ସେ ପ୍ରକୃତରେ ଅନ୍ନପୂର୍ଣ୍ଣା ଶ୍ରୀଲକ୍ଷ୍ମୀ ଦେବୀଙ୍କ ପରି ଧନର ଅନ୍ନର ସ୍ୱର୍ଣ୍ଣବେଦୀ ଉପରେ ଅଭିଷେକ ହେବାର ସୁଯୋଗ ପାଇ ପାରିବ । ନାରୀ ତ ଲକ୍ଷ୍ମୀର ପ୍ରତୀକ ବୋଲି ହିନ୍ଦୁର ଶାସ୍ତ୍ର କହେ, ନାରୀକୁ ତ ସରସ୍ୱତୀଙ୍କର ପ୍ରତୀକ ତୁଲ୍ୟ ହିନ୍ଦୁ ମନେକରେ; କିନ୍ତୁ ସତରେ କଣ ସେ ତାହା ? ଅର୍ଥର ଅଧିକାରିଣୀ, ବିଦ୍ୟାର ଅଧିକାରିଣୀ ସେ କଣ ସତେ ? ନା, ତାର ବିପରୀତ— ଅଲକ୍ଷ୍ମୀ ବା ଅଲକ୍ଷଣୀ ଓ ନିର୍ବୋଧ ଅବଳା ମାତ୍ର— ଯାହାର ଅବୋଧ ଅରଣ୍ୟ-ରୋଦନ କେବଳ ସାଥୀ ହୋଇ ଆସିଛି ସେହି ବନ-ନିର୍ବାସିନୀ ରାକ୍ଷସହୃତା ନାରୀଗୌରବ ସତୀ ସୀତାଙ୍କ ଯୁଗରୁ !

ସେଥିପାଇଁ ଏ ଦିଓଟି ଲାଭ– ୧. ନାରୀର ଆତ୍ମସମ୍ମାନସୂଚକ ଦୈହିକ ଅଧିକାର ୨. ଜାତୀୟ ଜୀବନର ପବିତ୍ରତା ଓ ନୈତିକ ଉନ୍ନତି । ଏହି ଦିଗରୁ ମୁଁ ଏ ପ୍ରବନ୍ଧର ଆଲୋଚନାର ଗୁରୁତ୍ୱ ଅନୁଭବ କରୁଅଛି ।

ନାରୀର ଆର୍ଥିକ ସ୍ୱାଧୀନତା ବିରୁଦ୍ଧରେ ଯେଉଁମାନେ ମତ ବ୍ୟକ୍ତ କରୁଅଛନ୍ତି, ସେମାନଙ୍କର ଯୁକ୍ତିରେ ଯେ କେତେ ଅସାରତା ରହିଛି, ତାହା ଯେ କୌଣସି ଚିନ୍ତାଶୀଳ ବ୍ୟକ୍ତି ବୁଝିପାରିବେ । ସାଧାରଣଭାବରେ ବିରୁଦ୍ଧବାଦୀମାନେ ଏହିପରି ଯୁକ୍ତି ଦେଖାଇଥାନ୍ତି :

୧। ସାଧାରଣତଃ ନାରୀମାନେ ଶାରୀରିକ ଶକ୍ତିରେ, ମାନସିକ ଶକ୍ତିରେ ପୁରୁଷମାନଙ୍କଠାରୁ ନ୍ୟୂନ । ସଂସାର କର୍ମକ୍ଷେତ୍ରରେ ଯେତେ ବାଧାବିଘ୍ନ ସହ୍ୟକରି କାର୍ଯ୍ୟ ନିର୍ବାହ କରିବାକୁ ହୁଏ, ସେଥିପାଇଁ ନାରୀମାନଙ୍କର ଶକ୍ତି ହେବନାହିଁ ବୋଲି ସେମାନଙ୍କର ବିଶ୍ୱାସ । ଯଦି ନାରୀମାନଙ୍କୁ ଅର୍ଥ ସମ୍ବନ୍ଧରେ ସ୍ୱାଧୀନତା ଦିଆଯାଏ ତେବେ ସେମାନେ ତାର ସଦ୍‌ବ୍ୟବହାର କରି ପାରିବେ ନାହିଁ ଏବଂ ଫଳରେ ସମାଜରେ ଘୋର ବିଶୃଙ୍ଖଳତା ଜାତ ହେବ ।

ଏହାର ଉତ୍ତରରେ ମୁଁ ଏହା କହିବାକୁ ଚାହେଁ ଯେ, ନାରୀମାନଙ୍କୁ ତାଙ୍କର ଶକ୍ତି ଦେଖାଇବା ପାଇଁ ଆଜି ପର୍ଯ୍ୟନ୍ତ ଉପଯୁକ୍ତ ସୁବିଧା ଦିଆଯାଇ ନାହିଁ । ଯେଉଁ ଯେଉଁ ସ୍ଥାନରେ ସୁବିଧା ଦିଆ ଯାଇଅଛି, ସେହି ସେହି ସ୍ଥାନରେ ନାରୀମାନେ ଖୁବ୍ ଅଗ୍ରସର ହୋଇ ପାରିଛନ୍ତି । ଏପରିକି ନୋବେଲ ପ୍ରାଇଜ ପାଇଁ ପ୍ରାର୍ଥୀ ହୋଇ ସୁଦ୍ଧା କେତେ ଜଣ ମହିଳା ଯଶସ୍ୱିନୀ ହୋଇ ପାରିଛନ୍ତି । ଇଂଲଣ୍ଡ ଆମେରିକା ଫ୍ରାନ୍ସ ପ୍ରଭୃତି ସ୍ଥାନରେ ନାରୀମାନେ ଦେଶର ବ୍ୟବସ୍ଥାପକ ସଭା ଓ ଅନ୍ୟାନ୍ୟ ସାଧାରଣ ସଭାମାନଙ୍କରେ ଖୁବ୍ କୃତିତ୍ୱ ସହକାରେ କାର୍ଯ୍ୟ କରିଛନ୍ତି । ଆହୁରି ମଧ୍ୟ ଦେଖାଯାଉଛି, ସାଧାରଣ ପାଶ୍ଚାତ୍ୟଦେଶ ମହିଳାମାନେ ଓ ପ୍ରାଚ୍ୟର ଜାପାନ ମହିଳାମାନେ ହୋଟେଲ, ସମସ୍ତ ପ୍ରକାର ସ୍କୁଲ ଓ ବଡ଼ କଲେଜ, ବ୍ୟାଙ୍କ, ଦୋକାନ, ଡାକଘର, କଚେରୀ ଓ ଅନ୍ୟାନ୍ୟ ଅନୁଷ୍ଠାନଗୁଡ଼ିକ ସୁଚାରୁରୂପେ ଚଳାଇ ପାରୁଛନ୍ତି । ଯଦି ଉପଯୁକ୍ତ ସୁବିଧା ମିଳେ, ତେବେ ଭାରତୀୟ ନାରୀ ଯେ କାହିଁକି ଏହିସବୁ ଅର୍ଥନୀତି ସଂକ୍ରାନ୍ତ କର୍ମକ୍ଷେତ୍ର ନିର୍ବାହ କରିବାକୁ ଅସମର୍ଥ ହେବ ତାହା ବୁଝା ପଡୁନାହିଁ ।

୨। ବିରୁଦ୍ଧବାଦୀଙ୍କର ଆଉ ଏକ ଯୁକ୍ତି ହୋଇପାରେ ଯେ, ନାରୀମାନଙ୍କର ଆର୍ଥିକ ସ୍ୱାଧୀନତା ଯଦି ସ୍ୱୀକାର କରାଯାଏ, ତେବେ ସାମାଜିକ ଜୀବନରେ ବିଶୃଙ୍ଖଳା ଘଟିବ । ଏହାରି ସପକ୍ଷରେ ସେମାନେ ପାଶ୍ଚାତ୍ୟ ସମାଜ ନାରୀର ଉଦାହରଣ ଦେଖାନ୍ତି । ସେମାନଙ୍କ ମତରେ ନାରୀମାନଙ୍କର ଏହି ଆର୍ଥିକ ସ୍ୱାଧୀନତା ହିଁ ପାଶ୍ଚାତ୍ୟ ସାମାଜିକ ଅଶାନ୍ତିର ମୂଳ କାରଣ; କିନ୍ତୁ ମୋ ମତରେ ଏହି ଆଶଙ୍କା ଭ୍ରାନ୍ତିମୂଳକ । ଏହି ଆର୍ଥିକ

ସ୍ୱାଧୀନତା ଛଡ଼ା ଅନ୍ୟ କୌଣସି ବିଶେଷ କାରଣ ଏହି ଅଶାନ୍ତି ମୂଳରେ ରହିଛି । ଯଦି ଆମ୍ଭେମାନେ ପାଶ୍ଚାତ୍ୟ ସମାଜର କୌଣସ ତ୍ରୁଟି ଦେଖିଥାଉଁ, ତେବେ ତାହାର ସଂସ୍କାର କରିବାକୁ ନ ଯାଇ ଗୋଟିଏ ମୌଳିକ ଅଧିକାରକୁ ଅସ୍ୱୀକାର କରିବା ବଡ଼ ପରିତାପର ବିଷୟ ହେବ ।

ନାରୀମାନେ ଧନ ଦୌଲତ ସମ୍ବନ୍ଧରେ ଅଧିକାର ପାଇଲେ ଯେ ସମାଜଟା ଚୂର୍ଣ୍ଣବିଚୂର୍ଣ୍ଣ ହୋଇଯିବ, ଏହାର କୌଣସି କାରଣ ନାହିଁ । ବିଶେଷତଃ ଯେତେଦିନ ପର୍ଯ୍ୟନ୍ତ ସମ ଅଧିକାରର ସ୍ତ୍ରୀ ଓ ପୁରୁଷ ଦୁହିଁଙ୍କର ଅର୍ଥନୈତିକ ଅଧିକାରର ସାମଞ୍ଜସ୍ୟ ସମାଜ ବକ୍ଷରେ ଫୁଟି ନ ଉଠିବ, ତେତେଦିନ ପର୍ଯ୍ୟନ୍ତ ପୁରୁଷ-ଶାସିତ ସମାଜର ଅଭିଧାନରେ ଶାନ୍ତି, ଶୃଙ୍ଖଳା, ଆଭିଜାତ୍ୟ ଇତ୍ୟାଦି ସୁମଧୁର ବିଶେଷଣଗୁଡ଼ିକ ରହିଥିଲେ ମଧ, ତାହା ଦୈନନ୍ଦିନ ଜୀବନରେ ଅଭିନୀତ ହେଉଥିଲେ ମଧ ତାହା ଯେ ପ୍ରକୃତରେ ସେହିସବୁ ଗତବନ୍ଧ ଶବ୍ଦବାହୁଲ୍ୟର ଛଟା ଓ ଅନ୍ତଃସାରବିହୀନ, ଏ କଥା ସାଧାରଣ ଚାଲାଖ ଲୋକ ସହଜରେ ବୁଝିନେବ । କାରଣ ନାରୀକୁ ହସ୍ତପଦହୀନ ସୁଭଦ୍ରା ଦେବୀ କରି ଓ ମନ୍ଦିରରେ ତାର ପୂଜା ଆରତି କରି ପୁରୁଷସମାଜ ତାର ଶାନ୍ତି ପାଇଁ ଯେ ବ୍ୟବସ୍ଥା କରିଆସିଛି, ତହିଁରେ ଉପରକୁ ଶାନ୍ତିର ଛାୟା ପ୍ରକଟିତ ହେଲେ ମଧ, ପ୍ରକୃତରେ ଯବନିକା ଉଠାଇଲେ ଦିଶିବ ଯେ ସେ ଶାନ୍ତି ମୃତ୍ୟୁର ପ୍ରତୀକ ମାତ୍ର । ଜଡ଼ତାର ତୁହିନଶୀତଳ ପାଷାଣ ଏହି ତଥାକଥିତ ଶାନ୍ତିର ଗହ୍ୱର ମୁଖକୁ ଆବୃତ କରିଅଛି; କିନ୍ତୁ ଗହ୍ୱର ତଳେ ବିଦ୍ରୋହର ଭିସୁଭିୟସ ପର୍ବତର ଧୂମାୟମାନ ଅଗ୍ନିଲୀଳା !! ମାତ୍ର ଧୀମାନ୍ ପୁରୁଷ ଯେ ଶାନ୍ତି ଚାହେଁ, ସେ କଣ ଏହିପରି ନିର୍ଜୀବ ଶାନ୍ତି ? ମନୁଷ୍ୟକୁ ଜବତ୍ କରି ତାର ସର୍ବ ଅଧିକାର ହରଣ କରି, ତା ଠାରୁ ଯେ ସହାୟତାହୀନ ନିର୍ଭରତା ମିଳେ ତାହା ଶାନ୍ତି ନା ଜୀବନର ଅଭିଶାପ ମୃତ୍ୟୁ ? ଜୀବନ୍ତ ଶାନ୍ତି ଓ ଶୃଙ୍ଖଳା ସିନା ସାମଞ୍ଜସ୍ୟରେ ମିଳେ ? ସ୍ୱାଧୀନ ନର-ନାରୀର ସମାଜରେ ଯେଉଁଠି ଶାନ୍ତିକୁ ସୃଷ୍ଟି କରିବାକୁ ହୁଏ, ଶାନ୍ତି ଓ ଶୃଙ୍ଖଳା ରଖିବାକୁ ନାରୀ ଓ ନର ଯେଉଁଠି ତ୍ୟାଗ ବା ସ୍ୱେଚ୍ଛାକୃତ କଷ୍ଟ ବରଣ କରିନିଅନ୍ତି, ସେଇଠି ସିନା ପ୍ରକୃତ ସତ୍ୟର ଶୃଙ୍ଖଳା ଓ ସାମାଜିକ ତଥା ବ୍ୟକ୍ତିଗତ ଶାନ୍ତି ? ସମଧର୍ମୀ ନରନାରୀ ନ ହେଲେ, ସମଅଧିକାରସମ୍ପନ୍ନ ନ ହେଲେ ଯେ ଶାନ୍ତି, ସେ ତ କେବଳ ଏକ ବିରାଟ ପ୍ରତାରଣା ମାତ୍ର । ରାଜନୈତିକ ପେଞ୍ଚର ଏପାଖ ସେପାଖ ଛଡ଼ା ଆଉ ତାକୁ କଣ କୁହାଯିବ ? ଇଂରେଜ ଭାରତକୁ ଅଧୀନ କରି ଯଦି କହେ– ଭାଇ ଭାରତବାସୀ ! ତୁମେ ନାବାଳକ, ଆମେ ତୁମର ସୁକୁମାର ଜୀବନକୁ ଦାୟିତ୍ୱର ଗୁରୁଭାର ଦେବୁନାହିଁ, ତୁମେ ଖାଅ, ପିଅ, ବସ, କିଛି କମାଅ, ତୁମର ଚଳିବା, ତୁମର ଓ ତୁମ ଦାୟାଦଙ୍କର ଉତ୍ତରଦାୟିତ୍ୱ କଥା ଆମେ ଭାବିବୁ ଆମ୍ଭେ ତୁମ୍ଭର ଅମୁକ ଅମୁକ ଉପକାରମାନ କରିବୁ, ତୁମେ ନିଶ୍ଚିନ୍ତ ହୁଅ, ତହିଁରେ ଯଦି ଭାରତୀୟମାନେ ଅକର୍ତ୍ତବ୍ୟ

ଯୋଗୁଁ ମୌନ ସମ୍ମତି ଲକ୍ଷଣରେ ପଡ଼ି ରହିଥାନ୍ତି, ସେହି ନିଃସହାୟ ଓ ବିମୂଢ଼ଭାବରେ ପଡ଼ି ରହିଥିବା ମାନେ କଣ ଶାନ୍ତି ବା ଶୃଙ୍ଖଳା ? ତହିଁରେ ଇଂରେଜ ଓ ଭାରତର ଦାତା ଗ୍ରହୀତା ସମ୍ବନ୍ଧ ଓ ବାଣିଜ୍ୟ ସମ୍ବନ୍ଧ ଛଡ଼ା ଆଉ ସୌହାର୍ଦ୍ଦ୍ୟ କେଉଁଠୁ ଆସିବ ? ଯଦି ବ୍ରିଟିଶ ଓ ଭାରତ ଦୁଇ ଜାତି ସମାନ ଅବସ୍ଥାରେ ଥାନ୍ତେ, ତେବେ ଜଗତର ସଭ୍ୟତା, ଶାନ୍ତି, ଶୃଙ୍ଖଳା ଏପରି କେତେ ବିଷୟର ମହା ଉନ୍ନତି ସାଧିତ ହୋଇ ପାରି ନ ଥାନ୍ତା ? କିନ୍ତୁ ତାହା ନୁହେଁ.......?

ଆଉ କେତେକ ଭଦ୍ରବ୍ୟକ୍ତି ଅଛନ୍ତି, ଯେଉଁମାନେ କହନ୍ତି ଯେ, ଆମର ହିନ୍ଦୁ-ସମାଜରେ ନାରୀର ଆର୍ଥିକ ଅଧିକାର ରହିଛି; କିନ୍ତୁ ସେ ତାଙ୍କର ଯୁକ୍ତି ସପକ୍ଷରେ କି ଯୁକ୍ତି ଉଦାହରଣ ଦେବେ ମୁଁ ତାହା କହିପାରୁ ନାହିଁ। ସାଧାରଣଭାବରେ ବିଚାର କଲେ ହିନ୍ଦୁନାରୀର କିଛି ଅଧିକାର ନାହିଁ କହିଲେ ଚଳେ ।

(୧) ଦୁହିତା ଭାବରେ ଦେଖିଲେ ଏହା ହିଁ ଜଣାପଡ଼େ ଯେ, ପିତାର ଯଦି ପୁତ୍ର ଥାନ୍ତି ତେବେ ତାର ପିତାର ସମ୍ପତ୍ତିରେ କୌଣସି ଅଧିକାର ନାହିଁ। ଯଦି ପିତାର ପୁତ୍ର ନ ଥାନ୍ତି ଏବଂ ପିତା ଯଦି ଏକାନ୍ନବର୍ତ୍ତୀ କୁଟୁମ୍ବଯୁକ୍ତ ନ ହୋଇଥାନ୍ତି, ତା ହେଲେ ସେଠି ପିତାର ସମ୍ପତ୍ତିରେ ଦୁିତାର ଅଧିକାର ରହିଛି; କିନ୍ତୁ ଏହି ଅଧିକାର ଟିକକ ମଧ୍ୟ ସେ ମାତା ହେବା ପର୍ଯ୍ୟନ୍ତ ରହିଥାଏ । ମାତା ହେବା ପରେ ସେ ସମ୍ପତ୍ତିର କେବଳ ରକ୍ଷଣାବେକ୍ଷଣକାରିଣୀ ମାତ୍ର । ଯେଉଁ ଦୁହିତାମାନେ ଅବିବାହିତ ରହନ୍ତି, (କେତେକ ଅସୁବିଧା ହେତୁ) ସେମାନେ ପିତ୍ରାଳୟର ଦୟା ଉପରେ କାଳାତିପାତ କରିବାକୁ ବାଧ୍ୟ । ସେ ଅବିବାହିତ ରହିଲା ବୋଲି ଯେ ନିଜର ଭାଇ ସହିତ ସମାନ ଅଧିକାର ପାଇବ, ଏ କଥା ହିନ୍ଦୁର କଳ୍ପନାର ଅତୀତ । ଏଥିରୁ ସ୍ପଷ୍ଟଭାବରେ ଜଣାପଡୁଛି, ଦୁହିତାଭାବରେ ସୁଦ୍ଧା ନାରୀର କୌଣସି ଅଧିକାର ନାହିଁ ।

(୨) ପତ୍ନୀରୂପରେ ଦେଖିବାକୁ ଗଲେ ମଧ୍ୟ ନାରୀର ଅର୍ଥନୈତିକ ଜଗତରେ କୌଣସି ସ୍ଥାନ ନାହିଁ। ଯେତେଦିନ ପର୍ଯ୍ୟନ୍ତ ସ୍ୱାମୀ ଜୀବିତ ଅଛନ୍ତି, ତେତେଦିନ ପର୍ଯ୍ୟନ୍ତ ଅର୍ଥନୈତିକ ଜଗତରେ ସେ କେବଳ ଭରଣପୋଷଣ ଦାବିର ଅଧିକାର କରିପାରେ ମାତ୍ର । (କିନ୍ତୁ ଭରଣପୋଷଣ ବା Maintenance rights of the women କୁ ଅର୍ଥନୈତିକ ଅଧିକାର ବୋଲି ଯେପରି କେହି ଭ୍ରମରେ ହେଲେ ନ ବୁଝନ୍ତି; କାରଣ ପଶୁନିଷ୍ଠୁରତା ନିବାରିଣୀ ସମିତିର ତତ୍ତ୍ୱାବଧାରକମାନେ, ଯେଉଁଠାରେ ଗାଈ ଘୋଡ଼ାଙ୍କର ମାଲିକମାନେ ପାଳିତ ପଶୁଗୁଡ଼ିଙ୍କୁ ଉତ୍ତମରୂପେ ଖାଇବାକୁ ପିଇବାକୁ ନ ଦିଅନ୍ତି, ସେଠାରେ ସରକାରୀ ଦୃଷ୍ଟି ଆକର୍ଷଣ କରି ସେମାନଙ୍କୁ ଦଣ୍ଡିତ କରାନ୍ତି । ଯେଉଁମାନେ ଟଙ୍କା କଉଡ଼ି ଦେଇ ଦାସୀଦାସଙ୍କୁ କିଣୁଥିଲେ ଅର୍ଥାତ୍ କ୍ରୀତଦାସମାନଙ୍କର ଭରଣପୋଷଣ କରୁଥିଲେ ।) ବିଧବାର, ଯଦି ବା ସ୍ୱାମୀ-ସମ୍ପତ୍ତି ଉପରେ ଅଧିକାର ଅଛି, କିନ୍ତୁ ପୁତ୍ର ବର୍ତ୍ତମାନରେ ନୁହେଁ ।

ପୁଣି ସେ ଯଦି ନିଃସନ୍ତାନ ହୋଇ ଏକାନ୍ନବର୍ତ୍ତୀ ପରିବାରରେ ଥାଏ, ତେବେ କେବଳ ଭରଣପୋଷଣକୁ ପରିବାର ବାଧ । ଯଦି ନାରୀ ନିଃସନ୍ତାନ ହୋଇଥାଏ, ତେବେ ସ୍ୱାମୀର ବିନାନୁମତିରେ ସେ ପୋଷ୍ୟପୁତ୍ର କରି ଆଇନତଃ ତାକୁ ଉତ୍ତରାଧିକାର ଦେବାର କ୍ଷମତା ତାର ନାହିଁ ।

(୩) ମାତୃରୂପରେ ଯଦି ପୈତୃକ ସମ୍ପତ୍ତି ରକ୍ଷଣ ଭାର ତା ଉପରେ ନ୍ୟସ୍ତ ଥାଏ, ତେବେ ତାହା ପୁତ୍ରର ସାବାଳକ ପର୍ଯ୍ୟନ୍ତ ।

ଯଦି ଦୈବକ୍ରମେ କୌଣସି ଭୂସମ୍ପତ୍ତି ସେ ପ୍ରାପ୍ତହୁଏ, ତେବେ ଉତ୍ତରାଧିକାରୀ ଥିଲେ ସେ ବିକ୍ରୟ କରିପାରିବ ନାହିଁ । ସୁତରାଂ ମାତୃରୂପରେ ମଧ୍ୟ ନାରୀର ଆର୍ଥିକ ଅଧିକାର ନାହିଁ । (ନିଜର ସନ୍ତାନ ଉପରେ ସେତେବେଳେ ତାର ଆଇନତଃ ଅଧିକାର ନାହିଁ ଓ ସେ ତାର ଅଭିଭାବକ ନୁହେଁ, ସେତେବେଳେ ଆର୍ଥିକ ଅଧିକାରର କଥା ତ ତୁଚ୍ଛତମ ।)

(୪) ଯେଉଁଠି ନାରୀ ସ୍ୱାବଲମ୍ବିନୀ, ସେଇଠି କେବଳ ତାର ଅର୍ଜିତ ଧନକୁ ସ୍ତ୍ରୀଧନ କୁହାଯିବ, ତାରି ଉପରେ ତାର ଅଧିକାର ଅଛି । ବର୍ତ୍ତମାନ ଏ ପ୍ରସଙ୍ଗରେ ସେ ପ୍ରଶ୍ନ ଉଠୁନାହିଁ; କାରଣ ଏହା ତ ସ୍ୱତଃସିଦ୍ଧ, ତାର ଅର୍ଜିତ ସମ୍ପତ୍ତିର ସେ ମାଲିକ– ଏଥିରେ ସାମାଜିକ ବା ରାଜନୈତିକ ବ୍ୟବସ୍ଥା ତା ପାଇଁ ଆଉ କଣ ଅଛି ?

ଉପର୍ଯ୍ୟୁକ୍ତ ଆଲୋଚନାରୁ ସ୍ପଷ୍ଟଭାବରେ ଜଣାପଡୁଛି ଯେ, ନାରୀମାନଙ୍କର ଆର୍ଥିକ ଜଗତରେ କୌଣସି ସ୍ଥାନ ନାହିଁ । ଯଦି କୌଣସି ପ୍ରକାର ଅଧିକାର ଅଛି, ତେବେ ତାହା କିଛି ନୁହେଁ କହିଲେ ଚଳେ । ବର୍ତ୍ତମାନ ଅବସ୍ଥାରେ ଅଧିକାର ଅଛି ବୋଲି ଯୁକ୍ତି କରିବା ଅର୍ଥ ନିଜ ଆଖିରେ ଧୂଳି ମାରିବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କ ଆଖିରେ ମଧ୍ୟ ଧୂଳି ଦେବା ।



(ସହକାର, ପଞ୍ଚଦଶଭାଗ ପ୍ରଥମ ସଂଖ୍ୟା, ୧୯୩୪)

# ଉତ୍କଳରେ ନାରୀ ଜାଗରଣ

ଗତ ଶତାବ୍ଦୀରେ ବଙ୍ଗ କବି ଗାଇଥିଲେ 'ନାଜାଗିଲେ ସବ ଭାରତ ଲଲନା, ଏ ଭାରତ ଆର ଜାଗେନା ଜାଗେନା।' ଉତ୍କଳର ସଂସ୍କୃତି ଏବଂ ସଭ୍ୟତାର ସ୍ୱାତନ୍ତ୍ର୍ୟ ଓ ବୈଶିଷ୍ଟ୍ୟ ଥିଲେ ମଧ୍ୟ ଉତ୍କଳ ଭାରତୀୟ ସଭ୍ୟତା ଏବଂ ବୈଦିକ ସଂସ୍କୃତି ପରମ୍ପରା ଠାରୁ ବିଚ୍ଛିନ୍ନ ନୁହେଁ– ବରଂ ସେହି ସଭ୍ୟତା ଓ ସଂସ୍କୃତିର ବାହକ ଅଟେ। ତେଣୁ ଭାରତୀୟ ପ୍ରଦେଶ ମାନଙ୍କର ନାରୀ ଜାଗରଣର ପରିମାପ କଲେ ଉତ୍କଳର ସ୍ଥାନ ନାରୀ ଜାଗୃତିରେ ପଛେଇ ନାହିଁ ବୋଲି କହିବାକୁ ହେବ। କେନ୍ଦ୍ରିୟ ଶାସନ ଧାରା ଯେପରି ଭାରତର ସବୁ ପ୍ରଦେଶରେ ଚାଲୁଛି, ନାରୀ ଜାଗରଣ ମଧ୍ୟ ସେହି ବିଧିରେ ଭାରତର ସବୁ ପ୍ରଦେଶରେ ଊଣା ଅଧିକ ହୋଇଅଛି।

ଓଡ଼ିଶାରେ ନାରୀମାନଙ୍କର ଶିକ୍ଷାର ଭିତ୍ତି ପତନ ହୋଇଥିଲା ଊନବିଂଶ ଶତାବ୍ଦୀର ଶେଷ ଭାଗକୁ ଊନବିଂଶ ଶତାବ୍ଦୀର ପ୍ରଥମ ପାଦରୁ ତାହା ଲୋକଲୋଚନ ଅନ୍ତରାଳରେ ଅତି ମନ୍ଥର ଗତିରେ କ୍ରମବିକାଶ ନିୟମରେ ବିକାଶ ପାଇ ଆସୁଥିଲା। ମହାତ୍ମାଗାନ୍ଧୀଙ୍କ ଉଦାତ୍ତ ଆହ୍ୱାନରେ ଭାରତର ସବୁ ଶ୍ରେଣୀର ଅଗଣିତ ଜନତାମାନଙ୍କ ଭିତରେ ଯେଉଁପରି ଚେତନା ଆସିଥିଲା ସେହିପରି ଜାତୀୟ ଚେତନାର ଅଙ୍କୁରୋଦ୍‌ଗମ ହୋଇଥିଲା ଉତ୍କଳର ନାରୀ ପ୍ରାଣରେ। ସେକାଳର ରାଜନୀତିକ ସଂଗ୍ରାମରେ ଉତ୍କଳର ସାମାଜିକ ଜୀବନ ଚହଲି ଯାଇଥିଲା। ଶତାବ୍ଦୀର ସୁସୁପ୍ତ ନାରୀ ହଠାତ୍ ସେହି ଜାତୀୟ ସଂଗ୍ରାମର ଶଙ୍ଖ ଧ୍ୱନିରେ ଜାଗରିତ ହୋଇ ଘନ ପର୍ଦ୍ଦାର ଅନ୍ତରାଳର ଶୃଙ୍ଖଳବିଧି ଭାଙ୍ଗି ଚାଲି ଆସିଥିଲା ଦୁନିଆର ମୁକ୍ତ ରାଜପଥକୁ ଅବହେଳିତା, ଅନାଦୃତା ପର୍ଦ୍ଦା ଭିତରେ ଥିବା ଅଶିକ୍ଷିତା ନାରୀ ସେ ଯୁଗରେ ନିଜ ଭିତରେ ଆତ୍ମାର ସ୍ପନ୍ଦନ ଅନୁଭବ କଲା ସାମାଜିକ ଓ ରାଷ୍ଟ୍ର ଜୀବନରେ ତା'ର ଅବଦାନର ମୂଲ୍ୟ ମଧ୍ୟ ସେ କଳନା କରିବାକୁ, ଶିଖିବାକୁ ଆରମ୍ଭ କଲା।

ରାଜନୀତିକ ଜୀବନରେ ଯେଉଁଦିନୁ ଉତ୍କଳର ନାରୀ ଯୋଗଦାନ କଲା, ସେହିଦିନୁ ତା'ର ଜାଗୃତି ଇତିହାସ ଆରମ୍ଭ ହୋଇଥିଲା। ନାରୀ ସେହି ଜାତୀୟ ସଂଗ୍ରାମର ଉତ୍ତେଜନାରେ ଚେତି ଉଠିଲା ଏବଂ ସେ ଯେ ସମାଜ ଓ ରାଷ୍ଟ୍ରର ଏକ ଅବିଚ୍ଛେଦ୍ୟ ଅଙ୍ଗ ଏବଂ ସେ ଅବହେଳା ଅନାଦର ବା ଘୃଣାର ପାତ୍ରୀ ନୁହେଁ ରାଷ୍ଟ୍ର ଓ ସମାଜରେ ପୁରୁଷ ସହିତ ସେ ମଧ୍ୟ ଏକ ଆବଶ୍ୟକୀୟ ଅଙ୍ଗ ତାହା ଅନୁଭବ କରିବାକୁ ଲାଗିଲା।

ବିଦେଶୀ ଶାସନ ତଳେ ଆମର ଦେଶବାସୀ ଶହ ଶହ ବର୍ଷ ରହି ଯେପରି ନିଜକୁ ସବୁ ଦିଗରେ ଅଯୋଗ୍ୟ ଓ ଅପାରଗ ଭାବୁଥିଲେ ଏବଂ ଇଂରେଜ ଶାସକମାନଙ୍କ ଠାରୁ ନିଜର ସବୁ ଦିଗରେ ଅଯୋଗ୍ୟତା କଥା ଶୁଣି ଶୁଣି ସେମାନଙ୍କ ମନରେ ଯେପରି ଭୀତି ଶଙ୍କା ଓ ନିଜ ପ୍ରତି ଘୃଣା ଅବିଶ୍ୱାସ ଜାଗିଥିଲା, ଉତ୍କଳରେ ନାରୀମାନେ ମଧ୍ୟ ସେଭଳି ନିଜକୁ କ୍ଷୁଦ୍ର ଅଯୋଗ୍ୟ ସବୁକ୍ଷେତ୍ରରେ ଅଲୋଡ଼ା ବୋଲି ଭାବୁଥିଲେ । ଏପରିକି ମୂର୍ଖତା ଓ ପର୍ଦ୍ଦା ଭିତରେ ରହିବାଟା ହିଁ ସେମାନଙ୍କ ପ୍ରତି ଏକ ଚିରନ୍ତନ ବିଧି ନିର୍ଦ୍ଦେଶ ବୋଲି ମଧ୍ୟ ଭାବୁଥିଲେ । ଶିକ୍ଷା ଓ ଆଲୋକ ରଶ୍ମିକୁ ପରାଧୀନତାର ବାତାବରଣ ତଳେ ରହି ନାରୀମାନେ ସ୍ୱାଗତ କରିବାକୁ ଭୟ କାତର ହେଉଥିଲେ । ଜୀବନର ରାଜପଥରେ ଚାଲିବାର ମାନସିକ ବୃତ୍ତି ଓ ଶାରୀରିକ ଶକ୍ତି ସେମାନଙ୍କ ଭିତରେ ନଥିଲା । କେବଳ ଗୃହର ସୀମିତ ସଂକୀର୍ଣ୍ଣତା ଭିତରେ କେବଳ ଗୃହର ଦୈନନ୍ଦିନ ଧର୍ମ କର୍ମ ପ୍ରବାହ ଭିତରେ ଓ ସନ୍ତାନ ପାଳନରେ ସେମାନଙ୍କର ଦିନଚର୍ଯ୍ୟା ଚାଲିଥିଲା । ନାରୀ ନିଜର ଆତ୍ମଶକ୍ତିର ପରିମାପ କରିପାରି ନଥିଲା ନିଜର ଜୀବନକୁ ଅନ୍ୟମାନଙ୍କ ଉପରେ ଦେଇ ସମାଜର ଚଳଗ୍ରହ ହୋଇ ଦାୟିତ୍ୱ ଶୂନ୍ୟ ଜୀବନ ଯାତ୍ରାର ପରମାନନ୍ଦ ସେ ଉପଭୋଗ କରି ଚାଲିଥିଲା ।

ନାରୀର ଏହି ପରମ୍ପରା ଯେ କେବଳ ଉତ୍କଳରେ ଥିଲା ତାହା ନୁହେଁ ଭାରତର ସବୁ ପ୍ରଦେଶରେ ନାରୀମାନଙ୍କର ଏହି ଅଚେତନ ଦୁର୍ଦ୍ଦଶା ପରାଧୀନ ଭାରତର ଏକ ସାଧାରଣ ସାମାଜିକ ପରିସ୍ଥିତି ଓ ସମସ୍ୟା ହୋଇ ରହିଥିଲା ।

ଦେଶରେ ସ୍ୱାଧୀନତା ସୂର୍ଯ୍ୟ ଉଦିତ ହେଲା । ପରାଧୀନତାର ଶୃଙ୍ଖଳ ଜାତିର ପାଦରୁ ଛିଡ଼ିଗଲା । ଶତାବ୍ଦୀର ଦୀର୍ଘ ସୁସୁପ୍ତି ଭାଙ୍ଗିଗଲା । ଦୀର୍ଘ ଘନ ତିମିର ହଠାତ୍ ଭାରତୀୟ ଆକାଶରୁ ଅପସାରିତ ହୋଇଗଲା । ସେହି ଆଲୋକ ଜ୍ୟୋତିରେ ନାରୀ ଜୀବନର ଶତଦଳ ଫୁଟି ଉଠିଲା । ସୁରଭିତ କଲା ସମାଜକୁ ରାଷ୍ଟ୍ରକୁ ତାର ଅବଦାନ । ନାରୀ ଆତ୍ମସମ୍ବିତ୍ ପାଇ ବିସ୍ମିତ ଦୃଷ୍ଟିରେ ଦେଖିଲା ତାର ଆତ୍ମାକୁ ଓ ସଂସାରକୁ— ପରିବାରକୁ ଓ ସାମାଜିକ ତଥା ରାଷ୍ଟ୍ରୀୟ ଜୀବନକୁ । ତାହାର ଚକ୍ଷୁରେ ତନ୍ଦ୍ରାର କୁହେଳି ରହିଥିଲା । ତାହା କ୍ରମେ କ୍ରମେ ସାମାଜିକ ଓ ଆର୍ଥିକ ଚେତନାରେ ପରିଷ୍କାର ହୋଇ ଆସିଲା । ସେ ଦେଖିଲା ଓ ବୁଝିଲା ଯେ ଏ ସଂସାରରେ ତାର ସ୍ଥାନ ପୁରୁଷ ଠାରୁ ନ୍ୟୂନ ନୁହେଁ— ଉଚ୍ଚ । କାରଣ ସେ ସଂସାରରେ ସୃଷ୍ଟିର ଦାୟିତ୍ୱ ନେଇଛି— ସମାଜ ଠାରେ ତାର ଦାବି ଅଛି— ରାଷ୍ଟ୍ର ଉପରେ ତାର ଦାବି ରଖି ତାର ଉତ୍କୃଷ୍ଟ ଅବଦାନକୁ ପ୍ରତ୍ୟାଶା କରନ୍ତି । ସେ ଅବହେଳା ଓ ଅନାଦରର ପାତ୍ରୀ ହୋଇ ପରାବଲମ୍ବିନୀ ପରମୁଖାପେକ୍ଷିଣୀ ହୋଇ ସାରା ଜୀବନ ସମାଜର ଦାସତ୍ୱ କରିବାକୁ ଇଚ୍ଛିନାହିଁ । ତାର ନିଜସ୍ୱ ମତ, ବିଚାର, କର୍ମର ବୈଶିଷ୍ଟ୍ୟ ରହିଅଛି ।

ଏହି ଭାବନା ମୁଖ୍ୟ ଓ ଗୌଣ ଭାବରେ ନାରୀ ମନରେ ଜାଗ୍ରତ ହେବାରୁ ସରକାର ନାରୀର ଆତ୍ମବିକାଶ ଓ ଆତ୍ମନିୟନ୍ତ୍ରଣ ନିମନ୍ତେ ନୂଆ ନୂଆ ଆଇନ ବିଧି ପ୍ରଣୟନ କଲେ । ତେଣୁ ନାରୀ ଆଜି ରାଷ୍ଟ୍ରରେ ତାର ଅଧିକାର ପାଇଅଛି ଓ ସମାଜରେ ମଧ୍ୟ ତାର ସ୍ଥାନ ନିରୂପଣ କରି ପାରିଛି ।

ଆଜି ଉତ୍କଳ ନାରୀର ଜାଗରଣ ସମାଜର ଓ ରାଷ୍ଟ୍ରର ସବୁ ପରିସର ଭିତରେ ସମ୍ଭବପର ଓ ସାର୍ଥକ ହୋଇ ପାରିଅଛି ଦେଖିବାକୁ ମିଳୁଛି ।

ଯେଉଁ ଉତ୍କଳ ପଲ୍ଲୀର ନାରୀମାନଙ୍କ ଉପରେ ଦିନେ ସୂର୍ଯ୍ୟାଲୋକ ପଡ଼ିପାରୁ ନଥିଲା, ସେହି ନାରୀମାନେ ଆଜି ସାମାଜିକ ଚେତନା ଓ ଦାୟିତ୍ୱ ବୋଧ କରିବାରୁ ଜୀବନ ସଂଗ୍ରାମରେ ବ୍ରତୀ ହୋଇ ପାରୁଛନ୍ତି । ଅବଶ୍ୟ ଆମର ସମାଜରେ ଯେଉଁମାନେ ଶାରୀରିକ କର୍ମ କରି ବଞ୍ଚୁଥିଲେ ସେହି ଶ୍ରେଣୀର ନାରୀମାନେ ସବୁ କାଳରେ ସବୁ ଯୁଗରେ ଜୀବନ ସଂଗ୍ରାମରେ ଅବତୀର୍ଣ୍ଣା ହୋଇଥିଲେ । ମାତ୍ର ଏବେ ଦେଖାଯାଉଛି ସେହି ଶ୍ରେଣୀର ଶ୍ରମ ଜୀବୀ ନାରୀମାନଙ୍କ ଛଡ଼ା ନିମ୍ନ ମଧ୍ୟବିତ୍ତ ଘରର ନାରୀମାନେ ମଧ୍ୟ ସାମାଜିକ ଓ ରାଷ୍ଟ୍ରୀୟ ସଂସ୍ଥାର ପରିବର୍ତ୍ତନ ଓ ଅର୍ଥର ବିକେନ୍ଦ୍ରିକରଣ ହେତୁ ଯେଉଁଭଳି ପରିବର୍ତ୍ତନ ଆସି ଜୀବନ ସଂଗ୍ରାମକୁ ଜଟିଳ ଓ କଠିଣ କରି ଦେଇଛି ସେହି ପରିବର୍ତ୍ତନକୁ ମଧ୍ୟ ସାହସିକତାର ସହିତ ସମ୍ମୁଖୀନ ହୋଇ ପାରିଛନ୍ତି । ପଲ୍ଲୀ କୋଣରୁ ନାରୀମାନେ ଆସି ଆଜି ଜୀବନ ସଂଗ୍ରାମର ରାଜପଥରେ ଭିଡ଼ କରିଛନ୍ତି ଏବଂ ତାହା ଦିନକୁ ଦିନ ବଢ଼ିବାରେ ଲାଗିଛି । ନାରୀ ମନରେ ଆଜି ଦ୍ୱିଧା କି ସଂକୋଚ ନାହିଁ । ସମାଜରେ ସେ ତାର ଭାଗ ନେଉଛି ଓ ରାଷ୍ଟ୍ରୀୟ ଜୀବନରେ ତାର ସ୍ଥାନ ଆଜି ସ୍ୱୀକୃତି ଲାଭ କରି ପାରିଛି ।

ନାରୀ ଦିନେ ନିଜର ମୁକ୍ତି ହାସଲ କରିବା ପାଇଁ ମୁଖ୍ୟ ଭାବରେ ଓ ଗୌଣ ଭାବରେ ଯେ ଆର୍ତ୍ତନାଦ କରିଥିଲା ତାହା ନିରାକୃତ ହୋଇଅଛି ।

ଆଜି ସରକାରୀ ଓ ବେସରକାରୀ ଅଫିସରେ, ସ୍କୁଲରେ, କଲେଜରେ, ବିଚାରାଳୟରେ କଳ କାରଖାନାରେ, ଖଣିରେ, ଚା'ଘରେ ଗୃହକାର୍ଯ୍ୟରେ ନୃତ୍ୟ ସଙ୍ଗୀତ ଶାଳାରେ, ଶିଳ୍ପ ଉତ୍ପାଦନରେ, ପରିଶ୍ରମାଳୟରେ, ରଙ୍ଗମଞ୍ଚରେ, ଚିକିତ୍ସାଳୟରେ ସେବା ଓ ସ୍ୱାସ୍ଥ୍ୟ ପରିବେଶରେ କାର୍ଯ୍ୟ କରି ନିଜର ଜୀବିକା ନିର୍ବାହ ଓ ସନ୍ତାନ ପାଳନର ଦାୟିତ୍ୱ ତୁଲାଇ ପାରିବାର ଶକ୍ତି ଲାଭ କରିଛି । ଆଗେ ନାରୀମାନେ ହିନ୍ଦୀ ପଢ଼ିବା, ହିନ୍ଦୀ ପରୀକ୍ଷା ଦେବା ଓ ହିନ୍ଦୀ ସ୍କୁଲରେ ତ ପଢ଼ିବା କଥା କଳ୍ପନାତୀତ ଥିଲା । ମାତ୍ର ଏବେ ନାରୀ ଛାତ୍ରୀ ଓ ଶିକ୍ଷାର୍ଥିନୀ ପରୀକ୍ଷାର୍ଥୀଙ୍କ ସଂଖ୍ୟା ପୁରୁଷ ଛାତ୍ରମାନଙ୍କର ଆଗ୍ରହ ଠାରୁ ବଳି ପଡ଼ିଲାଣି ।

ନାରୀ ଜାଗରଣ ହେଲା ପରେ ନାରୀ ଓ ପୁରୁଷମାନଙ୍କ ଭିତରେ ସବୁ କ୍ଷେତ୍ରରେ ସଂଖ୍ୟାର ପାର୍ଥକ୍ୟ ଯେ ଦେଖାଯାଉଛି ତା'ର କାରଣ ଏହାକୁହିଁ ଯେ ନାରୀ ପଛୁଆ ରହିବାକୁ ନୁହେଁ। ନାରୀ ଯେଉଁ ସୁଯୋଗ ଓ ସୁବିଧା ପାଇଲେ ଅଗଣନ ସଂଖ୍ୟାରେ ଜୀବନର ସବୁ କ୍ଷେତ୍ରରେ ଅଗ୍ରସର ହୋଇ ପାରନ୍ତା, ତାହା ସଂସ୍ଥା ଓ ସରକାରୀ ଅର୍ଥାନୁକୂଲ୍ୟରେ କେବଳ ସମ୍ଭବପର ହୋଇ ପାରନ୍ତା । କିନ୍ତୁ ଗରିବ ମେଧାବୀ ଛାତ୍ର ପଇସା ଅଭାବରୁ ଯେପରି ତା'ର ପ୍ରତିଭା ବିକାଶ କରିବାକୁ ଅସମର୍ଥ ହୋଇ ରହିଛି । ସେହି ଦୃଷ୍ଟିରୁ ନାରୀ ସମଗ୍ର ଭାବରେ ଆର୍ଥିକ ପରିସ୍ଥିତି ପାଇଁ ତା'ର ପରିପୂର୍ଣ୍ଣ ଆତ୍ମ ବିକାଶ କରି ପାରୁନାହିଁ।

ପ୍ରାଥମିକ ଶିକ୍ଷା ଆମ ପ୍ରଦେଶରେ ବାଧ୍ୟତାମୂଳକ ହୋଇ ନଥିବାରୁ ଓ ନାରୀ ଶିକ୍ଷା ପାଇଁ ସରକାରୀ ସୁବିଧା ଯାହା ହେବାର କଥା ତାହା ହୋଇପାରୁ ନଥିବାରୁ ଏବଂ କାଳିକା ସ୍କୁଲ ପଲ୍ଲୀ ଅଞ୍ଚଳରେ ବେଶି ହୋଇ ପାରୁ ନଥିବାରୁ ଆମର ନାରୀମାନେ ଯେଉଁ ଅଗ୍ରଗତି ଚାହୁଁଛନ୍ତି ତାହା ପୂରା ହୋଇପାରୁ ନାହିଁ। ସମାଜ ମଙ୍ଗଳ ସଂସ୍ଥା ନାରୀମାନଙ୍କୁ ଖୁବ୍ ଆଗେଇବା ପାଇଁ ସାହାଯ୍ୟ କରିବାକୁ ଚାହେଁ । ମାତ୍ର ତାହା ବ୍ୟାପକ ହୋଇ ପାରୁ ନାହିଁ ଅର୍ଥାଭାବରୁ ଓ ଦେଶରେ ନାରୀମାନଙ୍କୁ ତାଲିମି ଦେବାର ପ୍ରଚୁର ସୁବିଧା ସୁଯୋଗ ନଦେବାରୁ ।

ଉତ୍କଳର ନାରୀମାନେ ଆଜି ଶିକ୍ଷାରେ ମଧ୍ୟ ବଢ଼ି ଚାଲିଛନ୍ତି । ଅବଶ୍ୟ ଇଞ୍ଜିନିୟରିଂ, ଟେକ୍‌ନୋଲୋଜି, ବିଜ୍ଞାନ ଗବେଷଣା କାର୍ଯ୍ୟ ଓ କଠିନ ଶରୀରଶ୍ରମ ମୂଳକ କାର୍ଯ୍ୟରେ ନାରୀ ପୃଥିବୀର ଅନ୍ୟ ସଭ୍ୟ ଦେଶ ନାରୀଙ୍କ ତୁଲ୍ୟ ଆଗେଇ ପାରି ନାହିଁ। ତାହାର ଦେହରେ ଖାଦ୍ୟ ପରିସ୍ଥିତି ନେଇ ଆଜି ଶକ୍ତି ନାହିଁ– ସହରର କୃତ୍ରିମ ଜୀବନ ଯାତ୍ରା ପ୍ରଣାଳୀରେ ଅବଗାହି ହୋଇ ସେ ଶରୀର ଶକ୍ତିରେ ଦୁର୍ବଳ ହୋଇଅଛି । ତା'ର ସ୍ୱାସ୍ଥ୍ୟ ନାହିଁ, କିନ୍ତୁ ନାରୀର ମାନସିକ ବିକାଶ ଘଟିଛି । ଆଗେ ନାରୀ ସାହିତ୍ୟ ଚର୍ଚ୍ଚା କରୁ ନଥିଲେ । ଏବେ ଓଡ଼ିଶାରେ ଶତାଧିକ ଲେଖିକା ଦେଖିବାକୁ ମିଳୁଛନ୍ତି । ସେମାନେ ସଭାସମିତିରେ ଏବେ ଭାଷଣ ଦେଉଛନ୍ତି । ସମାଜର ସବୁ ସ୍ତରରେ ସେମାନେ ସେବା କରୁଛନ୍ତି– ଅବଶ୍ୟ ଅର୍ଥ ବିନିମୟରେ ନାରୀ ସେବା ବିକ୍ରି କରୁଛନ୍ତି । ନିଘଞ୍ଚ ପଲ୍ଲୀର ରମଣୀମାନେ ଅତି ସୂକ୍ଷ୍ମ ଜୀବନ କାର୍ଯ୍ୟ ଓ ଶିଳ୍ପ କାର୍ଯ୍ୟମାନ କରି ପାରୁଛନ୍ତି, ଯାହାକି ସହରର କେତେକ ଶିକ୍ଷିତା ନାରୀମାନେ କେବଳ କରି ପାରୁଥିଲେ ।

ଉତ୍କଳର ନାରୀ ଜାଗରଣ ଯେତିକି ସମ୍ଭବପର ହୋଇଛି, ତାହା ଆହୁରି ଆଗେଇ ପାରିବ ଯଦି ରାଷ୍ଟ୍ର ସଂସ୍ଥା ତାହାର ସୁବିଧା ଓ ସୁଯୋଗ ଦିଏ । ନାରୀର ଆତ୍ମା ଆଜି

ଉତ୍କଳରେ ଉଦ୍‌ବୋଧିତ ଓ ଜାଗ୍ରତ ହୋଇଛି । ଫୁଲର କଢ଼ି ଘରେ ଘରେ ଧରିଛି । ମାତ୍ର ଉପଯୁକ୍ତ ସାର, ପାଣି, ପବନ ଓ ଆଲୋକର ଅପେକ୍ଷା ରଖୁଛି । ତାହା ପାଇଲେ ନାରୀ ଜୀବନ ଶତଦଳ ସୁରଭିତ ହେବ ।

ଏ ଯୁଗରେ ଉତ୍କଳ ନାରୀର ଯେତିକି ଦାୟିତ୍ୱ ଆସିଛି, ସେତିକି ଦାୟିତ୍ୱ ସେ ତୁଲାଇ ପାରି ନାହିଁ । ସମ୍ପୂର୍ଣ୍ଣ ଦାୟିତ୍ୱ ସେ ବହନ କରିବାକୁ କ୍ଷମ ହୋଇ ପାରି ନାହିଁ । ମନରେ ତା'ର ବଳ ଅଛି । ମାତ୍ର ତାହା ପ୍ରତିକୂଳ ବାତାବରଣ ହେତୁ ସ୍ଫୁରଣ ହୋଇ ପାରୁନାହିଁ । ନାରୀ ତା'ର ବହୁତ ଅଧିକାର ସହିତ ସମ୍ପତ୍ତି ଅଧିକାର ମଧ୍ୟ ପାଇଛି, ମାତ୍ର ସମ୍ପତ୍ତି ରକ୍ଷଣାବେକ୍ଷଣର ଦାୟିତ୍ୱ ତୁଲାଇ ପାରୁନାହିଁ । ଅନ୍ୟ ଅଧିକାର ରାଷ୍ଟ୍ର ସହିତ ନାରୀର ଯେ ମୁଖ୍ୟ ସଂପର୍କ, ତାହା ନାରୀ ଏଯାବତ୍ ଏକକ ପୂରଣ କରି ନାହିଁ । ତାର ଦେହରେ, ମନରେ ଓ ବୁଦ୍ଧିରେ ଆହୁରି ବଳବୀର୍ଯ୍ୟ ଓ ନିଃଶଙ୍କ ସାହସ ପ୍ରତ୍ୟୁତ୍ପନ୍ନମତିତ୍ୱର ଅପେକ୍ଷା ରଖୁଛି । କ୍ରମବିକାଶର ନିୟମାନୁସାରେ ଏହା କ୍ରମେ କ୍ରମେ ଧୀରେ ଧୀରେ ଆଗେଇ ଯିବ ଓ ନାରୀ ତାର ଶକ୍ତିର ସ୍ୱାଦ ପୂର୍ଣ୍ଣରୂପେ ଅନୁଭବ କରି ପାରିବ । ଏହା ଆଜିକାର ଉତ୍କଳରେ ନାରୀ ଜାଗରଣର ରୂପ ଦେଖି ମନରେ ପ୍ରତ୍ୟୟ ଆସୁଅଛି ।

ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତାରେ ଆମର ନାରୀମାନେ କ୍ରମେ କ୍ରମେ ପ୍ରାଚ୍ୟ ଜୀବନଧାରାର ପରମ୍ପରା ଓ ସଂସ୍କୃତି ଠାରୁ ଦିନକୁ ଦିନ ଅଧିକ ପରିମାଣରେ ଦୂରେଇ ଯାଉଛନ୍ତି । ଯାହା ପୁରାତନ ତାହା ଚାଲିଯାଇଛି । ମାତ୍ର ସେହି ଶୂନ୍ୟ ସ୍ଥାନ କୌଣସି ନୂତନ ଅବଦାନରେ ପରିପୂର୍ଣ୍ଣ ହେଉନାହିଁ । ଏହା ଏକ ବିପଜ୍ଜନକ ଓ ଉଦ୍‌ବେଗଜନକ ଅବସ୍ଥା ସାମାଜିକ ଜୀବନରେ ଘଟିଅଛି ଏହା କେବଳ ଉତ୍କଳ ପ୍ରଦେଶରେ ନୁହେଁ– ଉଣା ଅଧିକେ ରାଷ୍ଟ୍ରନୀତିରେ ପରିବର୍ତ୍ତିତ ସାମାଜିକ ପରିବେଶ ଯୋଗୁଁ ଭାରତର ସବୁ ପ୍ରଦେଶରେ ଏହି ନ ଯଯୌ ନ ତସ୍ଥୌ ଅବସ୍ଥା ଘଟିଅଛି । ଏହି କାରଣରୁ ନାରୀର ବହିର୍ମୁଖିତା ଓ ଆର୍ଥିକ ଜୀବନର ପ୍ରଗତି ପଥ ଯେତେ କୁଶଳ ହୋଇ ଉଠିଛି ଠିକ୍ ତା'ର ପଛପଟ ଦେଖିଲେ ମନରେ ଦୁଃଖ ଓ ନିରାଶା ଆସୁଛି । ନାରୀର ଅନ୍ତର୍ମୁଖୀନତା ଯେଉଁ ପରମ୍ପରା କ୍ରମେ ଆସିଥିଲା ଓ ତା'ର ଜୀବନକୁ ପ୍ରଭାବିତ କରିଥିଲା, ତାକୁ କ୍ରମେ ଆଧୁନିକ ଲୋକେ କୁସଂସ୍କାର, ଅନ୍ଧ ବିଶ୍ୱାସ ଓ ଅଜ୍ଞାନତା, ବେକାରୀ ବୋଲି କହିଲେ । ତେଣୁ ନାରୀ ଅତୀତରେ ବଞ୍ଚାଇ ରଖିଥିବା ଶୁଭ ସଂସ୍କୃତିଗୁଡ଼ିକ ଛାଡ଼ି ଦେଇଅଛି । ଓଷା ପର୍ବ, ଉତ୍ସବ ଓ ଭାଗବତୀୟ ଆଧ୍ୟାତ୍ମିକ ଓ ନୈତିକ ପଥକୁ ସେ ଆଉ ପୂର୍ବପରି ମୂଲ୍ୟ ଦେଉ ନାହିଁ । ଜାଗ୍ରତ ଉତ୍କଳର ନାରୀ ଆଜି ପାଶ୍ଚାତ୍ୟ ବିଜ୍ଞାନର ପ୍ରଭାବ ଏବଂ ପାଶ୍ଚାତ୍ୟ ଚିନ୍ତା ଓ ଶିକ୍ଷା ଫଳରୁ ସମ୍ପୂର୍ଣ୍ଣରୂପେ ବସ୍ତୁ ତାନ୍ତ୍ରିକ ଓ ଅର୍ଥ ତାନ୍ତ୍ରିକ ହୋଇ ପଡ଼ିଅଛି । ତେଣୁ ଆମ ଦେଶର

ଚିରାଚରିତ ବୈଦିକ ସଂସ୍କାର ଓ ପରମ୍ପରା ଠାରୁ ଆଧୁନିକା ଜାଗ୍ରତ ନାରୀମାନେ ଆଜି ବିଚ୍ଛିନ୍ନ ହୋଇ ପଡ଼ିଛନ୍ତି। ଏହାର କାରଣ ସେମାନେ ନୁହନ୍ତି– ରାଜାନୁଗତ ଧର୍ମଃ; ରାଜନୀତି ଓ ରାଜ୍ୟ ସଂସ୍ଥା ଆଜି ସମାଜର ନିୟାମକ ହୋଇଅଛି । ଆଗେ ସମାଜ ଶାସନ ଓ ସମାଜ ସଂସ୍ଥା ସାମାଜିକ ବିଧାନ ସଂସ୍କୃତି ବା ଲୋକଚଳନି ଲୋକେ କରୁଥିଲେ, ଏବେ ତାହା ଭିତରେ ରାଷ୍ଟ୍ରନୀତିର ପ୍ରବେଶ ହେବାରୁ ସମାଜର ସଂସ୍କୃତି ଓ ଚଳନିର ପରିବର୍ତ୍ତିତ ରୂପ ଓ ଲୋକଙ୍କ ପରିବର୍ତ୍ତିତ ଚଳନ ଆମ୍ଭେମାନେ ସବୁ କ୍ଷେତ୍ରରେ ଦେଖିବାକୁ ପାଉଛୁ । ତେଣୁ ଆମ ପ୍ରଦେଶରେ ନାରୀ ଜୀବନ ଯେଉଁ ପ୍ରାଚୀନ ଶୁଭ ପରମ୍ପରା ଓ ପ୍ରାଚୀନ ଯୁଗର ନୈତିକ ବିଚାରଧାରା ଠାରୁ ଛିନ୍ନ ହୋଇ ଆସିଛି, ତାହାର ପ୍ରଭାବ ଆଜି ନାରୀ ଜୀବନରେ ଅବ୍ୟାହତ ହୋଇ ପଡ଼ିଅଛି । ଶ୍ରେଣୀହୀନ, ଶୋଷଣହୀନ, ଜାତିହୀନ, ବର୍ଣ୍ଣବିଭେଦହୀନ ସମାଜ ସଂସ୍ଥାର ଯେଉଁ କଳ୍ପନା ଦେଶରେ ହୋଇଛି, ସେହି ଆଦର୍ଶ ପଛରେ ଦୌଡ଼ିବା ପାଇଁ ହେଲେ ନାରୀର ଏ ଅବଶ୍ୟମ୍ଭାବୀ ପରିବର୍ତ୍ତିତ ପରିଣତି ହେବା ସ୍ୱାଭାବିକ । ସେହି କାରଣରୁ ନାରୀ ବସ୍ତୁତାନ୍ତ୍ରିକ ନହୋଇ ଆତ୍ମତାନ୍ତ୍ରିକ ହୋଇ ପାରିବ ନାହିଁ ।



(ଆସନ୍ତା କାଲି : ୯ମ ବର୍ଷ : ୧୨ଶ ସଂଖ୍ୟା ଡିସେମ୍ବର ୧୯୫୯ ପୃ ୫୧)

# ଉତ୍କଳରେ ନାରୀଜାତିର ବିବାହ ସମସ୍ୟା

ଥରେ 'ସମାଜ' ମାର୍ଫତରେ ମୁଁ ଜଣେ ବିଶିଷ୍ଟ ବିଦ୍ୱାନ ସରକାରୀ ଚାକରଙ୍କର ବିବାହ ଶୁଳ୍କ ଅତିମାତ୍ରାରେ ଆଦାୟ କରିଥିବା ସମ୍ବନ୍ଧରେ ପ୍ରତିବାଦ କରି କିଛି ଲେଖିଥିଲି । ମୋର ସେତେବେଳେ ଠିକ୍ ମନେ ହୋଇଥିଲା, ବଙ୍ଗଳା ଦେଶର ଲୋକେ ଯେପରି ପଣପ୍ରଥା ବିରୁଦ୍ଧରେ ଲେଖିଥାନ୍ତି, ପ୍ରତିବାଦ କରିଥାନ୍ତି, ପ୍ଲାଟଫର୍ମ ଲେକ୍‌ଚର ଦେଲାଭଳି ମୁଁ ସେହିପରି ଢଙ୍ଗରେ ଲେଖିଛି । ଯାହାଦ୍ୱାରା ଫଳ କିଛି ହେବନାହିଁ, ବରଂ ପ୍ରତିକ୍ରିୟା ବଢ଼ିଯିବ । ଠିକ୍ ଲକ୍ଷ୍ୟକରି ଆସୁଛି, ବିଦ୍ୟା ଓ ଚାକିରି ଥିବା ବରର ବଜାରରେ ଦାମ୍ ବଢ଼ିଯାଇଛି । ତାହା ପରେ ସେହି ପଣ୍ୟଗ୍ରାହୀ ଭଦ୍ରବ୍ୟକ୍ତିଙ୍କର ଆଦର୍ଶକୁ ସମାନ ଭାବରେ ଅନୁକରଣ କରିବାକୁ ଯାଇଛନ୍ତି, କେତେକ ବିବାହାର୍ଥୀ ଯୁବକ ଏବଂ ସେହି ଆଦର୍ଶକୁ ଅଦ୍ୟାପି ବରକର୍ତ୍ତାମାନେ ଆଦର୍ଶକରି ଥୋଇଦେଇଛନ୍ତି, ବରର ଗରମ ବଜାରରେ । ପଣଗ୍ରହଣ ଜିନିଷଟା ଯେ ଦୁଇ ତରଫରୁ ଖରାପ, ଏଥିରେ ସନ୍ଦେହ ନାହିଁ । ଏହି ପଣ ଗ୍ରହଣ ଦ୍ୱାରା ବର ଓ ତାଙ୍କର ପିତା ସମାଜରେ ଓ କନ୍ୟା ତରଫର ଲୋକଙ୍କ ଆଗରେ ତଥା କନ୍ୟା ଆଗରେ କେତେ ଛୋଟଲୋକି ଦେଖାନ୍ତି, କେତେ ସଂକୀର୍ଣ୍ଣତା ଓ ନୀଚତା ଦେଖାଇଥାନ୍ତି, ତାହା ସେହିମାନେ ବୁଝି ପାରିଥାନ୍ତି; କାରଣ ସେମାନଙ୍କ ଘରେ ତ କନ୍ୟାଦାୟ ଥାଏ । ପଣପ୍ରଥା ଆମ ଜାତିର ଗୋଟିଏ ଭୀଷଣ ଦୋଷ ହୋଇ ରହିଛି । ଭାରତରେ ହିନ୍ଦୁ ସମାଜକୁ ଛାଡ଼ିଦେଲେ, ମୁସଲମାନ, ଖ୍ରୀଷ୍ଟାନ୍, ଶିଖ୍ ଆଦି ଅନ୍ୟ କୌଣସି ସାମାଜରେ ଏହି ଜଘନ୍ୟ ପଣପ୍ରଥା ନାହିଁ । ହିନ୍ଦୁ ସମାଜ ଭିତରେ ଯେଉଁମାନେ ଆଜି ଭାରତରେ ବ୍ୟବସାୟ ବାଣିଜ୍ୟ ଦ୍ୱାରା ସମସ୍ତ ଧନ ଦୌଲତ ନିଜ କବ୍‌ଜା ଭିତରେ ରଖିଛନ୍ତି, ସେହି ଗୁଜୁରାଟୀ ଓ ମାରୁଆଡ଼ି ସଂପ୍ରଦାୟ ମଧ୍ୟରେ ଏହି ଜଘନ୍ୟ ବାଧ୍ୟବାଧକତାର ନିୟମ ନାହିଁ । ଆଜି ଏହି ପଣପ୍ରଥା ସ୍ତ୍ରୀ ଆଚାରପରି ଗୋଟିଏ ବିବାହ ପ୍ରଥାର ବିଶେଷ ଅଙ୍ଗ ରୂପରେ ନିର୍ଦ୍ଦିଷ୍ଟ ହୋଇ ସାରିଅଛି । ଏହାରି ହେତୁରୁ ଆଜି ଉତ୍କଳର ହିନ୍ଦୁ ସମାଜର ମଧ୍ୟବିତ୍ତ ଓ ଅପେକ୍ଷାକୃତ ନିମ୍ନତର ଶ୍ରେଣୀର କିଶୋରୀ ଓ ଯୁବତୀମାନଙ୍କର ମୂଲ୍ୟ ଓ ରାସ୍ତାର ଧୂଳିମୁଠାକ ସହିତ ସମାନ ହୋଇପଡ଼ିଛି । ଯାହାଙ୍କର ହୃଦୟଅଛି, ଚକ୍ଷୁ ଅଛି, ସେ ଦେଖିବେ ଯେ, ସମାଜରେ କନ୍ୟାପିତାର କି ଦାୟିତ୍ୱ, କି ଦୁଃଖ, କି ହତାଶା,

କି ଅନାଦର, କି ମନସ୍ତାପ ଏବଂ କନ୍ୟାର ମନରେ ଅପମାନର କି ତୀବ୍ର ଜ୍ୱାଳା । ଅବଶ୍ୟ ବଙ୍ଗଳା ଦେଶରେ କୁମାରୀମାନଙ୍କର କିରୋସିନି ତେଲ ଢାଳି ଆତ୍ମହତ୍ୟା କରିବାର କରୁଣ କାହାଣୀ ଆମ ଦେଶ କାଗଜରେ ଏଯାବତ୍ ବାହାରି ନାହିଁ ବୋଲି ଏ କଥା ମନେ କରିବା ଅସ୍ୱାଭାବିକ ଯେ, ଆଜି ହିନ୍ଦୁ ଗୃହସ୍ଥ ଘରର କନ୍ୟାମାନଙ୍କର ମନରେ ପିତାମାତାଙ୍କର ପଣ ଦେବାପାଇଁ ଯେ ବେଦନା, ଅକ୍ଷମତାର ଯେ ଦୁଃଖ, ସେହି ଦୁଃଖ ଓ ବେଦନାର ଛାୟାପାତ ସେମାନଙ୍କ ମନରେ ହୁଏନାହିଁ । କିନ୍ତୁ ଅଶିକ୍ଷିତା ଆର୍ଥିକ ଅବସ୍ଥିତିଶୂନ୍ୟ କନ୍ୟାମାନଙ୍କୁ ଏହି ଅପମାନ ଜ୍ୱାଳା ସହ୍ୟ କରିବାକୁ ପଡ଼େ । ପିତାମାତାଙ୍କର ଋଣଜଡ଼ିତ ଅବସ୍ଥାର ମନସ୍ତାପ ଅଙ୍ଗରେ ଲିଭାଇବାକୁ ହୁଏ । ପୁଣି ଏହା ସଙ୍ଗେ ସଙ୍ଗେ ଶାଶୁଘର ଲୋକଙ୍କର ମନ ଖୁସି କରିବାକୁ ଓ ସ୍ୱାମୀର ମନରକ୍ଷା କରି ମନୋହରଣ କରିବାର ଚେଷ୍ଟା ମଧ୍ୟ କରିବାକୁ ପଡ଼େ । କି ଜଘନ୍ୟ ! ମନୁଷ୍ୟ ତାର ଅପମାନ, ନାରୀତ୍ୱର ଅବମାନନା, କାହାକୁ ଆଉ କହିବାକୁ ହୁଏ ? ଆହୁରି ବିଡ଼ମ୍ବନାର କଥା ଏହି ଯେ, ଆଜିକାଲି କେତେ କନ୍ୟାପିତା ଭାବନ୍ତି, କନ୍ୟାକୁ ମାଟ୍ରିକତକ ପଢ଼ାଇଦେଲେ, କି ଗୀତବାଦ୍ୟ, ସିଲାଇ ଇତ୍ୟାଦି ଶିଖାଇ ଦେଲେ ବିବାହ ବେଳକୁ ସେମାନଙ୍କୁ ପଣରୁ ଅବ୍ୟାହତି ମିଳିବ ! କିନ୍ତୁ ହାୟ ! ବଙ୍ଗଳାରେ, ଆନ୍ଧ୍ରପ୍ରଦେଶରେ, ମରହଟ୍ଟା ଦେଶରେ ତାହା ହୋଇନାହିଁ । ବିହାରରେ ତାହା ହୋଇନାହିଁ । ସୁତରାଂ ଓଡ଼ିଶାରେ ତାହା ଆଶା କରିବା ଦୁରାଶା ମାତ୍ର ! କନ୍ୟା ଶିକ୍ଷିତା ହେଲେ ମାନ୍ଧାତା ଅମଳର ବର କର୍ତ୍ତାମାନେ ସେହି କନ୍ୟାକୁ ବୋହୂକରି ଆଣିବାକୁ ନାରାଜ ହୁଅନ୍ତି; ପୁଣି ନେଲେ ନିର୍ଦ୍ଦିଷ୍ଟ ହାରରେ ମୂଲ୍ୟ ନିଅନ୍ତି ! ସୁତରାଂ ଦେଖାଯାଉଛି, ସମାଜରେ ନାରୀଜନ୍ମ ଗୋଟାଏ ଅସାର ଜନ୍ମ ! ସମାଜରେ ନାରୀର ଦରକାର ଅତି ପରୋକ୍ଷ କଥା, ନିତ୍ୟାନ୍ତ ହେୟ ଓ ଅବହେଳାର ବସ୍ତୁ ନାରୀ । ଅର୍ଥର ଦାମରେ, ଯୌତୁକର ଦାମରେ, ଆସବାବର ଦାମରେ, ଜମିର ଦାମରେ, ଅଳଙ୍କାରର ଦାମରେ, ନାରୀର ଦାମର ବଟକରା ଉଠେ ଓ ପଡ଼େ ! ଆହୁରି ଚମତ୍କାର କଥା, ଯେପରି ପରାଧୀନ ଲୋକ ବେଶି ଅତ୍ୟାଚାରୀ ହୁଅନ୍ତି, ସେହିପରି ନାରୀମଧ୍ୟ ନିଜର ବିବାହ ଦିନର କଥା ମନେ କରି ନିଜର ପୁତ୍ରବଧୂ ନିର୍ବାଚନ ବେଳେ ଦରଦାମଟାକୁ ଆଗରେ ଥୋଇ ବିଚାର କରିଥାଏ ! ନିଜର କଥା ସେତେବେଳେ ମନେ ନଥାଏ । ସେହି କାଳର ବ୍ୟଥା, ବେଦନା ସେ ଦୁଃସ୍ୱପ୍ନ ତୁଲ୍ୟ ପାସୋରି ଦେଇ ବସେ ମହାଜନର ଆସନରେ । କନ୍ୟାକର୍ତ୍ତା ଖାତକ ଭାବରେ ସେଠାରେ ସୁଧମୂଳ କମାକମିର ପ୍ରସ୍ତାବ ନେଇ ପେସ୍‌କରେ ଏହି କଥା ଭାବି ଯେ, କାଳେ ଅବା ବରମାତାଙ୍କ ମନରେ ଟିକେ ଦୟା ପହୁଞ୍ଚିବ ! କଥାରେ ଅଛି, ଯେଉଁ ବାଉଁଶ ସେଡ଼େ ପୋଲ । ସେହି ନୀତିରେ ଧନୀ

ଘରେ ବେଶି ପଣର ଚର୍ଚ୍ଚା । ପଣ ଗ୍ରହଣକୁ ଧନୀ ଲୋକେ ନିଜର ଆଭିଜାତ୍ୟର ଏକ ଅଚ୍ଛେଦ୍ୟ ଅଙ୍ଗବୋଲି ମଣିଥାନ୍ତି ! କି ଭ୍ରମ ଧାରଣା ! ଆମ ଦେଶରେ ଘର ଜ୍ୱାଇଁଆ ହେବାକୁ ବରପାତ୍ରମାନେ ଅପମାନଜନକ ଭାବିଥାନ୍ତି; କିନ୍ତୁ କନ୍ୟାପିତାଙ୍କଠାରୁ ବରାଦି ଟଙ୍କା ଯେତେବେଳେ ସେମାନଙ୍କୁ ବିକ୍ରି କରି ସେମାନଙ୍କ ପିତାମାନେ ଗ୍ରହଣ କରନ୍ତି, ସେତେବେଳେ ସେମାନେ ଅମ୍ଳାନ ବଦନରେ ତାହାକୁ ଭାଗ୍ୟର ଦାନବୋଲି ମଣିଥାନ୍ତି । କେହି କେହି କନ୍ୟା ପିତାଙ୍କର ଦତ୍ତ ପଢ଼ାଖର୍ଚ୍ଚ ନେବାକୁ ନିଜର ଦାବି ବୋଲି ଭାବିଥାନ୍ତି । ଏହା ସଙ୍ଗେ ସଙ୍ଗେ ସେମାନେ ପୁଣି ଭାବିଥାନ୍ତି, ସେମାନେ କନ୍ୟାକୁ ବିବାହ କରିବା ଦ୍ୱାରା କନ୍ୟାକୁ ଓ ତାର ପିତାକୁ ଅନୁଗୃହୀତ କରିଅଛନ୍ତି ! ବେଶ୍ ଯୁକ୍ତିସଙ୍ଗତ ମନୋବୃତ୍ତି କିନ୍ତୁ ! କେତେକ ଭାବି ବରପାତ୍ର କହନ୍ତି, ଶ୍ୱଶୁର ମହାଶୟଙ୍କର ସଂପତ୍ତି ଯେତେବେଳେ ତାଙ୍କ ପୁଅ ପାଇବେ, ଝିଅଙ୍କର ତହିଁରେ ନୀତି ଅନୁସାରେ ଭାଗ ରହିବା ଉଚିତ୍ ! କିନ୍ତୁ ପୁଅର ଦାୟିତ୍ୱ ବାପ ମାଆ ଓ ପରିବାରବର୍ଗଙ୍କ ପ୍ରତି ଯାହା, ଜୁଆଇଁଙ୍କର କ'ଣ ତାହା ? ଏକଥା ଟିକେ ଭାବିବା ଉଚିତ୍ ନୁହେଁ କି ? ଅନ୍ୟର ଭଉଣୀକୁ ବିବାହ କରିବାବେଳେ ପଣପ୍ରଥା ପ୍ରତି ଯେଉଁମାନେ ବଧିର ହୁଅନ୍ତି, ନିଜର ଭଉଣୀକୁ ବିବାହ ଦେଲାବେଳେ ପଣପ୍ରଥା କଥା ଉଠିଲେ ସେମାନଙ୍କର ଶୋଚନା ଓ ସମାଲୋଚନାର ଆଦ୍ୟନ୍ତ ରହେନାହିଁ ।

ବିଚାରଶୀଳତାର ମହତ୍ ଦୃଷ୍ଟାନ୍ତ ! ଆଗେ ଉତ୍କଳରେ ଏହି ପଣପ୍ରଥା ନଥିଲା । କନ୍ୟାପିତା ଇଚ୍ଛାମତେ କନ୍ୟାକୁ ଯୌତୁକ ଦେଉଥିଲେ । ଏବେ 'ରାସ୍ତାଖର୍ଚ୍ଚ' ବୋଲି ବିବାହ ବେଳେ ଯେଉଁ କଥାଟା ଉଠେ, ତାହାର ଅର୍ଥ କଣ ପଣଗ୍ରହଣ, ନା ଦି ତରଫର ଖର୍ଚ୍ଚା ଦେଇ କନ୍ୟାପିତାଙ୍କର କନ୍ୟା ସଂପ୍ରଦାନ କରିବା, ବୁଝିବା କଠିନ ! କାରଣ, ଖଣ୍ଡାଏତ ପ୍ରଭୃତି କୁଳର ଏହି କୌଳିନ୍ୟ ପ୍ରଥା ଆଧୁନିକ ବ୍ରାହ୍ମଣ ସମାଜକୁ ମଧ୍ୟ ସଂକ୍ରମିତ ହୋଇ ସେମାନଙ୍କୁ ଆକ୍ରାନ୍ତ କରିଥିବାର ପ୍ରମାଣ ଭୂରି ଭୂରି । ସମାଜରେ ମନ୍ଦ ଅନୁକରଣ କରିବା ଯେତେ ସହଜ, ଭଲ ତେତେ ନୁହେଁ । ବ୍ରାହ୍ମଣମାନେ ମଧ୍ୟ ଆଗେ କନ୍ୟା କିଣୁଥିଲେ, ଏବେ ବର ବିକ୍ରୟ ବଜାରରେ ହାଜିର ହେଲେଣି । ଏଥିରୁ ସମାଜର ଉନ୍ନତି ବେଶ୍ ସ୍ୱଷ୍ଟ ଭାବରେ ଜଣାପଡୁଛି !!!

ଏହିସବୁ ଘଟଣାରେ ବଙ୍ଗ ସମାଜ ପୀଡ଼ିତ ହୋଇ ପଣପ୍ରଥା ରହିତ କରିବାକୁ ଘୋର ଆନ୍ଦୋଳନ କରୁଅଛି । ହିନ୍ଦୁ ମହାସଭାରେ ଏହି ସମ୍ବନ୍ଧରେ ଆଲୋଚନା ହୋଇ ପଣପ୍ରଥା ବିରୁଦ୍ଧରେ ବହୁ ମତରେ ପ୍ରସ୍ତାବ ନିର୍ଦ୍ଧାରିତ ହୋଇଛି; କିନ୍ତୁ ତହିଁରେ ରୋଗ ନିର୍ମୂଳ ନହେବାରୁ ଏହି ପ୍ରଥା ଉଠାଇବାକୁ ଆଇନ କରିନେବା ବିଷୟରେ ବଙ୍ଗ ଅଗ୍ରସର

ହେଉଅଛି । କଥାରେ କହନ୍ତି, ''ଏ ପାଖ ବରଡ଼ା ହସୁଛି, ସେ ପାଖ ଦରଡ଼ା ଥାଇ ବୋଲୁଛି ମୋ ଦିନକାଳ ଆସୁଛି ।'' ଇତିହାସରେ ପୁନରାବୃତ୍ତି ଜଗତରେ ଘଟୁଛି । ଏହି ନୀତିରେ ଦେଖିଲେ ଏ କଥା ସହଜରେ ଅନୁମେୟ ଯେ, ସାରଦା ଆଇନ ଓ ସହିବା ସମ୍ମତି ଆଇନ, ବିବାହ-ବିଚ୍ଛେଦ ଆଇନ, ବିଧବା ବିବାହ ଆଇନ, ସମ୍ପତ୍ତି ଅଧିକାର ଆଇନ ହେଲାଭଳି ଏ ସମ୍ବନ୍ଧରେ ମଧ୍ୟ ଓଡ଼ିଶା ସରକାରଙ୍କର ସହାୟତାଦ୍ୱାରା ଆଇନ କରି ଏହି ପଣପ୍ରଥାର ଦାତା ଓ ଗ୍ରହୀତା ଉଭୟଙ୍କ ପାଇଁ ଦଣ୍ଡ ବିଧାନ କରିବାକୁଇ ବାଧ୍ୟ କରାଯିବ ।

ବେଳେ ବେଳେ ଇଚ୍ଛା ହୁଏ, ଏହି ପଣଗ୍ରହୀତାମାନଙ୍କୁ ଦାଣ୍ଡରେ ଲଙ୍ଗଳା କରି ଥୋଇ ସୂର୍ଯ୍ୟଙ୍କ ପ୍ରଖର ଆଲୋକ ତଳେ exposer ଦେବାକୁ । ସେମାନଙ୍କର ବକ୍ତୃତା, ତର୍ଜନଗର୍ଜନ ମୂଳକ ଆଦର୍ଶବାଦ ତଳେ କି ଲୋଭ, କି ଅସାଧୁତା ତଥା ଲଜ୍ଜାଶୂନ୍ୟତା ଆତ୍ମଗୋପନ କରି ରହିଥାଏ । ତାହା ସମ୍ବନ୍ଧରେ ଲୋକସାଧାରଣଙ୍କୁ ସଚେତନ କରାଇଦେଇ ସେମାନଙ୍କ ଉନ୍ନତ ମସ୍ତକ ଧୂଳିଲୁଣ୍ଠିତ କ୍‌ରି ଜନସାଧାରଣଙ୍କର ଚକ୍ଷୁରେ ନିହାତ୍ ଦି'କଡ଼ିଆ ଓ ଅବଜ୍ଞାର ପାତ୍ରରୂପେ ଥୋଇ ଦେବା ! ଏହି ହେଉଛି କିନ୍ତୁ ବିଷଲ୍ୟ-ବିଷମୌଷଧଂ ଅନ୍ୟ କିଛି ନୁହେଁ ।



('ସହକାର' ୧୩୪୪ ସାଲ, ୧୯୩୭ ମସିହା ପୃ-୪୪୬)

# ମନୁସଂହିତାରେ ଭାରତୀୟ ବିବାହ ସଂସ୍କୃତି

ନିଦ୍ରିତା, ମଦ୍ୟପାନ ବିହ୍ୱଳା ଅଥବା ଉନ୍ମତ୍ତା ନାରୀକୁ ନିର୍ଜନରେ ଗମନ କରିବା ମନୁ ପୈଶାଚ ବିବାହ ବୋଲି ନାମ ଦେଇଛନ୍ତି । ହିନ୍ଦୁ ଧର୍ମରେ ଯେଉଁ ୮ ପ୍ରକାର ବିବାହ ବିଧି ରହିଛି, ଏପରି ବିବାହ ଅତିଶୟ ପାପଜନକ ଓ ଅଧମ । ବ୍ରାହ୍ମଣମାନଙ୍କ ବିବାହରେ ଜଳଦ୍ୱାରା କନ୍ୟାଦାନହିଁ ପ୍ରଶସ୍ତ । କିନ୍ତୁ କ୍ଷତ୍ରିୟାଦି ବର୍ଣ୍ଣମାନଙ୍କ ପକ୍ଷରେ ପରସ୍ପର ଇଚ୍ଛାନୁସାରେ କେବଳ ବାଗଦାନ ଦ୍ୱାରା ମଧ୍ୟ କନ୍ୟାଦାନ ହୋଇପାରେ । ଜଳଦ୍ୱାରା ପ୍ରଦାନର ନିୟମ ନାହିଁ ।

ଏହିସବୁ ବିବାହ ମଧ୍ୟରେ ଯାହାର ଯେଉଁ ଗୁଣ ତାହା ମନୁ ଲେଖିଛନ୍ତି– ହେ ବିପ୍ରଗଣ; ମୁଁ ସେହି ସମୁଦାୟ ସମ୍ୟକ ବର୍ଣ୍ଣନା କରୁଛି, ଆପଣମାନେ ଶ୍ରବଣ କରନ୍ତୁ । ବ୍ରାହ୍ମ ବିବାହରେ ବିବାହିତା ସ୍ତ୍ରୀ ଗର୍ଭରେ ଯେଉଁ ସନ୍ତାନ ଜନ୍ମ ନିଏ, ସେ ଯଦି ଧାର୍ମିକ ହୁଏ, ତେବେ ସେହି ପୁତ୍ର ପିତାମହାଦି ଦଶପୁରୁଷ ଓ ପୁତ୍ରାପୌତ୍ରାଦି ଦଶପୁରୁଷ ଏବଂ ସ୍ୱୟଂ ଏହି ଏକବିଂଶତି ପୁରୁଷକୁ ପାପରୁ ମୁକ୍ତ କରେ ।

ଦୈବ ବିବାହରେ ବିବାହିତା ସ୍ତ୍ରୀର ଗର୍ଭଜାତ ସନ୍ତାନ ସଦନୁଷ୍ଠାନଶୀଳ ହେଲେ, ସେ ପୂର୍ବ ପିତ୍ରାଦି ସାତପୁରୁଷ ଓ ନିଜକୁ ଆର୍ଯ୍ୟ ବିବାହରୁ ଉତ୍ପନ୍ନ ପୁତ୍ରପିତ୍ରାଦି ତିନିପୁରୁଷ, ପୁତ୍ରାଦି ତିନିପୁରୁଷ ଓ ନିଜକୁ, ପୁଣି ପ୍ରାଜାପାତ୍ୟ ବିବାହୋତ୍ପନ୍ନ ପୁତ୍ରପିତ୍ରାଦି ଛ'ପୁରୁଷ, ପୁତ୍ରାଦି ଛ'ପୁରୁଷ ଏବଂ ନିଜକୁ ପାପମୁକ୍ତ କରେ ।

ବ୍ରହ୍ମ, ଦୈବ, ଆର୍ଯ୍ୟ, ପ୍ରାଜାପତ୍ୟ ଏହି ଚାରି ବିବାହରେ ବିବାହିତା ସ୍ତ୍ରୀର ଗର୍ଭରୁ ଯେଉଁ ସନ୍ତାନ ଜନ୍ମେ ସେମାନେ ବ୍ରହ୍ମତେଜଃ ସମ୍ପନ୍ନ ଓ ସାଧୁଜନମାନଙ୍କର ମାନନୀୟ ହୁଏ । ସେମାନେ ରୂପବାନ, ଦୟାପ୍ରଭୃତି ସାତ୍ତ୍ୱିକ ଗୁଣଯୁକ୍ତ, ବହୁ ଧନାଢ଼୍ୟ ଯଶସ୍ୱୀ, ପର୍ଯ୍ୟାପ୍ତ ଭୋଗବାନ ଓ ଧାର୍ମିକ ହୁଅନ୍ତି ଏବଂ ଶତବର୍ଷ ବଞ୍ଚି ରହନ୍ତି । ଅବଶିଷ୍ଟ ଆଉ ୪ ପ୍ରକାର ବିବାହରେ ଅର୍ଥାତ୍ ଆସୁର ଗାନ୍ଧର୍ବ ରାକ୍ଷସ ଓ ପୈଶାଚ ବିବାହରେ ବିବାହିତା ସ୍ତ୍ରୀ ଗର୍ଭରେ କ୍ରୁରକର୍ମା ମିଥ୍ୟାବାଦୀ ବେଦ ଓ ଯଜ୍ଞଦ୍ୱେଷୀ ପୁତ୍ରସବୁ ଜନ୍ମନ୍ତି ।

ଅନିନ୍ଦିତା ନାରୀ ବିବାହରେ ଅନିନ୍ଦିତ ସନ୍ତାନ ଓ ନିନ୍ଦିତା ନାରୀକୁ ବିବାହ କଲେ ନିନ୍ଦିତ ସନ୍ତାନ ଜନ୍ମେ । ଅତଏବ ଅନିନ୍ଦିତା ବିବାହରେ ସମ୍ଭବ ନିନ୍ଦିତ ବିବାହ କରିବ ନାହିଁ । ଶାସ୍ତ୍ରରେ ସବର୍ଣ୍ଣା ନାରୀକୁ ବିବାହ କରିବାକୁ ଶାସ୍ତ୍ର ଉପଦେଶ ଦେଇଛନ୍ତି । ଅସବର୍ଣ୍ଣ ନାରୀକୁ

ବିବାହକଲେ ବକ୍ଷମାଣ ବିଧିହିଁ ପ୍ରଶସ୍ତ । ଯଦି ବ୍ରାହ୍ମଣ କ୍ଷତ୍ରିୟକୁ ବିବାହ କରେ ତେବେ ବ୍ରାହ୍ମଣ ହସ୍ତଧୃତ ଶରଗୁଡ଼ିକ ଗ୍ରହଣ କରିବ। ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟଙ୍କୁ ବିବାହ କଲେ ବୈଶ୍ୟାବରଧୃତ ଗୋତାରଣ ଯଷ୍ଟିର ଗୋଟିଏ ପାଖ ଗ୍ରହଣ କରିବ। ବ୍ରାହ୍ମଣ, କ୍ଷତ୍ରିୟ ବୈଶ୍ୟ ଶୁଦ୍ରାକୁ ବିବାହ କଲେ, ଶୁଦ୍ରା ବ୍ରାହ୍ମଣାଦି ପରିହିତ ବସ୍ତର ଦଶା ଗ୍ରହଣ କରିବେ ।

ଋତୁକାଳରେ ଅର୍ଥାତ୍ ରଜୋ ଦର୍ଶନରେ ବିଧି ଷୋଡ଼ଶ ରାତ୍ରି ମଧରେ ଅମାବାସ୍ୟା, ପୂର୍ଣ୍ଣିମା, ଅଷ୍ଟମୀ, ଚତୁର୍ଦ୍ଦଶୀ ଓ ସଂକ୍ରାନ୍ତି; ଏହି ପଞ୍ଚପର୍ବ ତ୍ୟାଗକରି ଅବଶ୍ୟ ଭାର୍ଯ୍ୟାଗମନ କରିବ । କଦାଚ ଋତୁକାଳ ଉଲଙ୍ଘନ କରିବ ନାହିଁ । ଭାର୍ଯ୍ୟା ପ୍ରୀତି ପାଇଁ ଋତୁକାଳ ଛଡ଼ା ଅନ୍ୟ ସମୟରେ ମଧ ସ୍ତ୍ରୀ ଗମନ କରିପାରିବ । କିନ୍ତୁ ସର୍ବ ଅବସ୍ଥାରେ ପର୍ବଦିନ ବର୍ଜନୀୟ ।

ନାରୀମାନଙ୍କର ଋତୁକାଳ ଷୋଡ଼ଶ ଦିନ ଜାଣିବ । ତା ମଧରେ ପ୍ରଥମ ଚାରିଦିନ ରକ୍ତ ନିଃସାରଣ ହୁଏ ବୋଲି ସହବାସ ଅତ୍ୟନ୍ତ ନିନ୍ଦନୀୟ ହୁଏ । ଏହି ଷୋଡ଼ଶ ରାତ୍ରି ମଧରେ ପ୍ରଥମ ଚାରିରାତ୍ରି ଓ ଏକାଦଶ ଏବଂ ତ୍ରୟୋଦଶ ରାତ୍ରି ଏହି ଛ'ରାତ୍ରି ସ୍ତ୍ରୀ ଗମନ ନିଷିଦ୍ଧ ଅଟେ । ଅବଶିଷ୍ଟ ଦଶରାତ୍ରି ସ୍ତ୍ରୀ ଗମନ ପ୍ରଶସ୍ତ । ଉକ୍ତ ଦଶରାତ୍ରି ମଧରେ ଛଅ, ଆଠ, ଦଶ ପ୍ରଭୃତି ଯୁଗ୍ମ ରାତିରେ ଗର୍ଭହେଲେ ନାରୀ ପୁତ୍ରବତୀ ହୁଏ ଓ ପାଞ୍ଚ ସାତ ପ୍ରଭୃତି ଅଯୁଗ୍ମରାତ୍ରିରେ ଗର୍ଭହେଲେ କନ୍ୟା ଜନ୍ମେ । ଅତଏବ ପୁତ୍ରକାମୀ ବ୍ୟକ୍ତି ଋତୁକାଳରେ ଯୁଗ୍ମ ରାତ୍ରିରେ ସ୍ତ୍ରୀ ଗମନ କରିବ । ପୁରୁଷର ବୀର୍ଯ୍ୟାଧିକ ହେଲେ ଯୁଗ୍ମରାତ୍ରିରେ କନ୍ୟା ବି ଜନ୍ମେ । ଯଦି ସ୍ତ୍ରୀ ଓ ପୁରୁଷ ଏହି ଉଭୟର ବୀର୍ଯ୍ୟ ସମାନ ହେଲେ କ୍ଳୀବ ବା ଯମଜ ପୁତ୍ର କନ୍ୟା ହୁଏ । ପୁଣି ଉଭୟ ବୀର୍ଯ୍ୟ ଅସାର ଅଳ୍ପ ହେଲେ ଗର୍ଭ ହୁଏନାହିଁ । ଯେ ନିନ୍ଦିତ ଛ ରାତି ଏବଂ ଅନିନ୍ଦିତ ଦଶରାତ୍ରି ମଧରେ ଯେ କୌଣସି ଅଷ୍ଟରାତି ଏହି ଚତୁର୍ଦ୍ଦଶ ରାତ୍ରି ତ୍ୟାଗକରି ଅବଶିଷ୍ଟ ପର୍ବ ବର୍ଜିତ ଦୁଇ ରାତ୍ରିରେ ସ୍ତ୍ରୀ ଗମନ କରନ୍ତି, ସେ ଯେକୌଣସି ଆଶ୍ରମବାସୀ ହୁଅନ୍ତୁ ନା କାହିଁକି ତାଙ୍କର ବ୍ରହ୍ମଚର୍ଯ୍ୟର କୌଣସି ହାନୀ ହୁଏନାହିଁ ।

ଯେଉଁ କାଳରେ ଭାରତବାସୀ ବେଦଶାସିତ ସମାଜ ଜୀବନର ନିୟମ ଶୃଙ୍ଖଳାକୁ ମାନି ଚଳୁଥିଲେ, ସେ କାଳରେ ଅଳ୍ପବୟସ୍କା ନାରୀ ଓ ନରମାନେ ରୋଗାକ୍ରାନ୍ତ ହୋଇ ଅକାଳମୃତ୍ୟୁର ଅଧୀନ ହେଉ ନଥିଲେ । ଏବେ ଜଡ଼ବିଜ୍ଞାନ କବଳରେ ପଡ଼ି ପାଶ୍ଚାତ୍ୟ ଭାବଧାରାକୁ ଅନୁକରଣ କରିବାକୁ ଆମ ସମାଜର ଯୌବନ ଜିଜ୍ଞାସା ଓ ଯୌନ ଜୀବନର ବିଧି ନିଷେଧକୁ କେହି ମୂଲ୍ୟ ଦେଉ ନାହାନ୍ତି, ତାର କାରଣସ୍ୱରୂପ ଲୋକସଂଖ୍ୟା ବୃଦ୍ଧି ଦୁର୍ବଳ, ରୋଗୀ ନର ନାରୀରେ ଆମ ସମାଜ ଭରି ଉଠୁଅଛି । ଏପରି କେଉଁ ଘର ନାହିଁ ଯେଉଁଠି ରୁଗ୍‌ଣ ବିକଳାଙ୍ଗ ଦୁର୍ବଳ ଶିଶୁ ଓ ପ୍ରସୂତି ରୋଗିଣୀ ଦେଖିବାକୁ ମିଳେନାହିଁ । ସଚରାଚର ପ୍ରତି ପରିବାରରେ ଦେଖିବାକୁ ମିଳନ୍ତି । କେବଳ ବେଜୋଡ଼ ଦମ୍ପତ୍ତି ଓ ସେହିମାନଙ୍କର ଶୁଷ୍କରସାଭିନୟର କରୁଣ ଦୃଶ୍ୟ ଦେଖିବାକୁ ମିଳେ ।

ଆଜି ଦେଶେ ଦେଶେ ପୁଣି ଓଡ଼ିଶାର ଝିଅମାଳ । ଉତ୍କଳମାତା ଗଳାରେ ଲମ୍ବିଛନ୍ତି ଓ ବେକାରୀ ପଙ୍ଗୁଦେହ ମସ୍ତିଷ୍କହୀନ ପୁଅ ଗୁରିକ ସିନେମାରେ ଦେଖା ବାଳ କଲି ଦାଢ଼ି ନିଶ ରଖି ଗହଣା ଲଗାଇ ସିନ୍ଦୁର ପାଉଡର କଳାହାର ପିନ୍ଧି କଳା ପାଉଡର ଲଗାଇ ସଲୋୟାରୀ ନଳୀପେଣ୍ଟ ଓ ଗେଞ୍ଜି ହାଉ କମ୍ପାନୀ ଛୁଞ୍ଚମୁହାଁ ଯୋତା ଲଗାଇ ତ୍ରିଭଙ୍ଗୀ ଠାଣିରେ ଛକମାନଙ୍କରେ ଦୋକାନରେ ଠିଆହୋଇ ପାନ ବିଡ଼ି କିଣୁଛନ୍ତି । ଗାଲ, ଆଖି ରକ୍ତହୀନ– ହାଡ଼ ଦିଶୁଅଛି । ବିଲାତି ସଭ୍ୟତାର ନିଶାଛାଡ଼ିବାକୁ ବେଳ ଅଳ୍ପ ରହିଲା । ପୁଣି ଏହି ଯୁବକମାନେ ନାଟ ଦେଖି ଉପାସ ରହି ପଟେ ରୁଟି ଖାଇ ଶୋଉଛନ୍ତି । ମନୁଙ୍କ ସଭ୍ୟତା ସଂସ୍କୃତିଗୁଡ଼ାକ 'ସ୍କାଇଲାବ' ଯୁଗରେ ଅଚଳ ଟଙ୍କା । ପୁରୁଣା ବାଟଛାଡ଼ି ପୁଅଟିଏ ନୂଆ ଅମଡ଼ାବାଟରେ ଚାଲି ଚାଲି ଯେଉଁ ବଣରେ ପଶିଛନ୍ତି, ସେହି ଅମୁହାଁ ବଣରେ ପଶିବା ବାଟ ଅଛି, ବାହାରିବାର ବାଟ ନାହିଁ । ବୁଡ଼ିଯିବା ଗୋଡ଼ ତଳକୁ-ତଳକୁ । ଅମୁହାଁ ଦେଉଳରେ ଦେବତା ନାହାଁନ୍ତି । କେବଳ ଢିପ ରହିଛି । ଶୂନ୍ୟ ଦେଉଳରେ ପଶିଲେ କେଉଁ ଦେବଦେବୀ କଲ୍ୟାଣ କରିବେ ?



# ଭାରତର ଗ୍ରାମୋଦ୍ୟୋଗ ଓ ଗାନ୍ଧିଜୀଙ୍କ ସ୍ୱପ୍ନ

ଗାନ୍ଧି ମହାତ୍ମା ଖଦୀ ଓ ଗ୍ରାମୋଦ୍ୟୋଗ ଚରଖା, ନିଶାବର୍ଜନ ଅସ୍ପୃଶ୍ୟତା ବର୍ଜନ ପ୍ରଭୃତି କେତୋଟି କାର୍ଯ୍ୟକ୍ରମକୁ ଭାରତର ସ୍ୱାଧୀନତା ଅର୍ଜନର ପ୍ରଧାନ ଉପାୟ ବା ଅସ୍ତ୍ର ବୋଲି ଦେଶବାସୀଙ୍କୁ ୧୯୨୧ ସାଲର ଅସହଯୋଗ ଆନ୍ଦୋଳନ ଆରମ୍ଭ କରିବା ଆଗରୁ କହିଥିଲେ । ତେଣୁ ଏକ କୋଟି ଟଙ୍କା ତିଳକ ସ୍ୱରାଜ୍ୟ ଫଣ୍ଡ ପାଇଁ ଅସୁଲ ହୋଇଗଲା ଓ ଘରେ ଘରେ ଚରଖା ଚାଲିବାରୁ ଲୋକେ ଖଦୀ ପିନ୍ଧିଲେ । ୱାର୍ଦ୍ଧା ତୁଳା ଆସି ଓଡ଼ିଶାରେ ଓଡ଼ିଶାର ଖଦୀ ଅନୁଷ୍ଠାନମାନଙ୍କୁ ଦିଆଗଲା । ଗ୍ରାମେ ଗ୍ରାମେ ସୂତାକଟା ଚାଲିଲା । ତାହାସବୁ ଦେଶୀ ତନ୍ତୀମାନେ ବୁଣି ଖଦଡ଼ ଦୋକାନକୁ ପଠାଇଲେ । ପ୍ରତିବର୍ଷକୁ ଗୋଟିଏ ସପ୍ତାହ ଖଦୀ କମ୍ ଦରରେ ଆମେମାନେ ସହରରେ ବିକିଲୁ ଓ କର୍ମୀମାନେ ଗାଁ ମାନଙ୍କରେ ଖଦଡ଼ ପ୍ରଚାର କରିବାକୁ ଲାଗିଲେ । ଓକିଲ ଓକିଲାତି ଛାଡ଼ିଲେ, ଛାତ୍ର ସ୍କୁଲ କଲେଜ ଛାଡ଼ିଲେ । କେତେକ ସରକାରୀ ଚାକିରିଆ ଚାକିରି ଛାଡ଼ିଲେ । ନାରୀମାନେ ଘରଛାଡ଼ି ଦେଶର ଏହି ଗଠନକାମମାନଙ୍କରେ ନିଯୁକ୍ତ ହେଲେ । ସୂତାକଟାଳୀମାନେ ଥିଲେ ନାରୀ । ଅଳ୍ପ ପୁରୁଷ ସୂତା କାଟୁଥିଲେ । ରାସ୍ତାରେ ବଜାରରେ ମଧ ଲୋକେ ତାକୁଡ଼ି ଧରି ସୂତା କାଟିବାର ଦେଖା ଯାଉଥିଲା । ଲୋକେ ଟ୍ରେନରେ ମଧ ଗଲାବେଳେ ସୂତା କାଟୁଥିଲେ । ପରେ ଅବଶ୍ୟ ସଂଗରେ ନେବାପାଇଁ ଚରଖା ବାକ୍ସ ବାହାରିଥିଲା । ଚରଖା ତାକୁଲିରେ ସୂତା କାଟିବା ହୋଇଗଲା ଏକ ଫେସନ । ସେ ସମୟରେ ବହୁ ନରନାରୀ ଖଦିକୁ ନିୟମିତ ଭାବେ ପିନ୍ଧୁଥିଲେ । ଏବକାଳକୁ ଯେପରି ନାନାଜାତିର— ରଙ୍ଗର ନାନା ପ୍ରକାର ଲୁଗାପଟା ଶାଢ଼ୀ ବ୍ଲାଉସ କନା ଓ ପୋଷାକ କନା ବାହାରିଛି, ସେ ଯୁଗରେ ସେ ସବୁ କେହି କଳ୍ପନା କରିନଥିଲେ । ଭୟେଲ, ଟେରିଲିନ, ଡେକରନ, ନାଇଲନ୍ ପ୍ରଭୃତି ଲୁଗାର ଆବିଷ୍କାର କରାହୋଇନଥିଲା । ଗାନ୍ଧିଜୀ ଭାରତବାସୀଙ୍କୁ ବାରମ୍ବାର କହୁଥିଲେ ଲୁଗାପଟାରେ ତୁମେ ସ୍ୱାଧୀନ ଓ ଆତ୍ମନିର୍ଭରଶୀଳ ହୁଅ । ବିଲାତଲୋକ ଗରିବ ଭାରତକୁ ମାଞ୍ଚେଷ୍ଟର ଲୁଗାକଳରୁ ୮୦ କୋଟି ଟଙ୍କାର ଲୁଗା ପଠାଉଛନ୍ତି । ଯେଉଁ ଗରିବ ଭାରତବାସୀଙ୍କ ଦିନକୁ ହାରାହାରି [illegible] ରୋଜଗାର, ଯେଉଁ ଭାରତର ଲୋକେ ଶୁଖିଲାପତ୍ର ଗୋଟାଇ ବିକନ୍ତି ଓ ଗୃହଶୂନ୍ୟ, ସମ୍ବଳହୀନ, ନିଃସହାୟ ଅରକ୍ଷକ ହୋଇ, ଶିକ୍ଷା ସ୍ୱାସ୍ଥ୍ୟବିହୀନ ହୋଇ ଭାଗ୍ୟକୁ

ଆଦରି ସବୁ ଅସୁବିଧା ଖାଦ୍ୟ ବସ୍ତ୍ରହୀନ ହୋଇ ପଡ଼ିଛନ୍ତି । ଚରଖାରେ ସୂତାକାଟି ଲୁଗାପିନ୍ଧିଲେ ସେମାନଙ୍କ ହାତକୁ ଯେଉଁ ମଜୁରୀ ଟଙ୍କା ଆସିବ ତହିଁରେ ସେମାନେ ଚଳିଯିବେ । ଦୁଇଓଳି ପେଟ ପୂରାଇ ଭାରତଲୋକେ ଅର୍ଥାଭାବରୁ ଖାଇ ପାରନ୍ତି ନାହିଁ, ଗରିବଲୋକେ ଏହି କୁଟୁମ୍ବ ପୋଷଣ ଦୁଃଖ କିଛିକ୍ଷଣ ପାଇଁ ଭୁଲି ସାଂସାରିକ ଜୀବନଯୁଦ୍ଧରେ ପରାଜିତ ହେବାର ଗ୍ଲାନିରୁ ଅବ୍ୟାହତି ପାଇବା ପାଇଁ ମଦ ଅଫିମ ଗଞ୍ଜେଇ ଖା'ନ୍ତି । ଦେଶର ଏହି ଦରିଦ୍ର ଅବସ୍ଥା ଇଂରେଜ ସରକାର ଭାରତରେ ବାଣିଜ୍ୟ ବୃତ୍ତି କରି ଲୋକଙ୍କ ରକ୍ତ ଶୋଷିବାରୁ ମହାତ୍ମାଗାନ୍ଧିଙ୍କ ହୃଦୟ ଆକୁଳରେ କାନ୍ଦି ଉଠିଥିଲା । ଭାରତରେ ୪୫ କୋଟି ଲୋକଙ୍କ ସ୍ୱାଧୀନତା କୌଶଳରେ ଅପହରଣ କରି ୨୦୦ ବର୍ଷଧରି ଇଂରେଜ ଭାରତର ରକ୍ତ ଶୋଷି ଦେଶର ଆତ୍ମାକୁ ସାରଶୂନ୍ୟ ଓ ସାହସ ହୀନ କରିଦେଇଥିଲା । ତେଣୁ ବିଲାତି ଲୁଗା ପୋଡ଼ିବା, ବିଲାତି ବିଦେଶୀ ଜିନିଷ ବର୍ଜନ କରିବା ଓ ବସ୍ତ୍ର ଶିଳ୍ପରେ ଭାରତକୁ ଆତ୍ମନିର୍ଭରଶୀଳ କରିବା ଥିଲା ଗାନ୍ଧୀ ମହାତ୍ମାଙ୍କ ସ୍ୱରାଜ୍ୟର ପରିକଳ୍ପନା ।

ଗୋଟିଏ ଜାତି ଯଦି ଭାତ ଲୁଗାରେ ସ୍ୱାବଲମ୍ବୀ ନହୁଏ, ତେବେ ତାର ପରଶାସନ କଳରୁ ମୁକ୍ତିଲାଭ କରିବା ଅସମ୍ଭବ ବୋଲି ବିଚାରି କାମ କରାଉଥିଲେ । ଗାନ୍ଧିଜୀଙ୍କର ସମସ୍ତ ଜୀବନର ତପସ୍ୟା ବିଫଳ ହୋଇଗଲା । କାରଣ ତାଙ୍କର ରାମରାଜ୍ୟର ପରିକଳ୍ପନାରେ ଥିଲା, ଶିକ୍ଷା, ସ୍ୱାସ୍ଥ୍ୟ ଅନ୍ନବସ୍ତ୍ର ସବୁଥିରେ ଭାରତଲୋକେ ନିଜଗୋଡ଼ ଉପରେ ନିଜେ ଛିଡ଼ା ହୋଇ ବଞ୍ଚିବେ । ତେବେ ଦୁନିଆଁରେ ଭାରତର ମାହାତ୍ମ୍ୟ ବଢ଼ିବ । ସେ ଦୁନିଆରେ ଏକ ଆଦର୍ଶ ଜାତିରୂପେ ଠିଆହେବ । ଦେଶ ସ୍ୱାଧୀନ ହେଲେ ମଧ୍ୟ ଗାନ୍ଧିଜୀ କହିଥିଲେ ତାଙ୍କର ଚଳନି ଓ ପଦ୍ଧତିରେ ଅନ୍ନବସ୍ତ୍ରରେ ଭାରତ କେଉଁ ଜାତି ମୁହଁକୁ ନ ଅନାଇଁ ନିଜେ ଚଳିପାରିବ । ପରଜାତି ପାଖରେ ହାତ ନ ପତାଇ, ଦେଶେ ଦେଶେ ଭିକ୍ଷା ନମାଗି ଭାରତର ଲୋକେ ଅରଣି ଅପ୍ରବାସୀ ହୋଇ ବିକେନ୍ଦ୍ରିତ ଶାସନରେ ସୁଖରେ ନିଜର ସାମାଜିକ ରାଷ୍ଟ୍ରୀୟ ଓ ବ୍ୟକ୍ତିଗତ ଉନ୍ନତି କରି ବଞ୍ଚି ରହିବ । ପୃଥିବୀରେ ଭାରତ ଗୋଟିଏ ଆଦର୍ଶ ଦେଶ ହୋଇ ରାମ ରାଜ୍ୟର ପ୍ରଜାହୋଇ ରହିବ ଏହା ଥିଲା ଗାନ୍ଧିଜୀଙ୍କ କଳ୍ପନା । ଶିକ୍ଷାକୁ ଶିଳ୍ପ ହାତକାମ ବୃତ୍ତି ନିର୍ଦ୍ଦେଶିତ କର୍ମଧାରା ମାଧ୍ୟମରେ ଦେଶରେ ସବୁ ସ୍ତରରେ ବ୍ୟାପ୍ତ କରିଦେବା କେବଳ ପୋଥିଗତ ନ କରିବା କର୍ମଗତ କରିବା ତାଙ୍କର ଉଦ୍ଦେଶ୍ୟ ଥିଲା । ପ୍ରାକୃତିକ ପଦ୍ଧତିରେ ଗରିବ ଲୋକେ ସମସ୍ତ ଚିକିତ୍ସା ପାଇ ପାରିବେ ବୋଲି ସେ ପ୍ରାକୃତିକ ଚିକିତ୍ସାକୁ ପସନ୍ଦ କରିଥିଲେ । ମାତ୍ର ତାଙ୍କର ମୂଳପଦ୍ଧତି ଚରଖାଟି ଭାରତରୁ ନିର୍ବାସିତ ହୋଇ ଗାଁକୁ ଗାଁ ହଳର, ଲୁଗାକଳ ସବୁରକମ କଳଯନ୍ତ୍ର ଦେଶ ସ୍ୱାଧୀନତା ପରେ ଲୋକଙ୍କୁ ବିଭାଜିତ ସାଂପ୍ରଦାୟିକ ବିଭିନ୍ନ ପରସ୍ପର ବିରୋଧି ପରଶ୍ରୀକାତର ଈର୍ଷାଳୁ

ଲୋଭଗ୍ରସ୍ତ ଘୁଷ୍‌ଖୋର ଲାଭଖୋର କରାଇ ଦିଆଗଲା । ସରକାର ଚରଖା ଖଦୀର ଭାରନେଇ ଅଫିସ ଖୋଲି ଅମଲାରଖି ଖଦୀ ଉତ୍ପାଦନ କଲେ । ଖଦୀସବୁ କିଳାପୋତା ହେଲା । ଖଦୀ ଟଙ୍କା ଅଫିସରୁ ତୋଷରଫ ହେଲା । ଯେଉଁମାନେ ସେ ଅଫିସର ମାମଲତକାର ହୋଇ ବାବୁଗିରି କଲେ ସେମାନଙ୍କ ଜାଣକାରୀରେ ହଜାର ହଜାର ଟଙ୍କା ଲୁଟ ହୋଇ ଶେଷରେ ଓଡ଼ିଶା ସରକାର ଖଦୀବୋର୍ଡ଼ ଭାଙ୍ଗିଲେ । ଖଦୀବୋର୍ଡ଼ ଅମଲାମାନେ ଛଟେଇ ହେବାରୁ ରୁଷି ବସିଲେ, ପୁଣି ଚାକିରି କରିବେ ବୋଲି । ଗାନ୍ଧିଜୀଙ୍କର ଜାତୀୟ ଅର୍ଥନୀତି ଏ ବସ୍ତୁବାଦୀ ବିଜ୍ଞାନ ଯୁଗରେ ଯନ୍ତ୍ର ସହିତ ପ୍ରତିଦ୍ୱନ୍ଦିତା କରି ନପାରି ଭୁଷୁଡ଼ି ଗଲା । ନାରୀମାନେ ଗାଁରେ ସୂତାକାଟି ସରକାରୀ ଖଦୀବୋର୍ଡ଼କୁ ବଞ୍ଚାଇ ଥିଲେ । ସେମାନେ ବେକାର ହେଲେ । ଅମ୍ବର ଚରଖା ଯେ ଦିନକୁ ନାରୀମାନଙ୍କୁ ଦିନକୁ ଟ.୨.୦୦ ମଜୁରୀ ଦେଇ ସୂତା ଉତ୍ପାଦନ ପାଇଁ ତିଆର ହୋଇଥିଲା, ଭୁବନେଶ୍ୱର ଖଦୀ ଅଫିସରେ ନାରୀ ଶିକ୍ଷାର୍ଥିନୀମାନଙ୍କୁ ୬ ମାସ କରି ଯେ ସୂତାକଟା ଶିକ୍ଷା ଦିଆ ଯାଉଥିଲା, ସେ ସଂସ୍ଥା ଭାଙ୍ଗିଗଲା । କେନ୍ଦ୍ର ସରକାରୀ ଖଦୀ ଯୋଜନା ପାଇଁ ତିଆରି ହୋଇଥିବା କମିଟି ସରକାରଙ୍କୁ ଓ ଲୋକସଭାକୁ ଖଦୀ ବ୍ୟବସାୟ ସଂସ୍ଥା ଓ ଗ୍ରାମ୍ୟଶିଳ୍ପ ଯୋଜନାର ଉନ୍ନତି ବାଧାପ୍ରାପ୍ତ ହୋଇଛି ଓ ଏ ବିଭାଗରେ ଅକଳନ ଟଙ୍କା ଛାଡ଼ି ନ ଦେଇ ସାବଧାନ କରିଦବାପାଇଁ ସତର୍କବାଣୀ ଶୁଣାଇ ଥିଲା । (Estimates committee report and village industries report) କାରଣ ଅମ୍ବର ଚରଖା କାରଖାନାରେ ମାର୍ଚ୍ଚ ୧୯୬୫ ସାଲ ସୁଦ୍ଧା ହଜାର ହଜାର ଅମ୍ବର ଚରଖା ତିଆରି ହୋଇ ଅବ୍ୟବହୃତ ହୋଇ ପଡ଼ିରହିଛି ବୋଲି ଲେଖି ପଠାଇଥିଲେ । କେବଳ ୨୧୦,୦୦୦ ଅମ୍ବର ଚରଖା ଦେଶରେ ଚଳୁଥିଲା ବୋଲି କମିଟି ଜଣାଇଥିଲେ । ତିରିଶ ହଜାର ଚରଖା ନଷ୍ଟ ହୋଇଛି କିମ୍ୱା ମରାମତି ହେବା ଅସମ୍ଭବ ବୋଲି ଲେଖିଥିଲେ । ଗ୍ରାମ୍ୟ ଶିଳ୍ପ ଉତ୍ପାଦିତ ନହୋଇ କେବଳ ସରକାର ଟଙ୍କା ବରବାଦ କରିଛନ୍ତି ।

ଖଦୀ ଓ ଗ୍ରାମୋଦ୍ୟୋଗ ଶିଳ୍ପ ପାଇଁ ସରକାର ଆଖିବୁଜି ଟଙ୍କା ଦେଉଥିଲେ ଗ୍ରାମବାସୀ ଅଳସୁଆ ନହୋଇ କାର୍ଯ୍ୟରତ ରହି କିଛି ଅର୍ଥାର୍ଜନ କରିବା ପାଇଁ । ଲୋକେ ଦରିଦ୍ର ଅବସ୍ଥାରୁ ଟିକେ ଉନ୍ନତ ହୋଇ ବଞ୍ଚିବେ ବୋଲି ସରକାର ଏ ଦିଗରେ ଏ ବିଭାଗରେ ଲକ୍ଷ ଲକ୍ଷ ଟଙ୍କା ଢାଳିଦେଲେ । କାରଣ ଖଦୀ ଓ ଗ୍ରାମଶିଳ୍ପ ଉତ୍ପାଦିତ ହୋଇ ଗାଁ ଲୋକେ ଭଲରେ ରହିବେ ବୋଲି ଏହି ଚରଖା ଓ ଶିଳ୍ପ ଉତ୍ପାଦନ ପାଇଁ । ଏ ବ୍ୟବସାୟରେ ନିଅଣ୍ଟ ହେଉଥିବା ଅର୍ଥ ସରକାର ଆଖିବୁଜି ଦେଉଥିଲେ । କିନ୍ତୁ ଏତେ ଧନ ପାଣିରେ ପକାଇ ମଧ କର୍ମ ପୂରିଲା ନାହିଁ । ଲୋକେ ଉତ୍ପାଦନ କଲେ ନାହିଁ । ନାରୀମାନେ ଅଳସୁଆ ହୋଇ

ବସିଲେ । ସୂତା କାଟିଲେ ନାହିଁ କି ଶିଳ୍ପ ଉତ୍ପାଦନ କଲେନାହିଁ । ଲୋକେ କହିଲେ ଶାସକ ଗୋଷ୍ଠୀଙ୍କର ନିର୍ବାଚନ ବେଳ ଭୋଟ ପାଇବାକୁ ଏପରି ଲକ୍ଷଲକ୍ଷ ଟଙ୍କା ଗାଁ ଗଣ୍ଡାରେ ଚରଖା ଓ ଗ୍ରାମୋଦ୍ୟୋଗ ପାଇଁ ସରକାର ବୁଡ଼ାଇ ଦେଇଛନ୍ତି । ମାତ୍ର ଏଥିରେ ବାସ୍ତବିକ ଦେଶରେ ସ୍ୱାବଲମ୍ବନଶୀଳ ପ୍ରକୃତି ବଢ଼ିଲା ନାହିଁ କି ନାରୀମାନେ ଅର୍ଥାର୍ଜ୍ଜନ କରି ଉପକୃତ ହେଲେ ନାହିଁ । ତେଣୁ ଆମର ନେତାମାନେ ବର୍ଷକୁ ବର୍ଷ ଖାଦ୍ୟବସ୍ତ୍ର ମାଗିବାକୁ ବିଦେଶଯିବା ସାର ହେଲା । ନାରୀମାନେ ଚରଖାକାଟି ଅନ୍ନବସ୍ତ୍ର କରିପାରିଲେ ନାହିଁ । ତେଣୁ ଗାନ୍ଧିଜୀଙ୍କ ପରିକଳ୍ପିତ ରାମରାଜ୍ୟ 'ସ୍ୱାବଲମ୍ବନଶୀଳତା' ଏ ଦେଶର ମାଟିରେ ଗଢେଇ ଉଧେଇ ନପାରି ଗଢାମରୁଡ଼ି ହୋଇଗଲା । ନାରୀମାନେ ଏଦିଗରେ ସଚେତନ ହେବା ଉଚିତ ଥିଲା । ମାତ୍ର ସରକାରୀ ଅମଲାଏ କେଉଁ ଦେଶରେ ଗରିବ ନାରୀଙ୍କୁ ଅର୍ଥନୀତିକ ଚେତନାର ପ୍ରେରଣା ଦେବା ସମ୍ଭବ ହୋଇନାହିଁ । ଦେଶର ଏଯୁଗର ନେତାନେତ୍ରୀମାନେ ଏବେ ଚରଖା ସୂତାକଟା ଗ୍ରାମୋଦ୍ୟୋଗରେ ବିଶ୍ୱାସ ନକରି ଯନ୍ତ୍ରର ଯାନ୍ତ୍ରିକ ସହଜିଆ ଜୀବନକୁ ବିଶ୍ୱାସ କରନ୍ତି । ଗାନ୍ଧିଜୀଙ୍କ ସ୍ୱପ୍ନ ବିଫଳ ହୋଇଛି ଚରମ ଭାବରେ ।



# ତୁଳନାତ୍ମକ ସଭ୍ୟତା

ଶ୍ରେୟକୁ ବିଶେଷତଃ ସମୂହ ଶ୍ରେୟକୁ କେହି ଚିନ୍ତା କରନ୍ତି ନାହିଁ । ସେଥିପାଇଁ ଓଡ଼ିଶା ପ୍ରାକୃତିକ ଭାବରେ ସମୃଦ୍ଧ ହେଲେ ମଧ୍ୟ ସବୁକ୍ଷେତ୍ରରେ ତଳେ ପଡ଼ିଛି । କେବଳ ନୋଟ ଛାପାଗଲେ ଯେପରି ଦେଶଧନର କଳନା ହୁଏନାହିଁ, ସେପରି ଖବର କାଗଜରେ ପ୍ରସ୍ତାବମାନ ଓ ଭାଷଣ ବା ପରିକଳ୍ପନା ଛାପିକରି ଦେଶକୁ ସମୃଦ୍ଧି, କି ଚରିତ୍ର କି ଯୋଗ୍ୟତା କଳନା କରିହୁଏ ନାହିଁ । ଆଉ ଫମ୍ପାକଥା, ନଥିବା ପ୍ରସ୍ତାବରେ ଏବଂ ସେଥିପାଇଁ ପଇସା ଖର୍ଚ୍ଚହେଲେ ଦେଶ ବଡ଼ ହୁଏ ନାହିଁ । ଦେଶର ଚରିତ୍ରବତ୍ତା ଓ ଏକତା, ଶୃଙ୍ଖଳିତ କର୍ମଯୋଜନା (Discpline) କେବଳ ଜାତୀୟ ଉନ୍ନତିର ଚାବିକାଠି । ପଞ୍ଚବାର୍ଷିକ ଯୋଜନାର ସାଫଲ୍ୟ ମଧ୍ୟ ତା'ରି ତଳେ ନିର୍ଭର କରେ । ପ୍ରଥମ ପଞ୍ଚବାର୍ଷିକ ଯୋଜନାର କାର୍ଯ୍ୟ ଓଡ଼ିଶାରେ ପୂର୍ଣ୍ଣଭାବେ ଅସଫଳ ହେବାର କାରଣ ଯଦି ଖୋଜିବା ତେବେ ଜାତୀୟ ଚରିତ୍ର ତଳେ ତାହାର କାରଣଗୁଡ଼ିକ ଦିଶିଯିବ ଏହା ବ୍ୟଷ୍ଟିଭାବରେ, ସମଷ୍ଟି ଭାବରେ ।

କେହି ଇଉରୋପୀୟ ଲୋକଙ୍କ ପ୍ରଶଂସା ଆମ ସହିତ ତୁଳନାତ୍ମକ ଭାବରେ କଲେ ରାଗିଯାଉ ଓ ସେମାନେ ଆମକୁ ଦାସକରି ହାତଗୋଡ଼ ଭାଙ୍ଗି ସେମାନଙ୍କୁ କୃତ୍ରିମ ସଭ୍ୟତା ଶିଖାଇ ସତ୍ୟାନାଶ କରିଛନ୍ତି ବୋଲି କହୁଁ । ୟୁରୋପ, ଜର୍ମାନୀରୁ ହିନ୍ଦୁସ୍ଥାନ ଷ୍ଟିଲ କମ୍ପାନୀର ସରକାରୀ ଅଫିସ ନିକଟରେ ଜର୍ମାନୀ କ୍ରୁପ ଲୁହା କମ୍ପାନୀର ଅଫିସ । ସେଠାକୁ ଯାଇ ତୀକ୍ଷ୍ଣ ଭାବରେ ଦେଖିଲେ ତୁଳନାତ୍ମକ ଭାବରେ ଆମର ଜାତୀୟ ଚରିତ୍ରର ଅଧୋଗତି ମାତ୍ରା ଜଣାଯାଏ । ସେଠାରେ ଦେଖିଛି, ଜର୍ମାନୀର ବଡ଼ ବଡ଼ ଇଞ୍ଜିନିୟର ଯେଉଁମାନେ ୧୧-୧୨ ହଜାର କରି ଦରମା ପାନ୍ତି, ସେମାନେ ଓ ସେଇକ୍ଲାସ ଇଞ୍ଜିନିୟର ନାରୀ (Estimates) ଯୋଜନାକାରିଣୀମାନେ ଅଫିସ ଦ୍ୱାର ମୁହଁକୁ ଯାଇ ସ୍ପ୍ରିଂ ଦରଜା ଖୋଲିବା ଯାଏ ଅପେକ୍ଷା କରି ପାରନ୍ତି ନାହିଁ । ୮ଟା ବେଳ ଅଫିସ ସମୟ– ସେମାନେ ୫/୧୦ ମିନିଟ ଆଗରୁ ଯାଇ ଦରଜା ନିକଟ ଖୋଲା ଝରକା ବାଟେ ଅଫିସରମାନଙ୍କୁ, ଏଷ୍ଟିମେଟରମାନଙ୍କୁ ରାସ୍ତାରୁ ଟେକି ଘରଭିତରକୁ ଗୋଟି ଗୋଟି କରି ଗଳାଇ ପକାନ୍ତି । ଦରଜା ଖୋଲାହୋଇ ଅଫିସକୁ ଯିବାପାଇଁ ଡେରି ହୋଇଯିବ । ସେଥିପାଇଁ ଉଦଗ୍ର ଭାବରେ ସମୟ ଟିକେ ନଷ୍ଟ ନକରି ସେମାନେ ଝରକାବାଟେ ଅଫିସଘରକୁ ଡିଅଁନ୍ତି । ଅଫିସକୁ ଯାଆନ୍ତି ଅଣ୍ଡରୱେର, ଜଂଘିଆ ଓ ହାତକଟା ଗେଞ୍ଜି ପିନ୍ଧିକରି– ଖାଲିପାଦ ଚଟିରେ । ସେଠାରେ ଅଫିସରେ ପଶିବା ଆଗରୁ ଯେଉଁମାନେ ସିଟିମାରି ଗୀତ ଗାଉଥାନ୍ତି, ଠେଲାପେଲା ହେଉଥାନ୍ତି ; କିନ୍ତୁ ସେମାନେ

ଅଫିସଘରେ ପଶିଲେ ଅନ୍ୟପ୍ରକାର ହୁଅନ୍ତି । କେହି କାହାସଂଗେ ପଦେ ଗପସପ କରନ୍ତି ନାହିଁ । ମ୍ୟାପଦେଖି କାମ କରନ୍ତି, ପରିକଳ୍ପନା କରନ୍ତି– ପ୍ଲାନ କରନ୍ତି, ହିସାବ କରନ୍ତି । ଅଫିସରେ ଚା' ସିଗ୍ରେଟ ଖା'ନ୍ତି ନାହିଁ । କିଛିକ୍ଷଣ କାମକରି କାଣ୍ଟିନକୁ ଯାଇ ସମସ୍ତେ ଏକାସଙ୍ଗେ ଖା'ନ୍ତି । ସେଇ ଅଧଘଣ୍ଟାରେ ହସଗପ- ଠେଲାପେଲା, ଗୀତ-ତାମସା, ଥଟ୍ଟା-ନକଲ । ତା'ପର ଅଧଘଣ୍ଟା ସରିବା ଆଗରୁ ଅଫିସକୁ ପୁଣିଯାଇ କାମରେ ଲାଗିଯାନ୍ତି । ଅଫିସ ନୀରବ-ନିଃଶବ୍ଦ; ଛୁଞ୍ଚି ପଡ଼ିଲେ ଶୁଭିବ । ପୁଣି ଲଞ୍ଚ ବା ମଧ୍ୟାହ୍ନ ଭୋଜନ ବେଳକୁ ସମସ୍ତେ ଯା'ନ୍ତି କାଣ୍ଟିନକୁ, ସେଠି ହସ-ଗପ-ଗୀତ, ଖିଆପିଆ, ବଡ଼ ଅଫିସର କର୍ମଚାରୀ ମଧ୍ୟରେ ଖାଦ୍ୟ ଖାଦକ ସମ୍ବନ୍ଧ ନଥାଏ । Superior କି inferior complex ନଥାଏ । କାଣ୍ଟିନରେ ଘଣ୍ଟାଏ ଖାଇ-ଖେଳି-ନାଚି ପୁଣି ଆସି ଅଫିସରେ ସନ୍ଧ୍ୟା ୭ଟା ଆଠଟା ଯାଏ ବସନ୍ତି ଓ ଏକାଦମରେ କାମ କରନ୍ତି– ଅଫିସ ବନ୍ଦ ହେବାଯାଏ । ଅଫିସ ବନ୍ଦ ହେବା ପରେ ସମସ୍ତେ ନୂଆମଣିଷ, ସମସ୍ତେ ଯା'ନ୍ତି ସିନେମା ଦେଖି ବା ନାଚଦେଖି ବା ବଜାର ବୁଲି । ସେତେବେଳେ ସେମାନେ ଅଫିସର ଛଦ୍ମବେଶ ବଦଳାଇ ଦିଅନ୍ତି, ଏମାନଙ୍କର ଆଶ୍ଚର୍ଯ୍ୟ ଶୃଙ୍ଖଳାବୋଧ, ନିୟମିତତା, ଶ୍ରମସୁଖବୋଧ ଓ ନିଷ୍ଠା, ଅନାଳସ୍ୟ, ବ୍ୟସନହୀନ ନିରାଡ଼ମ୍ବର ଜୀବନଧାରା ପାଖରେ ଥିବା ଭାରତୀୟ ଇଞ୍ଜିନିୟର ଓ ଅଫିସରମାନଙ୍କୁ ବଡ଼ ଆଶ୍ଚର୍ଯ୍ୟ ଲାଗେ । କାରଣ ଅଫିସରେ ଗଳ୍ପ, ଚାହା, ବନ୍ଧୁବାନ୍ଧବ ଓ କ୍ଲବଜୀବନ ଭାରତବର୍ଷର ସବୁଠାରେ ଉଣା ଅଧିକେ ଦେଖାଯାଏ । ଭାରତୀୟ ଇଞ୍ଜିନିୟରମାନେ ନେକ୍ଟାଇ, ମୋଜା, କଲର, ଦାମୀପୋଷାକ ନପିନ୍ଧି ଯା'ନ୍ତି ନାହିଁ । ଏମାନଙ୍କୁ ଦେଖି ହିନ୍ଦୁସ୍ତାନ ଷ୍ଟିଲ କମ୍ପାନୀର ଜଣେ ମାଲିକ ଅଫିସର, ଜର୍ମାନୀ ଅଫିସରମାନଙ୍କ ଜାତୀୟ ଚରିତ୍ର ଓ ଶୃଙ୍ଖଳିତ-ନିୟମିତ ଜୀବନର ଧାରା ଶିଖିବାକୁ କହୁଥିଲେ । ଭାରତୀୟ ଅଫିସର ରାଉରକେଲା ଗଲେ ଖଣ୍ଡେ ସୁଟ୍‌କେଶ, ବେଡ଼ିଂ ପାଇଁ ୨ଟି କୁଲିଙ୍କୁ ଷ୍ଟେସନରେ ଡାକନ୍ତି । ମାତ୍ର ବଡ଼ ବଡ଼ ଜର୍ମାନୀ ଇଞ୍ଜିନିୟରମାନେ କଲିକତାରୁ ରାଉରକେଲା ଗଲେ ଟାକ୍‌ସିରୁ ଉତୁରି, ନିଜ ପିଠିରେ ବେଡ଼ିଂ ବାନ୍ଧି, ଜିନିଷପତ୍ର ହାତରେ ଓହଳାଇ, ମୁଣ୍ଡରେ ଥୋଇ ଫାଷ୍ଟକ୍ଲାସରେ ବସିଯାନ୍ତି । ବଡ଼ଜାତି ବଡ଼ଗୁଣୀ ଲୋକମାନେ ବେଶଭୂଷାରେ, Style ଫେସନରେ କି ବାବୁଗିରି ବିକାନ୍ତି ନାହିଁ । ଜର୍ମାନୀ ଲୋକଙ୍କ ତିଆରି ବୁନିୟାଦି ଏଡ଼େ ନିଦା ଯେ, ସେମାନେ ନିଜ ହାତରେ ଜିନିଷ ବୋହି ରେଳରେ ରଖିଲେ କିଏ ସେମାନଙ୍କୁ କୃପଣ କହିବ କି ଗରିବ କହି ଘୃଣା ତାଚ୍ଛଲ୍ୟ କରିବ ଏକଥା ସେମାନେ ଭାବନ୍ତି ନାହିଁ । ତଳ ତାଲିମ ସେମାନଙ୍କ ଦେଶରେ, ଅଫିସରେ, ସ୍କୁଲରେ ଆମଦେଶଠୁଁ ଅଲଗା ଥିବାରୁ ଏହା ସମ୍ଭବ ହୁଏ । ସେମାନେ ନିଜକୁ ଶିକ୍ଷକ ଜାତି ଓ ବଡ଼ଜାତି ବୋଲି ଅଭିମାନୀ ରଖୁଥିବାରୁ ସେମାନଙ୍କ ପକ୍ଷେ ଏହା ସମ୍ଭବ ହୁଏ । ଯାହା ଆମଦେଶ I.A.S, I.C.S, I.P.S, I.E.S ଇଞ୍ଜିନିୟରମାନଙ୍କ ଚରିତ୍ର ଓ କାର୍ଯ୍ୟରେ ସମ୍ଭବପର ହୁଏନାହିଁ । ସେଇ ଜର୍ମାନୀ ଇଞ୍ଜିନିୟର

ଜଣେ ୧୨ ହଜାର ଦରମା ପାଏ, ୧୧ ହଜାର ନିଏ, ଆଉ ହଜାରେ କିରାନୀ ଜିମାରଖେ । ସେ ଅଫିସ ଗଲାବେଳେ ଗରିବ ଲୋକେ ତାକୁ ଘେରି ପଇସା ମାଗନ୍ତି– ଷ୍ଟାଣ୍ଡ ରୋଡ଼ରେ ଏଇ ଗରିବଙ୍କୁ ବାଣ୍ଟିବା ପାଇଁ ସେ ହଜାରେ ଟଙ୍କା ଅଲଗା ରଖେ । ଆଉ ଜର୍ମାନୀ ବଡ଼ବଡ଼ ଅଫିସରମାନେ ମଧ୍ୟ ଦାତବ୍ୟ ଅନୁଷ୍ଠାନମାନଙ୍କୁ ବହୁତ ଦାନ ଧର୍ମ କରିଥାନ୍ତି– ଏ ଦେଶରେ ! ସେମାନେ ଗରିବ ହୋଇ ଯାଇଛନ୍ତି, ଦେଶରେ ସେମାନଙ୍କର ଖାଇବାକୁ ନାହିଁ । ପରାଧୀନ ଜର୍ମାନୀ ଲୋକଙ୍କ ବୁନିୟାଦୀ ବଡ଼ ଥିବାରୁ ଭାରତରେ ମଧ୍ୟ ସେମାନେ ଉଦାରତା ସୌଜନ୍ୟ ଦେଖାଇ ପାରୁଛନ୍ତି; ଯାହା କେବଳ ହଜାର ହଜାର ୨ଟଙ୍କା ଦରମା ପାଇଲେ ଏ ଯୁଗ ମନୁଷ୍ୟର ହୁଏ ନାହିଁ । ଏଇ ଜର୍ମାନୀ ଇଞ୍ଜିନିୟର ମାନେ ରାତିରେ ନିତି ବଙ୍ଗଳାରେ ବଂଗାଳୀ ତନ୍ତୀମାନଙ୍କୁ ହଜାରେ ଟଙ୍କା ଦରମା ଦେଇ ରଖି ସେମାନଙ୍କଠାରୁ ରାତିରେ ହାତରେ ଢାକାଇ ଶାଢ଼ୀ ପ୍ରଭୃତିର ଡିଜାଇନ ଶିଖୁଛନ୍ତି ? ସେମାନଙ୍କ ଦେଶକୁ ଫେରି ଏଇ ବିଦ୍ୟା ଶିଖାଇବେ ବୋଲି ତ ? ସେମାନେ ଜାତିକୁ ଭଲପା'ନ୍ତି, ନିଜ ଜୀବନଠାରୁ ବେଶି ଓ ଦେଶକୁ ସମୃଦ୍ଧକରି ଜର୍ମାନୀ ଲୋକଙ୍କୁ ପୃଥିବୀରେ ସ୍ୱାବଲମ୍ବୀ ଓ ସବୁଥିରେ ବଡ଼ ଦେଖାଇବାକୁ କି ଅସମ୍ଭବ ଚେଷ୍ଟା କରୁଛନ୍ତି, ଦେଖିବା କଥା । ସେମାନଙ୍କ ଦେଶରେ ଲୁଗାକଳ । ମାତ୍ର ସେମାନେ କଲିକତାରେ ତନ୍ତକାମ ଲୁଗାବୁଣା କାମ ଶିଖାଇ ନେଉଛନ୍ତି– ହାତରେ । ବିଜୁଳୀ ତନ୍ତରେ ନୁହେଁ ।

ଆମ ଦେଶରୁ କେତେ ପିଲା ୟୁରୋପ ଆମେରିକା ପଢ଼ିବାକୁ ଯାଇ ପଢ଼ାସାରି ଖାଲି ବୁଲନ୍ତି ! କିନ୍ତୁ ସେଇ ପାଠଛଡ଼ା ସେମାନଙ୍କ ଜାତିର ଧନ୍ଦା, ଉଦ୍ୟୋଗ, କି କିଛି କାମ ଶିଖି ଆସି ଦେଶରେ ଶିଖାଇବା କଥା ଆମେ ଜାଣିନାହୁଁ । ମାତ୍ର ଜର୍ମାନୀ ଅଫିସରୁ ନରନାରୀମାନେ ତାହା କରୁଛନ୍ତି– ଅବସର ସମୟରେ । ସେମାନେ ଆମୋଦ କରିବା– ଖାଇବା–ଶୋଇବା– ଧର୍ମକରିବା– କାମ କରିବା, ରୋଜଗାର କରିବା ସବୁ ଧରାବନ୍ଧା ନିୟମରେ କରାଯାଇଛି ବୋଲି ସେମାନଙ୍କ ଜୀବନର ପ୍ରଗତି ଓ ବିକାଶ ପଥ କେଉଁଠି ଅଟକେ ନାହିଁ ।

ସେହିପରି ଗଲା ସାତବର୍ଷ ଧରି ଯେଉଁ ଆମେରିକାର ଭାରତବନ୍ଧୁମାନେ ଆମ ସମ୍ବଲପୁର ବରଗଡ଼ରେ ରହିଛନ୍ତି, ସେମାନେ ନୂଆ ଫ୍ଲାସ ପାଇଖାନା ଟ୧୩୪ରେ କରି ବିକ୍ରି କରୁଛନ୍ତି ଦିନକୁ ହଜାର ହଜାର ଏବଂ ସମ୍ବଲପୁର ଜିଲ୍ଲା ଆମ ଆଗେ ପାଇଖାନା ନଥିବାରୁ ଯେ ପଦାରେ ଝାଡ଼ା ଫେରୁଥିଲେ ଏବେ ନୂଆ ସିମେଣ୍ଟ ନେଇ ସେମାନେ ପ୍ରତି ଗାଁରେ– ଘରେ ଘରେ ପକାଇ ତିଆରି କରି ସଭ୍ୟ ଜୀବନଯାପନ ପ୍ରଣାଳୀ ଶିଖିଲେଣି । ସେହି ଆମେରିକାର ନରନାରୀଗଣ ହଜାରଟଙ୍କା ଦେଇ ସମ୍ବଲପୁରୀ ତନ୍ତୀ ରଖି ସମ୍ବଲପୁର ଲୁଗା ଧଡ଼ିର ନମୁନା, ଡିଜାଇନ ସବୁ ଶିଖୁଛନ୍ତି ଓ ସେମାନେ ହାତରେ ତନ୍ତରେ ସମସ୍ତେ ଲୁଗା ବୁଣା ବୁଣି ଶିଖି ଗଲେଣି । ଗୋଟିଏ ଦଳରେ ୭/୮ ଜଣକରି ଶିଖି ସେମାନେ ନିଜ

ଦେଶକୁ ଚାଲିଯାନ୍ତି; ଆଉରି ଦଳେ ଆମେରିକା ଶିକ୍ଷାର୍ଥୀ ପୁଣି ତନ୍ତକାମ ଶିଖନ୍ତି । ଏହିପରି ଭାବରେ ଆମେରିକା ସରକାର ଟଙ୍କା ଦେଇ ତାର ଦେଶର ଲୋକଙ୍କୁ ପୂର୍ଣ୍ଣଭାବରେ ଭାରତୀୟ ଗାଁ ଶିଳ୍ପକଳା ଶିକ୍ଷା ଦେଉଅଛି । ଗଲା ୭ବର୍ଷ ଧରି ସେମାନେ ବରଗଡ଼ରେ ଏହିପରି କାମ କରୁଛନ୍ତି ଓ ପ୍ଲାସ ପାଇଖାନାମାନ ସିମେଣ୍ଟରେ ତିଆରି କରି ବିକି ଟଙ୍କା କରୁଛନ୍ତି । ଏ ପାଇଖାନା ଯେ ବସାଉଛନ୍ତି, ସେମାନେ ୧୫ ବର୍ଷଯାଏ ଆଉ ପାଇଖାନା ମରାମତି କରିବା ଦରକାର ପଡ଼ିବ ନାହିଁ; ପାଣି ସବୁ ତଳକୁ ଯିବ । ପାଇଖାନା କିଣାଳୀକୁ ସେମାନେ ବିଷ୍ଠାଖିଆ ପୋକ ୨ଟି ଦିଅନ୍ତି ପାଇଖାନା ନଳୀରେ ସେମାନେ ରହି ସହସ୍ର ସହସ୍ର କୀଟାଣୁ ପ୍ରସବ କରନ୍ତି ଓ ସେମାନେ ବିଷ୍ଠା ଖାଇଯିବାରୁ ଆଉ ମେହେନ୍ତର ସଫା କରିବା ଦରକାର ପଡ଼େ ନାହିଁ । ଏ ସବୁ ଅଭିନବ ପ୍ରଚେଷ୍ଟା ସେମାନେ କରି ବଞ୍ଚୁଛନ୍ତି । ଏ ସବୁ ବିଷୟରେ ଆମ ଜାତିକୁ ପରାମର୍ଶ ଦେବାକୁ କିନ୍ତୁ କେହି ନାହିଁ । ଶିକ୍ଷକ କି ନେତା କେହି ଦେଖାଯାନ୍ତି ନାହିଁ । ଜାତି ସ୍ୱାଧୀନ ହୋଇଛି ସତ କିନ୍ତୁ ଜାତୀୟଜୀବନ, ଜାତୀୟଭାବ,— ଜାତିର ଅଭିମାନ, ଜାତିର ଯୋଗ୍ୟତା କି ଚରିତ୍ର ତିଆରି ହୋଇ ପାରିନାହିଁ କେଉଁ ଦିଗରୁ । କେବଳ ଲେଖା-ଭାଷଣ ଓ ବକ୍ତୃତା କରିବା ଛଡ଼ା ଓ ପରସ୍ପର କଳି-ହିଂସା କରିବା ଛଡ଼ା ।

ଏ ସମ୍ବନ୍ଧରେ ବିଶ୍ୱବିଦ୍ୟାଳୟ, ଓଡ଼ିଆ ଭାଷା ସଂଗୀତ ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଜାତୀୟ ଚରିତ୍ର ହୀନତାରୁ କଣ କଣ ହୋଇଛି ଜାତିର କ୍ଷତି ଓ ଦୁର୍ଗତି କିପରି ଓ କାହିଁକି ହୋଇଛି, ସେ ସଂବନ୍ଧରେ ବାରାନ୍ତରେ ଧାରାବାହିକ ଭାବରେ ସୁଧୀବୃନ୍ଦଙ୍କର ଚିନ୍ତା ଉପସ୍ଥାପିତ କରିବା ଉଚିତ ବୋଲି ମନେହୁଏ । ଏହା ବ୍ୟତୀତ ଶିଳ୍ପ, ଉଦ୍ୟୋଗ, ଧନ୍ଦା, ଜନସ୍ୱାସ୍ଥ୍ୟ, ଶିକ୍ଷା, ରାସ୍ତାଘାଟ ଧର୍ମ, ନୀତି, ଅଞ୍ଚଳ, ପଞ୍ଚାୟତ, ସବୁ ବିଷୟରେ ଆମେ ଆଗେଇଛୁ କି ପଛେଇଛୁ ଏ ସଂବନ୍ଧରେ ଅନ୍ୟ ଲେଖକ ଲେଖିକାମାନେ ଓ ଚିନ୍ତାଶୀଳ ଶିକ୍ଷାବିତ୍‌ମାନେ ଚିନ୍ତା କରି ଆଶାତୀତ ଅଗ୍ରଗତି କରାଇବେ ବୋଲି ଆଶା କରାଯାଏ ।

ୟୁରୋପୀୟ ସଭ୍ୟତା ଓ ଜୀବନର ଭଲ ଦିଗ ରହିଥିବା ସ୍ଥଳେ ଆମ ଜାତି ଜୀବନରେ ମନ୍ଦ ଦିଗ ପ୍ରତିଫଳିତ ହେଉଛି ବେଶି । ଭାରତ ସରକାର ପ୍ରତି ପ୍ରଦେଶକୁ ଦେବାଭଳି ଓଡ଼ିଶାକୁ ଫିଲ୍ମ କରିବାକୁ ଟଙ୍କା ଦିଅନ୍ତି । ମାତ୍ର ଆଧାର ନଥିବାରୁ ଓ ବ୍ୟକ୍ତି ନଥିବାରୁ ୩୦ ଲକ୍ଷ ଟଙ୍କା ଅଟକି ଯାଇଛି । ଗତ ୫/୬ ବର୍ଷରେ । ଭାରତ ସରକାରଙ୍କ ନିଜ ପ୍ରୋଡ୍ୟୁସର ରହିଛି । ମାତ୍ର କାମହୋଇ ପାରୁନାହିଁ । ଓଡ଼ିଶା ସରକାରଙ୍କ ପକ୍ଷରୁ ସହାନୁଭୂତି ଅଭାବରୁ ଟଙ୍କା ଫେରୁଛି । ସେହିପରି ସହସ୍ର ପୃଷ୍ଠାର ପୁରୁଣା ତାଳପତ୍ର ପୋଥି ଇଉନିଭରସିଟି ସଂକଳନ କରି ରଖିଥିଲେ ମଧ୍ୟ, ପୁଣି ଏ ଯୁଗର ଉତ୍କୃଷ୍ଟ ଲେଖାମାନ ସାହିତ୍ୟ କମିଟି ହାତରେ ଥିଲେ ସୁଦ୍ଧା ଇଉନିଭରସିଟି ସାହିତ୍ୟ ପ୍ରକାଶ ପାଇଁ ଦିଆଯାଇଥିବା ଲକ୍ଷେ ଟଙ୍କା ଖର୍ଚ୍ଚ ହୋଇ ନପାରି ଫେରିଗଲା । ସାହିତ୍ୟ ଏକାଡେମୀ ୫ଜଣଙ୍କ ବହି ବିଚାର ନକରି ଏକାଡେମୀ ସଭାପତିଙ୍କ କୋଡ଼ିଏ ବର୍ଷତଳେ ଛାପା ବହିକୁ ସରକାରୀ ପ୍ରାଇଜ ପାଇବାକୁ

ସୁପାରିଶ କରିଥିଲା । ତାହା ପୁଣି ବିରାଡ଼ି ଛିଙ୍କିବାରୁ ଓ ସାମ୍ପ୍ରଦାୟିକ ହୋଇ ଥିବାରୁ ଛାପା ହେଲା ନାହିଁ– ପ୍ରାଇଜ ମିଳିଲା ନାହିଁ । କମ୍ୟୁନିଟ ପ୍ରୋଜେକ୍ଟ ପାଇଁ ଆସିଥିବା ୧୯ ଲକ୍ଷ ଟଙ୍କା ଖର୍ଚ୍ଚ ହୋଇ ନପାରି ଭାରତ ସରକାରଙ୍କୁ ଫେରିଗଲା । ଦେଶକୁ ସରକାର ଟଙ୍କା ଦେଉଛି । ମାତ୍ର ତାହା ବ୍ୟୟ ନହୋଇ ପାରିବା ଓ ଏ ଦିଗରେ ସୁବିଚାର-ସଂଗତ ପର୍ଯ୍ୟବେକ୍ଷଣ, ନିରପେକ୍ଷତା ଓ ପରସ୍ପର ପ୍ରତି ସଦୟ ସଦ୍‌ଭାବ ଅଭାବରୁ କାର୍ଯ୍ୟ ସମାଧିତ ହୋଇ ନପାରିବା ଜାତୀୟ ଚରିତ୍ରହୀନତା ହିଁ ଦେଖାଇ ଦିଏ । ବ୍ୟଷ୍ଟି ଓ ସମଷ୍ଟିଭାବରେ ଆମର ପ୍ରେୟ ବା ଶ୍ରେୟ ହେଉନାହିଁ । ଜାତୀୟ ଚରିତ୍ର ଉନ୍ନତ ହେଉନାହିଁ । ପ୍ରଗତି କେବଳ ହୀରାକୁଦ ଡ୍ୟାମରେ ହୁଏନାହିଁ । ଜାତୀୟ ସମୂହ କଲ୍ୟାଣ ଭାବ ପ୍ରତି ବ୍ୟକ୍ତିଙ୍କର ନଥିଲେ ଓ ନିଜକୁ ସଂକୀର୍ଣ୍ଣ ଭାବରେ ଆତ୍ମକେନ୍ଦ୍ରିକ ଅହମିକାରେ ଦେଖି ପ୍ରତିଷ୍ଠା ପ୍ରୟାସୀ ହେଲେ ଜାତିର ପ୍ରତିଭା ସାଂସ୍କୃତିକ କ୍ଷେତ୍ରରେ ପ୍ରତିଷ୍ଠା ହୁଏନାହିଁ । ସାଂସ୍କୃତିକ ଉନ୍ନତି ନହେଲେ ଜାତୀୟ ଚରିତ୍ର ଉନ୍ନତ ହୁଏନାହିଁ । ଅର୍ଥକ୍ଷେତ୍ରରେ ସାଂସ୍କୃତିକ କ୍ଷେତ୍ରରେ ଆମର ସମାନ ଦୃଷ୍ଟି ରହିବା ଉଚିତ । ବି.ଏ ପାସ୍ କରିବା ଛାତ୍ର ଯଦି ଏମ.ଏ ପରୀକ୍ଷା ଦେଇଥିବା ପିଲାମାନଙ୍କର ପରୀକ୍ଷା ଦେଖିବେ, ସାହିତ୍ୟ କମିଟିର ବହି ବିଚାର ପାଇଁ ଯଦି ତୃତୀୟ ଚତୁର୍ଥ ବାର୍ଷିକ ବିଚାର ଲୋଡ଼ା ହେବ, ଜାତି କିପରି ବଡ଼ ହେବ ? ନିଖିଳ ଏସିଆ ସାହିତ୍ୟ ସମ୍ମିଳନୀ ପାଇଁ କଟକରେ ଯେପରି ତଥାକଥିତ ବିବୁଧ ମଣ୍ଡଳୀ ପରସ୍ପର ଚାପିବା, ମାପିବା, ଉଠିବା ଚେଷ୍ଟା କରି ଦିଲ୍ଲୀରେ ଯେପରି ଅସୂୟା ଦେଖାଇଲେ; ତାହା ସମସ୍ତେ ଜାଣନ୍ତି । ଓଡ଼ିଶା ରେଡ଼ିଓରେ ମଧ୍ୟ ପ୍ରିୟାପ୍ରୀତି ତୋଷଣ-ପୋଷଣ, ଆତ୍ମପ୍ରଶସ୍ତି ଓ ନିଜ ନିଜ ଲେଖା ଚଳାଇ ପ୍ରସିଦ୍ଧ ନାଟ୍ୟକାର, କବି, ସାହିତ୍ୟିକମାନଙ୍କୁ ଅଗୌରବ କରାଯାଏ, ଅକବିକୁ କବି କରାଯାଏ, ଅନାଟ୍ୟକାରଙ୍କୁ ନାଟ୍ୟକାର ସମ୍ମାନ ଦିଆଯାଏ ତେବେ ଏ ଦିଗ ମଧ୍ୟ ଅନ୍ଧକାର । କେହି କେହି କହନ୍ତି ସରକାରୀ ସବୁ ବିଭାଗରେ ଓଡ଼ିଆମାନେ ସେକ୍ରେଟାରୀ ରହିଲେ ଓ ସରକାରୀ ବଡ଼ପଦ ଯଥା– I.G, D.P.I, Collector, S.P, ଇଞ୍ଜିନିୟର ରହିଲେ ଏ ଜାତି ଉଠିବ ।



# ଖ୍ରୀଷ୍ଟଧର୍ମ ଓ ବାଣୀ

ଆଜି ସଂସାର ଜଳୁଛି, ମନୁଷ୍ୟ ଜାତିର ଚିନ୍ତା ଉତ୍ତପ୍ତ ବିକୃତ ଓ ଉନ୍ମାଦ ହୋଇଛି ? ଏହାର ଗୋଟିଏ ମାତ୍ର ଉତ୍ତର ଅଛି । ଲୋକେ ବିନୟ ନମ୍ରତା ଛାଡ଼ି ନିଜର ଗର୍ବ ଦମ୍ଭ ଓ ପରହିଂସା ପରକୁ ଈର୍ଷା କରିବାରେ ବ୍ୟସ୍ତ । ଆମେ ଏହା ସ୍ୱୀକାର କରିବୁ ଓ ଏହାର ସମ୍ମୁଖୀନ ମଧ୍ୟ ହେବାକୁ ପଡ଼ିବ । ଭଗବାନ ଆମ୍ଭମାନଙ୍କୁ ନମ୍ର ଓ ବିନୟଭାବର ପ୍ରେରଣା ଦିଅନ୍ତୁ । ଭଗବାନ ଗରିବ ଲୋକଙ୍କୁ ନୀଚସ୍ତରର ନିର୍ଦ୍ଧନ ଲୋକଙ୍କୁ ଦୟା କରିଥାନ୍ତି । ତେଣୁ ଆମକୁ ନମ୍ରତା ସମ୍ବନ୍ଧରେ ନିଜର ଆତ୍ମିକ ଦମ୍ଭ ଓ ଗର୍ବ ପ୍ରଭୃତି ସମ୍ବନ୍ଧେ ସଚେତନ ହେବାକୁ ପଡ଼ିବ ଏବଂ ବିନୟ ନମ୍ରତା କଣ ତାହା ଶିଖିବାକୁ ହେବ । ଏହି ଭାବ ଜୀବନର କର୍ମରେ ନିତି ଲଗାଇବାକୁ ହେବ । ଯେପରି ଆମେ ସଂଗୀତ ଶିକ୍ଷାକରୁ ସେପରି ନର୍ମତା ବିନୟଭାବ ଶିକ୍ଷା କରିବାକୁ ଓ ମନକୁ ସେପରି ତିଆରି କରିବାକୁ ପଡ଼ିବ । ଯେପରି ଆମେ ସଂଗୀତଜ୍ଞ ହେବାକୁ ଶିକ୍ଷାକରୁ ସେପରି ଉତ୍ସାହରେ ବିନୟ ନର୍ମତା ଓ ନିଜକୁ ଔଦ୍ଧତ୍ୟ ହୀନ କରିବାକୁ ହେବ । ଯେତେବେଳେ ଗର୍ବ ଆତ୍ମଚାରୀ ଭାବ ଆମକୁ ଜାବୁଡ଼ି ଧରେ ସେତିକିବେଳେ ଆମେ ନିଜର ନମ୍ର ଓ ବିନୀତ ଭାବକୁ ଆୟତ୍ତ କରିବାକୁ ଚେଷ୍ଟା କରିବା ଉଚିତ । ନିଜକୁ କ୍ଷୁଦ୍ରାତିକ୍ଷୁଦ୍ର ଭାବିବାକୁ ହେବ । ନିଜର ଗର୍ବ ଅଭିମାନକୁ ଚୂର୍ଣ୍ଣ କରି ବିବେକର ବାଣୀ ଶୁଣିବାକୁ ହେବ । ନିଜର ଦୋଷକୁ ଦେଖି ତାହାକୁ ନ ଘୋଡ଼ାଇ ପ୍ରକାଶ କରିବା ହେଉଛି ଏହାର ଉପାୟ । ଏହା ନକଲେ ନିଜର ଆତ୍ମଗର୍ବ ବରାବର ବିବେକ ବାଣୀ ନମାନି ମୁଣ୍ଡଟେକି ଆତ୍ମାକୁ କାବୁ କରି ପକାଇବ । ନମ୍ରତା ଗର୍ବକୁ ଘୋଡ଼ାଇ ସଂଯମିତ କରିଥାଏ ଓ ଗର୍ବ ନଷ୍ଟ କରି ପକାଏ । ସୁତରାଂ ଅହମିକାକୁ ଧ୍ୱଂସ ନକଲେ ନମ୍ରତା ବିନୟଭାବ ପ୍ରକାଶ ହେବ ନାହିଁ । ଏ ସମ୍ବନ୍ଧେ ପ୍ରତିବ୍ୟକ୍ତି ନିଜର ଅନ୍ତତଃ ସମୀକ୍ଷା କରିବା ଦରକାର । ତୁମେ ତା'ହେଲେ ଜଗତ ଜୟ କରି ପାରିବ । ତୁମର ଶତ୍ରୁ କେହି ରହିବେ ନାହିଁ । ଅହଂକାରର ପର୍ବତ ଡେଇଁବା ସବୁଠୁଁ ବଡ଼ ପୌରୁଷ । ତୁମର ବାଧା ବିପତ୍ତି ମଧ୍ୟ ଦୂର ହୋଇଯିବ । ତୁମେ ଯଦି ନିଜକୁ ଗୋଟିଏ କୀଟ ତୁଲ୍ୟ ଭାବିବ ତେବେ ତୁମର ଆତ୍ମାଭିମାନ ଓ ଅହଂକାର ନଷ୍ଟ ହେବ । ଖ୍ରୀଷ୍ଟଙ୍କ ଠାରେ ଏହି ବିନୟଭାବ ଓ ନିଜକୁ କ୍ଷୁଦ୍ର ଭାବିବାର ଗୁଣଥିଲା । ସେ ଲୋକଙ୍କୁ ବିନୟ ନମ୍ର ଭାବ ଶିକ୍ଷା ଦେବାକୁ ଜନ୍ମିଥିଲେ । ତାଙ୍କ କଥା ମାନି ଚଳିଲେ ମନୁଷ୍ୟ ଭିତରୁ ଔଦ୍ଧତ୍ୟକୁ ଅହମିକାକୁ ତ୍ୟାଗ କରିବା ଦରକାର ପଡ଼େ । ଖ୍ରୀଷ୍ଟ କହିଛନ୍ତି ମୁଁ ମନୁଷ୍ୟ ନୁହେଁ ମାତ୍ର ଏକ କ୍ଷୁଦ୍ର କୀଟ ବୋଲି ଭାବୁଥିଲେ । କୀଟ ନିଃସହାୟ । କାହା ସହିତ ସେ

ଆତ୍ମରକ୍ଷା ପାଇଁ ଯୁଦ୍ଧ କରେ ନାହିଁ, ବିପଦ ବେଳେ ପଡ଼ିଥାଏ । ସେ ପକ୍ଷୀମାନଙ୍କର ଖାଦ୍ୟ ହୁଏ, ଅବା ମନୁଷ୍ୟ ଗୋଡ଼ତଳେ ମାଡ଼ି ମକଚି ହୋଇଯାଏ । କିନ୍ତୁ କୀଟ ସର୍ବଦା ବ୍ୟସ୍ତ ରହିଥାଏ । ସେ ନିଜକୁ ମନୁଷ୍ୟ ଚକ୍ଷୁରୁ ଓ ଅନ୍ୟ ପ୍ରାଣୀମାନଙ୍କ ଚକ୍ଷୁରୁ ନିଜକୁ ଲୁଚାଇ ରଖେ । ଏଥିରେ ତାର ବାହାଦୁରୀ ମଧ୍ୟ ଅଛି । ତଥାପି ଏହା ଉଦ୍ଭିଦ ଜଗତର ମହାଉପକାରୀ ବଂଧୁ । କୀଟ ଅନ୍ୟମାନଙ୍କ ଉପକାର କରିବାକୁ ବଞ୍ôଥାଏ । ମାଟିର କୀଟ ଗଛପତ୍ରଙ୍କର ଉପକାର କରେ ଅନ୍ଧକାର ଭିତରେ ରହି । ଅନ୍ଧକାର ଭିତରେ ସେ ହଳକରି ଚାଲେ— ମାଟି ତଳେ ତଳେ । ତଳେ କୀଟ ମାଟିରୁ ଖାଇ ବଞ୍ôଥାଏ ଓ ମାଟିର ଉଦ୍ଭିଦର ଉପକାର କରୁଥାଏ । ମାତ୍ର ତା' ଉପରେ ସମସ୍ତେ ବିରକ୍ତ ହୁଅନ୍ତି, ଘୃଣା କରନ୍ତି । ସମସ୍ତଙ୍କ କୋପ ଦୃଷ୍ଟି ତା'ଉପରେ ପଡ଼ିଥାଏ । ତା' ବିରୁଦ୍ଧରେ ସମସ୍ତଙ୍କର ପ୍ରବଳ ମାରଣର ଅଭିଯାନ ଆରମ୍ଭ ହୁଏ, ମୁଁ ଖ୍ରୀଷ୍ଟାନମାନଙ୍କୁ ପ୍ରାର୍ଥନା କରେ ଯେ ସେମାନେ କୀଟ ଧର୍ମି ହୋଇ ନିଜକୁ ଭଗବାନଙ୍କ ପାଖରେ ନୀଚତମ ଭାବି ଜନତାର ସେବା ଓ ଉପକାର କରନ୍ତୁ । ମାତ୍ର ଜୀବର କୌଣସି ପ୍ରକାର ଅହିତ ଅନିଷ୍ଟ ସାଧନ କରନ୍ତୁ ନାହିଁ ।

ଆମ ଦେଶରେ ବହୁ ପାଦ୍ରୀମାନେ ନିରୀହ ମୂର୍ଖ ଆଦିବାସୀମାନଙ୍କ ଭିତରେ ରହି ନିଷ୍କାମ ନିଃସ୍ୱାର୍ଥଭାବରେ ଲୋକ ସେବା କରନ୍ତୁ, ମାତ୍ର ସେମାନଙ୍କୁ ନିଜ ପଥ ଓ ମତ ଚପାଇ, ଲୋଭରେ ପକାଇ ଧର୍ମାନ୍ତରିତ କରି ରାଜନୀତିକ ଦଳ ବଡ଼କରି ଲୋକଙ୍କୁ ଦେଶ ବିରୋଧୀ ଓ ସେମାନଙ୍କ ନିଜ ଧର୍ମ ବିରୋଧୀ କରି ଭାରତର ଜନତା ଓ ଭାରତ ଦେଶର କିଛି ଅନିଷ୍ଟ ନ କରିଲେ ସେମାନଙ୍କୁ ଯଥାର୍ଥ ଖ୍ରୀଷ୍ଟାନ ଓ ଖ୍ରୀଷ୍ଟଭକ୍ତ ବୋଲି ସମସ୍ତେ କହିବେ ଓ କୃତଜ୍ଞ ରହିବେ । ଆମ ଦେଶରେ ଟଙ୍କା ଘୁଷଦେଇ କ୍ଷମତା ପାଇବାକୁ ରାଜନୀତି ବ୍ୟବସାୟୀ ଯେପରି କ୍ଷମତାକୁ ଆସି ଲୋକଙ୍କୁ ଶୋଷଣ କରି ସମସ୍ତଙ୍କ ଭାଗ୍ୟ ହାତ ମୁଠାରେ ରଖି ଦେଶସେବା ବ୍ରତ ପାଳନ କରନ୍ତି, ସେହି ଦୃଷ୍ଟିରେ ପାଦ୍ରୀମାନେ ନିରୀହ ମୂର୍ଖ ଲୋକଙ୍କ ନିକଟକୁ ଯାଇ ନିଜର ମତ ଓ ଧର୍ମଗ୍ରହଣ କରିବା ପାଇଁ ନାନା ସ୍ଥାନରେ ଡାକ୍ତରଖାନା ସ୍କୁଲ ଖୋଲି ସେହି ଆରଣ୍ୟକ ଲୋକମାନଙ୍କର ଉପକାର କରିବାକୁ ସେବା କରି ତାର ପ୍ରତିଦାନରେ ସେମାନଙ୍କର ମୂଳଧର୍ମ ସଂସ୍କୃତି ଓ ଦେଶପ୍ରୀତି ସେମାନଙ୍କର ମମତା ଓ ଧର୍ମପ୍ରୀତି ଶ୍ରଦ୍ଧାଭାବ ନଷ୍ଟ ନକଲେ ଭାରତର ସେମାନେ ଯଥାର୍ଥ ଉପକାର ସାଧନ କରି ପାରିବେ ଓ ଭାରତର ଆଦିବାସୀ ବନବାସୀ ଜନତା କେବଳ ନୁହେଁ ସମଗ୍ର ଭାରତର ଲୋକେ ସେମାନଙ୍କ ପାଖେ ଉପକୃତ ଓ କୃତଜ୍ଞ ହୁଅନ୍ତେ । ଧର୍ମପ୍ରଚାର ଧର୍ମାନ୍ତରିତ କରି ଭାରତର ଲୋକଙ୍କୁ ଅଣଭାରତୀୟ ଧର୍ମ ଓ ମର୍ମ ଶିଖାଇ ନିଜର ମାତୃଭୂମି ପ୍ରତି ଅଭକ୍ତି ଅବମାନନା ଶିକ୍ଷାଦେବା କୌଣସି ପାଦ୍ରୀ ବ୍ୟବସାୟୀଙ୍କ କର୍ତ୍ତବ୍ୟ ଓ ଧର୍ମ ବୋଲି ଖ୍ରୀଷ୍ଟ ବାଇବେଲରେ ଉପଦେଶ ଦେଇ ନାହାନ୍ତି । ତେଣୁ ପାଦ୍ରୀମାନେ ଆଗେ ପ୍ରକୃତ ବିନୀତ ନମ୍ର ଆତ୍ମଗର୍ବଶୂନ୍ୟ ଲୋକସେବକ ହେଲେ ଓ ନିଃସ୍ୱାର୍ଥ ନିଷ୍କାମ ଭାବରେ ଭାରତର

ଓଡ଼ିଶାର ସେବା କଲେ ମହାତ୍ମାଗାନ୍ଧୀଙ୍କର ପରମ ବଂଧୁ C.F Andrews ପାଦ୍ରୀଙ୍କୁ ଭାରତ ଲୋକେ ଯେପରି ସମ୍ମାନ କରି ଯେଉଁ ଦୃଷ୍ଟିରେ ଦେଖୁଥିଲେ ଏଠାର ଲୋକେ ପାଦ୍ରୀମାନଙ୍କୁ ଓ ସେମାନଙ୍କ୍ ପ୍ରତିଷ୍ଠିତ ମଠକୁ ସେଇ ଭାବରେ ଦେଖିବେ । ଏବେ ଓଡ଼ିଶାରେ ବିହାରରେ ଆସାମରେ ଦକ୍ଷିଣ ଭାରତରେ ନାଗା ଭୂମିରେ ପାଦ୍ରୀମାନେ ଏହି ଲୋକମାନଙ୍କୁ ଶିକ୍ଷିତ ସଭ୍ୟ କରିବାର ବାହାନା ଦେଖାଇ ଖ୍ରୀଷ୍ଟାନ ଦଳ ବଢ଼ାଇ ଭାରତର ଶତ୍ରୁରାଜ୍ୟର ଲୋକମାନଙ୍କ ସହିତ ଭାରତକୁ ପୁଣି ଖଣ୍ଡ ଖଣ୍ଡ କରି ବିଦେଶୀମାନଙ୍କୁ ଅଣାଇବାର ଚେଷ୍ଟା କରୁଛନ୍ତି । ଧର୍ମ ପ୍ରଚାରର ମୂଳକଥା ହେଲା ଭାରତୀୟଙ୍କ ଭିତରୁ ସହସ୍ର ସହସ୍ର ବର୍ଷର ପରଂପରା ଓ ସଂସ୍କୃତି ନଷ୍ଟକରି ନିଜ ଦେଶ, ଶାସ୍ତ୍ର ପୁରାଣ ଓ ଭାରତର ଦିଅଁ ଦେବତାଙ୍କ ପ୍ରତି ତାଚ୍ଛଲ୍ୟ ଓ ଅଭକ୍ତି ପ୍ରକାଶ କରି ଭାରତବର୍ଷ ଦେଶ ଜନନୀ ଓ ମାତୃଭୂମି ପ୍ରତି ଚରମ ବିଶ୍ୱାସଘାତକତା ଓ କୃତଘ୍ନତା ଦେଖାଇ, ଦେଶ ଦି'ଖଣ୍ଡ କରି ଭାରତରେ ଖ୍ରୀଷ୍ଟାନ ଭୂମିର ପ୍ରତିଷ୍ଠା କରିବା । ଭାରତର ଖାଇ ଭାରତ ମାତା ପ୍ରତି ଶତ୍ରୁତା କଲେ ପାଦ୍ରୀମାନେ ଖ୍ରୀଷ୍ଟାନ ବୋଲାଇବେ କି ?



# ଅତୀତ ଓ ବର୍ତ୍ତମାନ ଯୁଗର ନାରୀକବି

ମହାଭାରତ ଯୁଗରେ ରୁକ୍ମିଣୀ ଶ୍ରୀକୃଷ୍ଣଙ୍କ ସହିତ ପରିଣୀତା ହେବା ପୂର୍ବରୁ ଶ୍ରୀକୃଷ୍ଣଙ୍କୁ ପୂର୍ବରାଗ ଜନିତ ପ୍ରଣୟପତ୍ର ଲେଖିଥିଲେ । ତାହା ସଂସ୍କୃତ ଭାଷାରେ ଏକ ଅମୂଲ୍ୟସଂପଦ ହୋଇ ରହିଛି । କିଚକଙ୍କ ଭଗ୍ନୀ ସୁଦେଷ୍ଣା ପାଣ୍ଡବରାଣୀ ଦ୍ରୌପଦୀଙ୍କୁ ତାଙ୍କ ନିକଟରେ ଦାସୀ କରି ରଖିଥିଲେ । ପାଣ୍ଡବଙ୍କ ଅଜ୍ଞାତ-ବାସ କାଳରେ ଦ୍ରୌପଦୀଙ୍କ ଛଦ୍ମନାମ ସୈରିନ୍ଧ୍ରୀ ଥିଲା । ସୁଦେଷ୍ଣାଙ୍କ ଦ୍ୱାରା କିଚକ ସୈରିନ୍ଧ୍ରୀ ଦାସୀ ନିକଟକୁ ପ୍ରଣୟପତ୍ର ଲେଖିଥିଲେ । ସେ ଯୁଗରେ ବହୁ ନାୟିକା ନାୟକମାନଙ୍କୁ ପ୍ରଣୟପତ୍ର ଲେଖିଥିଲେ । ମହାଭାରତ ଯୁଦ୍ଧର ପାଣ୍ଡବମାନେ ବନଗମନ କାଳରେ ମହାରାଣୀ କୁନ୍ତୀ ବିଦୁରଙ୍କ ଗୃହରେ ଚଉଦବର୍ଷ କାଳ ରହିଥିଲେ । ପାଣ୍ଡବମାନେ ବନବାସ ଓ ଅଜ୍ଞାତବାସରୁ ଫେରିଆସିଲେ ଏବଂ କୌରବମାନଙ୍କ ସହିତ ସେମାନଙ୍କର ଯୁଦ୍ଧ ହୋଇଥିଲା । ଶେଷରେ ଧର୍ମରାଜ ଯୁଧିଷ୍ଠିର ରାଜା ହୋଇଥିଲେ ଏବଂ ଉକ୍ତ ସମୟରେ ଭଗବାନ୍ ଶ୍ରୀକୃଷ୍ଣ ନିଜ ପିଉସୀ କୁନ୍ତୀଙ୍କ ସହ ଦେଖା କରିବାକୁ ଗଲେ । ଶ୍ରୀକୃଷ୍ଣଙ୍କୁ ଦେଖି କୁନ୍ତୀ କ୍ରନ୍ଦନକରି ଯେଉଁ ସ୍ତୁତି କରିଥିଲେ ତାହା ସଂସ୍କୃତ ମହାଭାରତରେ ବର୍ଣ୍ଣିତ । କୁନ୍ତୀ ନିରକ୍ଷର ଥିଲେ ଏଭଳି ଉଚ୍ଚକୋଟୀର ସ୍ତୁତି କେବେ କରିପାରି ନଥାନ୍ତେ । ମହାଭାରତ ଗ୍ରନ୍ଥରେ ଏହାଏକ ବିଶିଷ୍ଟସ୍ଥାନ ଅଧିକାର କରିଅଛି । ଉଷା ମଧ୍ୟ ଶ୍ରୀକୃଷ୍ଣଙ୍କ ପୁତ୍ର ପ୍ରଦ୍ୟୁମ୍ନଙ୍କୁ ପ୍ରଣୟପତ୍ର ଲେଖିଥିଲେ । ସେ ଯୁଗରେ ଦୂତ ଦୂତିମାନେ ପତ୍ର ବାହକ ଓ ବାହିକା ଥିଲେ ।

ଉଜ୍ଜୟିନୀର ରାଜା ବିକ୍ରମାଦିତ୍ୟଙ୍କ ସମୟରେ ନବରତ୍ନ ପଣ୍ଡିତ ସଭାରେ ବିକ୍ରମାଦିତ୍ୟ ବିଦୂଷୀ ଖନାଙ୍କୁ ବରାହ ପଣ୍ଡିତଙ୍କ ସ୍ଥାନ ଗ୍ରହଣ କରିବାକୁ ଇଚ୍ଛା କରିଥିଲେ । ମାତ୍ର ବରାହପଣ୍ଡିତ ଜ୍ୟୋତିଷ ଶାସ୍ତ୍ରରେ ଖନାଙ୍କର ଅସାଧାରଣ ପାଣ୍ଡିତ୍ୟ ଦେଖି, ଈର୍ଷା ଓ ପ୍ରତିହିଂସାରେ କାତର ହୋଇ, ତାଙ୍କର ପୁତ୍ର ମିହିର ଦ୍ୱାରା ଖନାଙ୍କର ଜିହ୍ୱା ଛେଦନ କରିଥିଲେ । ଖନାଙ୍କର ବଚନ କବିତାରେ ସେ ଢଗ ଆକାରରେ କହିଥିଲେ ଏବଂ ତାହା ଓଡ଼ିଆ ପୋଥିରେ ଲେଖାଥିଲା । ମାତ୍ର ତାହା ଅପ୍ରକାଶିତ ଅବସ୍ଥାରେ ଓଡ଼ିଆ ପୋଥିରେ ରହିଛି । ତେଣୁ ତାଙ୍କୁ ଓଡ଼ିଆନାରୀ ବୋଲି କେତେକ ଐତିହାସିକ ଉଲ୍ଲେଖ କରିଥିଲେ । ଏହାର ସତ୍ୟତା ରହସ୍ୟାବୃତ । ସେ ଲଙ୍କାର ରାଜକୁମାରୀ ଥିଲେ ବୋଲି ବଙ୍ଗଭାଷାରେ ଲିଖିତ । ଓଡ଼ିଆ ରାଜା ଲଙ୍କାରେ ମଧ୍ୟ ରାଜତ୍ୱ କରୁଥିଲେ ।

ଅତୀତକାଳର ନାରୀକବି ବୃନ୍ଦାବତୀ ଦାସୀ ଓ ମାଧବୀ ଦାସୀଙ୍କର ଲିଖିତ ଧର୍ମସାହିତ୍ୟ ପ୍ରକାଶ ହୋଇଅଛି, ଏମାନେ ସବୁ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ କାଳର କବି । ମାଧବୀ ଦାସୀ ଶ୍ରୀ ଚୈତନ୍ୟ ମହାପ୍ରଭୁଙ୍କ ଶିଷ୍ୟା ଥିଲେ । ତାଙ୍କର ଅକ୍ଷର ମୁକ୍ତାପରି ଏତେ ସୁନ୍ଦର ଥିଲା ଯେ ତାହା ଦେଖି ଉତ୍କଳର ସମ୍ରାଟ୍ ପ୍ରତାପରୁଦ୍ରଦେବ ତାଙ୍କୁ ପୁରୀର ଶ୍ରୀ ଜଗନ୍ନାଥ ମନ୍ଦିର୍‌ରେ ଦେଉଳକରଣ ନିଯୁକ୍ତ କରିଥିଲେ ଏବଂ ସେ ମଧ ସେଥିପାଇଁ ଯଥେଷ୍ଟ ଭତ୍ତା ପାଉଥିଲେ । ବର୍ତ୍ତମାନ୍ ମଧ ଶ୍ରୀ ଜଗନ୍ନାଥ ମନ୍ଦିରରେ ଦେଉଳକରଣ ନିଯୁକ୍ତ ରହିଛନ୍ତି । ସେ ସମୟରେ ରାୟ ରାମାନନ୍ଦ, ମାଧବୀଦାସୀ ପ୍ରଭୃତି କବିମାନେ ବ୍ରଜବୋଲି ଭାଷାରେ ଭଗବାନଙ୍କ ଲୀଳା ସ୍ୱୀୟ କବିତାରେ ପ୍ରକାଶ କରିଥିଲେ । ନାରୀକବି ବୃନ୍ଦାବତି ଦାସୀଙ୍କ ରାଧାକୃଷ୍ଣ ଭକ୍ତିମୂଳକ ଲେଖା ''ପୂର୍ଣ୍ଣତମଚନ୍ଦ୍ରୋଦୟ'' ପୁସ୍ତକ ପ୍ରକାଶିତ ହୋଇଅଛି । ମାତ୍ର ମାଧବୀ ଦାସୀଙ୍କ ଲେଖା ପୋଥି ପୁରୀର ରଘୁନନ୍ଦନ ଲାଇବ୍ରେରୀରେ ପାଣ୍ଡୁଲିପି ଆକାରରେ ରହିଛି । ତାଙ୍କର ବହୁତ ପଦ୍ୟାବଳୀ ବଙ୍ଗଳା ଭାଷାରେ 'ପଦସମୁଦ୍ର ଓ ପଦକଳ୍ପତରୁ' ବୈଷ୍ଣବ ପଦାବଳୀରେ ପ୍ରକାଶିତ ହୋଇଅଛି । ତାଙ୍କର ରଚନା ''ରାଗାନୁଗା'' ବୈଷ୍ଣବଧର୍ମ ଅନୁସାରେ ଲିଖିତ । ସେ ଅତ୍ୟନ୍ତ ଭକ୍ତିମତୀ ଓ ସୁପଣ୍ଡିତା ନ ହୋଇଥିଲେ ଚୈତନ୍ୟମହାପ୍ରଭୁ ତାଙ୍କୁ ଶିଷ୍ୟା ଭାବରେ ଗ୍ରହଣ କରିନଥାନ୍ତେ । ମାଧବୀ ଦାସୀଙ୍କ ପରେ ବୃନ୍ଦାବତୀ ଦାସୀ କବିତା ଲେଖିଛନ୍ତି । ଏହି ନାରୀକବି ଦ୍ୱୟଙ୍କ ଲେଖା ୪/୫ ଶହ ବର୍ଷତଳର କଥା । ଗୌରାଙ୍ଗ ମହାପ୍ରଭୁଙ୍କ ସମୟରେ ଏହା ଲିଖିତ ହୋଇଥିଲା । ଏହାର ପ୍ରାୟ ୨୦୦ ବର୍ଷପରେ ବୃନ୍ଦାବତୀ ଦାସୀ ଲେଖିଥିଲେ । ରାଣୀ ନିଶଙ୍କ ରାୟ ମଧ ନାରୀ କବି ଥିଲେ । ନାରୀକବି ସୁଲକ୍ଷଣା ଦେଇ ''ପଦ୍ମାବତୀ ପରିଣୟ'' ଛାନ୍ଦ ଲେଖିଥିଲେ ।

ଭଞ୍ଜ ସାହିତ୍ୟରୁ ନାୟିକାମାନେ ନାୟକମାନଙ୍କୁ ପ୍ରଣୟପତ୍ର ଲେଖିଥିବାର ମଧ ଜଣାଯାଏ । ମଧ୍ୟଯୁଗରେ ଭାରତର ବିଶିଷ୍ଟାଭକ୍ତ ରାଣୀ ମୀରାବାଈ ବୃନ୍ଦାବନର ସିଦ୍ଧସାଧକ ହରିବାବାଙ୍କୁ ଭର୍ତ୍ସନା କରି ପତ୍ର ଲେଖିଥିଲେ । ଏଥିରେ ଜଣାଯାଏ ଯେ ପୂର୍ବକାଳରେ ଭାରତବର୍ଷରେ କେବଳ ଉଚ୍ଚଶ୍ରେଣୀୟ ଅଭିଜାତ୍ୟ ବଂଶୀୟ ନାରୀମାନଙ୍କ ମଧରେ ଶିକ୍ଷା ସୀମାବଦ୍ଧ ଥିଲା । ଊନବିଂଶ ଶତାବ୍ଦୀରେ ଆଠଗଡ଼ ରାଣୀ ରାଧାପ୍ରିୟା ଦେବୀ ବହୁ ରାସକବିତା ଲେଖିଥିଲେ । ବିଂଶ ଶତାବ୍ଦୀରେ ନାରୀକବି ଅନ୍ନପୂର୍ଣ୍ଣା ପ୍ରଥମ ଥିଲେ । ଅଜସ୍ର କବିତା ଲେଖିବା ଦୋଷରୁ ବଡ଼ଖେମୁଣ୍ଡି (ଗଞ୍ଜାମ)ର ରାଜା ତାଙ୍କୁ ବାସନ୍ଦ କରି ଓ ତାଙ୍କର ଘରଦ୍ୱାର ସଂପତ୍ତି ବାଜ୍ୟାପ୍ତି କରି ରାଜ୍ୟରୁ ବାହାର କରି ଦେଇଥିଲେ । ସେ ବିଶାଖାପାଟଣାରେ ଅତି ଦୀନାହୀନା ହୋଇ ଋଣଗ୍ରସ୍ତା ହୋଇ ଜୀବିକା ନିର୍ବାହ କରୁଥିଲେ । ସ୍ୱର୍ଗତଃ ଲକ୍ଷ୍ମୀନାରାୟଣ ସାହୁଙ୍କ ଅନୁରୋଧରେ ୫୦୦ ଟଙ୍କା ମୁଁ ତାଙ୍କ ଋଣମୁକ୍ତି ପାଇଁ ପଠାଇଥିଲି । ଲକ୍ଷ୍ମୀ ନାରାୟଣ ମଧ ତାଙ୍କୁ ଆର୍ଥିକ ସାହାଯ୍ୟ ଦେଇଥିଲେ । ତାଙ୍କ ଝିଅ

ଶ୍ରୀମତୀ ମନୋରମା ପଟ୍ଟନାୟକ ରେଭେନ୍‌ସା ବାଳିକା ବିଦ୍ୟାଳୟର ପ୍ରଧାନ ଶିକ୍ଷୟିତ୍ରୀ ଥିଲେ ଓ ଓଡ଼ିଶା ବାଳିକାସ୍କୁଲ୍ ସମୂହର ଇନ୍‌ସପେକ୍‌ଟର ଥିଲେ । ମୁଁ, ରମାଦେବୀ, ବୃନ୍ଦାବତୀ ଦେଈ ପିଲା କାଳେ ଶିକ୍ଷାଦର୍ପଣରେ ପ୍ରବନ୍ଧ ଲେଖୁଥିଲୁ । ନାରୀକବି ଅପର୍ଣ୍ଣା କେନ୍ଦୁଝରର ରାଣୀଙ୍କ ଅର୍ଥ ସାହାଯ୍ୟରେ ତାଙ୍କର ପୁସ୍ତକଗୁଡ଼ିକ ପ୍ରକାଶ କରିଥିଲେ । ବର୍ତ୍ତମାନର କନିକା ରାଜାଙ୍କ ମାତା ରାସଛାନ୍ଦ ଲେଖି ଏକ ରାସଦଳ ଗଢ଼ି ତାଙ୍କ ସ୍ୱରଚିତ ନାନାବିଧ ଗୀତାଛାନ୍ଦ ସେମାନଙ୍କୁ ଶିଖାଇଥିଲେ ଓ ସେମାନେ ବିଭିନ୍ନ ସ୍ଥାନରେ ତାଙ୍କ ରଚିତ ଗୀତିନାଟ୍ୟ ପ୍ରଦର୍ଶନ କରୁଥିଲେ । କନିକା ରାଜାଙ୍କ ଝିଅ ଶ୍ରୀମତୀ କନକ ମଞ୍ଜରୀ ଦେବୀ (ନରସିଂହପୁର ରାଣୀ) ରାମଚରିତ ସମ୍ବନ୍ଧୀୟ ବହୁ କାବ୍ୟ କବିତା ଲେଖି ପ୍ରକାଶ କରିଥିଲେ । ଉତ୍କଳଭାରତୀ କୁନ୍ତଳା କୁମାରୀଙ୍କ ଗଦ୍ୟପଦ୍ୟ ଗ୍ରନ୍ଥାବଳୀ ପ୍ରକାଶିତ ହୋଇଅଛି । ସେ ମଧ୍ୟ ରେଭେନସା ବାଳିକା ବିଦ୍ୟାଳୟରେ କିଛିଦିନ ଛାତ୍ରୀ ଥିଲେ । ସେ ହିନ୍ଦି ଓ ଇଂରାଜୀରେ ମଧ୍ୟ କବିତା ଲେଖିଥିଲେ । ଶ୍ରୀମତୀ ସୀତାଦେବୀ ଖାଡ଼େଙ୍ଗଙ୍କ କବିତା, ନାଟକ, ଉପନ୍ୟାସ ପ୍ରକାଶିତ ହୋଇଅଛି ।

ଶ୍ରୀମତୀ ଶୈଳବାଳା ପଣ୍ଡିତ (ରେଭେନ୍‌ସା ବାଳିକା ସ୍କୁଲ ହିନ୍ଦି ଶିକ୍ଷୟିତ୍ରୀ) ଅତି ଚମତ୍କାର ଭାବରେ ଓଡ଼ିଆ କବିତାକୁ ହିନ୍ଦିରେ ସ୍ୱରଛନ୍ଦ ସହିତ ଅନୁବାଦ କରିଛନ୍ତି । ଶ୍ରୀମତୀ ସୁନ୍ଦରମଣି ପଟ୍ଟନାୟକଙ୍କ ଛାନ୍ଦ, କାବ୍ୟ କବିତା ପୁସ୍ତକମାନ ପ୍ରକାଶ ଲାଭ କରିଅଛି । ବୀଣା ମହାନ୍ତି ଓ ଅଳକାଚାନ୍ଦ ମନୋବିଜ୍ଞାନୀ ଢଙ୍ଗରେ କବିତା ଓ ଗଳ୍ପ ଲେଖୁଛନ୍ତି । ଶ୍ରୀମତୀ ପଦ୍ମାଳୟା ଦାସ ମଧ୍ୟ ଇଂରେଜୀ କବିତା ଲେଖି ପ୍ରସିଦ୍ଧା । ଶ୍ରୀମତୀ ମନୋରମା ଦେବୀ, ହରିପ୍ରିୟାଦେବୀ ଓ ନିର୍ମଳାଦେବୀ, ଶ୍ରୀମତୀ ବୀଣାପାଣି ମହାନ୍ତି, ବୀଣାପାଣି ପତି, ବିଦ୍ୟୁତ୍‌ଲତାଦେବୀ, ବୀଣାପାଣି ମହାପାତ୍ର, କୁନ୍ତଳାକୁମାରୀ ଆଚାର୍ଯ୍ୟ, ଉତ୍କଳଭାରତୀ କୁନ୍ତଳାକୁମାରୀ, ବସନ୍ତ କୁମାରୀ ପଟ୍ଟନାୟକ ପ୍ରଭୃତି ଗଦ୍ୟ ପଦ୍ୟ ଲେଖିକାମାନଙ୍କର ସାହିତ୍ୟ ଅବଦାନ ଉଲ୍ଲେଖଯୋଗ୍ୟ । ରେଭେନ୍‌ସା ବାଳିକା ବିଦ୍ୟାଳୟର ବହୁଛାତ୍ରୀ ସାହିତ୍ୟର କବିତା, ନାଟକ ପ୍ରଭୃତି ଲେଖି ସୁନାମ ଅର୍ଜ୍ଜନ କରିଛନ୍ତି । ତୁଳସୀଦାସ, ବ୍ରହ୍ମୋତ୍ରୀ ଦେବୀ ପ୍ରଭୃତି ବହୁତ ଆଧୁନିକ ନାରୀ କବିଙ୍କ ଦାନ ଅବିସ୍ମରଣୀୟ । ସ୍ୱାଧୀନତା ପ୍ରାପ୍ତିପରେ ବହୁ ଆଧୁନିକ ଗଦ୍ୟଧର୍ମୀ ନାରୀକବିଙ୍କର ଅଭ୍ୟୁଦୟ ଘଟିଅଛି । ମଫସଲରେ ବହୁନାରୀ କବି ଓ ଲେଖିକା ଅଜଣା ଅଶୁଣା ଭାବରେ ରହିଛନ୍ତି । ଅର୍ଥାଭାବରୁ ସେମାନଙ୍କ ପ୍ରତିଭା ବଣମଲ୍ଲୀ ଭଳି ଅନାଦୃତ ଭାବରେ ଝଡ଼ି ଯାଇଛି—ଯାଉଛି ।



# ବିଶୁର ଅଭିଶାପ

## ପ୍ରଥମ ଦୃଶ୍ୟ

ଚନ୍ଦ୍ରଭାଗା ସମୁଦ୍ରରେ ଧାଡ଼ି ଧାଡ଼ି ବୋଇତ ଶ୍ରେଣୀ ପାଇକ ସେନାବାହିନୀଙ୍କୁ ବଣ ଉପକୂଳରେ ପହଞ୍ଚାଇବା ପାଇଁ ସଜ ହୋଇ ରହିଛି । ଜାହାଜ ପୂର୍ବ ଦିଗକୁ ଗତି କରିବ ସୂର୍ଯ୍ୟର ଅରୁଣାଭ ଜ୍ୟୋତି ଆକାଶରେ ସଙ୍କେତ ଦେଲା ସୂର୍ଯ୍ୟ ଉଦୟର ଆସନ୍ନ । ଜାହାଜ ଶ୍ରେଣୀର ଛାୟା ଦିଶୁଥିଲା ସମୁଦ୍ରର ନୀଳ ଜଳରେ । ଉତ୍କଳର ସମ୍ରାଟ ଲାଙ୍ଗୁଳା ନରସିଂହ ଦେବ ଏକ ଦୃଷ୍ଟିରେ ଚାହିଥାନ୍ତି ସେହିଆଡ଼େ । ସେହି ସମୟରେ ସୁବର୍ଣ୍ଣ ଦୀପ୍ତ ମଣ୍ଡଳରୁ ସୂର୍ଯ୍ୟ ଉଦୟ ହେଲେ । କେତେକ୍ଷଣ ରାଜା ସୂର୍ଯ୍ୟଙ୍କୁ ଚାହିଁଲେ । ଆଣ୍ଠୁମାଡ଼ି ବସି ଧ୍ୟାନସ୍ଥ ହେଲେ । ଚେତନା ହେବାରୁ ହାତ ଯୋଡ଼ି ସୂର୍ଯ୍ୟ ନାରାୟଣଙ୍କୁ ପ୍ରାର୍ଥନା କରି କହିଲେ ଆଜି ଉତ୍କଳର ପାଇକ ବାହିନୀ ଅର୍ଣ୍ଣବ ପୋତରେ ଯବନ ଅଭିଯାନରେ ବିଦାୟ ହେଉଛନ୍ତି ଏ ଖଣ୍ଡ ମଣ୍ଡଳର ଦେବତା ତୁମେ । ସେହି ବାହିନୀ ବିଜୟୀ ହୋଇ ଆସିଲେ ଗଙ୍ଗାଠାରୁ ଗୋଦାବରୀ ଯାଏ ଉତ୍କଳ କଳିଙ୍ଗର ସାମ୍ରାଜ୍ୟ ପ୍ରତିଷ୍ଠା ହେବାର ସ୍ୱପ୍ନ ମୋର ସାର୍ଥକ ହେବ । ମୁଁ ପ୍ରତିଜ୍ଞା କରି କହୁଛି ଏହି ବିଜୟର ଚିହ୍ନ ରୂପେ ଏହି ଚନ୍ଦ୍ରଭାଗା ବନ୍ଦରରେ ମୁଁ ଆପଣଙ୍କର ପୂଜା ପାଇଁ ମୁଁ ଏପରି ମନ୍ଦିର ପ୍ରତିଷ୍ଠା କରିବି ଯାହାକି ପୃଥିବୀରେ ଅତୁଳ ହେବ । ବିଶ୍ୱକର୍ମାମାନେ ହିଁ ମନ୍ଦିର ବିନ୍ଧାଣୀ ହେବେ ରାଜା ଉଠି ଆସିଲେ ।

ସେନାପତି ସାମନ୍ତରାୟ– ପ୍ରଣାମ କରୁଛୁ ଛାମୁଁ । କାଲିଠାରୁ ଆମ ସେନାବାହିନୀ ପ୍ରସ୍ତୁତ । ଆପଣ ଆଜ୍ଞା ଦେଲେ ସେମାନେ ଅଭିଯାନ ଆରମ୍ଭ କରିବେ ।

ରାଜା– ଧନ୍ୟବାଦ ସେନାପତି, ମୁଁ ଆଶା କରେ ତୁମେ କଳିଙ୍ଗର ନାମ ରଖିବ ।

ଗୁପ୍ତଚର– ଆଜ୍ଞା ମଣିମା, ମୁଁ ସମ୍ବାଦ ପାଇଛି ଯବନ ସେନା କଳିଙ୍ଗ ସୀମାକୁ ମାଡ଼ି ଆସିବା ମତଲବ କରିଛନ୍ତି ।

ମନ୍ତ୍ରୀ– ଓଡ଼ିଆ ସେନାବାହିନୀ ବଙ୍ଗଳାରେ ପଶି ତାର ମୁକାବିଲା କରିବେ । ଓଡ଼ିଆ ବୀରଜାତି, ପରାଜୟୀ ତାର ଭାଗ୍ୟ ନୁହେଁ ।

ରାଜା– ସାଧୁ, ସାଧୁ ! ସେନାବାହିନୀଙ୍କୁ ସମ୍ବର୍ଦ୍ଧନା କରି ସେମାନଙ୍କ ମଥାରେ ଚନ୍ଦନ ସିନ୍ଦୁର ଲଗାଇ ଦିଅ– ଶିରିପା ବାନ୍ଧିଦିଅ ।

ମନ୍ତ୍ରୀ— ଯେ ଆଜ୍ଞା (ତଥାକରଣ)

ରାଜା— ସାମନ୍ତରାୟ, ତୁମେ ସେନାପତିର ସମସ୍ତ ଦକ୍ଷତାର ଅଧିକାରୀ । ମୋତେ ପାରାବତ ଦ୍ୱାରା ଯୁଦ୍ଧର ସମ୍ବାଦ ଦେଉଥିବ, ସୈନ୍ୟ ଶୃଙ୍ଖଳିତ କରି ପରିଚାଳନା କରିବା କଥାରେ ତୁମେ ଅଭିଜ୍ଞ ।

ସେନାପତି— ଯାହା ଆଦେଶ— ତାହା ପାଳନ କରିବି ।

ରାଜା—ସୈନ୍ୟମାନେ, ଏହି ଉଦୀୟମାନ ସୂର୍ଯ୍ୟ ଦେବତାଙ୍କୁ ପ୍ରଣାମ କରି ବୀରଭୂମି ତୁମମାନଙ୍କର ଜନ୍ମଭୂମି ଏହି କଳିଙ୍ଗ ଦେଶର ଟେକ ରଖିବାକୁ ତୁମେ ଅଭିଯାନ କରିଯାଅ । ଆଜି ମାହେନ୍ଦ୍ରବେଳାରେ ଶୁଭଲଗ୍ନ ଦେଖି ପୁରୋହିତ ନିର୍ଦ୍ଦେଶ କରିଛନ୍ତି । କାର୍ଯ୍ୟ ସାଧନ ପାଇଁ ଦେଶ ପାଇଁ ପ୍ରାଣ ଦିଅ ।

ସୈନ୍ୟ ବାହିନୀ— ରାଜାଙ୍କୁ ଅସ୍ତ୍ରଦ୍ୱାରା ଅଭିବାଦନ କରି ବିଦାୟ ହେଲେ ।

× × × × × × ×

## ଦ୍ୱିତୀୟ ଦୃଶ୍ୟ

ରାଜାଙ୍କ ଅନ୍ତପୁର । ରାତ୍ରି ଚତୁର୍ଥଯାମ । ନଅର ନିସ୍ତବ୍ଧ । କିନ୍ତୁ ଜଗନ୍ନାଥଙ୍କ ପହୁଡ଼ ଭାଙ୍ଗିବାରୁ ଶ୍ରୀ ମନ୍ଦିରର ଶଙ୍ଖ ଓ ଘଣ୍ଟା ଧ୍ୱନି, ଆରତୀ ଅବକାଶ ସେବା ଆରମ୍ଭ ହେଲାଣି, ରତ୍ନଖଚିତ ଗଜଦନ୍ତ ପଲଙ୍କରୁ ମହାରାଣୀ ସହସା ଉଠି ପଡ଼ିଲେ ।

ରାଜା— କଣ ହେଲା ରାଣୀ ! ତୁମେ ଚମକି ପଡ଼ିଲ ଯେ ?

ରାଣୀ— ମହାରାଜ, ଅତି ଅଦ୍‌ଭୁତ ସ୍ୱପ୍ନ ଦେଖିଲି । ମୋର ଦେହ କମ୍ପି ଉଠୁଛି ।

ରାଜା— (ବିସ୍ମିତ ହୋଇ) କି ସ୍ୱପ୍ନ, କି ସ୍ୱପ୍ନ ଦେଖିଲ ରାଣୀ ?

ରାଣୀ— ହଠାତ୍ ପୂର୍ବ ଦିଗ ସିନ୍ଦୁରିତ ହୋଇଗଲା, ସପ୍ତାଶ୍ୱ ରଥ ବାହନରେ ଏକଚକ୍ର ରଥରେ ବସି ସୂର୍ଯ୍ୟଦେବତା ହସି ହସି କହିଲେ— ରାଣୀ ! ପାଇକ ସେନା ଚନ୍ଦ୍ରଭାଗା ବେଳାରୁ ପୋତାଶ୍ରୟ କରି ଯବନମାନଙ୍କୁ ଜୟ କରିବାକୁ ଗଲା ଆଗରୁ ମୋତେ ଚାହିଁ ତୁମ ସ୍ୱାମୀ ଯେଉଁ ପ୍ରତିଜ୍ଞା କରିଥିଲେ ତାହା ପାଳନ କରିବାକୁ ତାଙ୍କୁ କହ । ଯବନ ବିତାଡ଼ିତ, କଳିଙ୍ଗ ସେନା ବିଜୟୀ ହୋଇଛନ୍ତି ।

ରାଜା— (ଭକ୍ତି ଭାବ ବିହ୍ୱଳ ହୋଇ) ଓଃ ମୁଁ କି ଅଧମ । ମୋର ମାନସିକ ତେବେ ସୂର୍ଯ୍ୟନାରାୟଣ ସଫଳ କରିଛନ୍ତି । ମୁଁ ସୂର୍ଯ୍ୟ ମନ୍ଦିର ନିର୍ବାଣ କରିବାର ସଂକଳ୍ପ ଭୁଲି ଯାଇଅଛି । (ହାତଯୋଡ଼ି) ପ୍ରଭୁ ସୂର୍ଯ୍ୟନାରାୟଣ, ଅଧମକୁ କୃପା କରନ୍ତୁ ମୋର ମନବାଞ୍ଛା ପୂର୍ଣ୍ଣ ହେଲା ।



# ଆଧୁନିକ ସାହିତ୍ୟରେ ନାରୀ

ଭାରତୀୟ ସାହିତ୍ୟରେ ଯଶୋଦା କୁନ୍ତୀ ଗାନ୍ଧାରୀ ପ୍ରଭୃତି ମା' ମାନଙ୍କର ବର୍ଣ୍ଣନା ବହୁଳ । ଟଡ ସାଇବଙ୍କ ରାଜସ୍ଥାନ ଇତିହାସରେ ଧାତ୍ରୀ ପାନ୍ନାଙ୍କ ଅପୂର୍ବ ଦେଶପ୍ରୀତି ଓ ମୁନିବ ରାଜବଂଶ ପ୍ରତି ଭକ୍ତି ଯୋଗୁ ନିଜର ସନ୍ତାନ ବଳୀ ଦେଇ ରାଜଶିଶୁକୁ ରକ୍ଷା କରିବା କାହାଣୀ, କୃଷ୍ଣକୁମାରୀ ବିଷ ପାନ କରି ରାଜ୍ୟ ଲୋକ ପିତାର ରାଜତ୍ୱ ପାଇଁ ମୋଗଲ ରାଜା କବଳରୁ ଆତ୍ମହତ୍ୟା କରିବା, ପଦ୍ମିନୀଙ୍କର ୧୫୦୦ ଅନ୍ତଃପୁରିକାମାନଙ୍କ ସହ ମୋଗଲ କବଳରୁ ଆତ୍ମରକ୍ଷା ପାଇ ଜହରବ୍ରତ କରି ଅଗ୍ନିରେ ଜଳିଯିବା କଥା ଲେଖା ଅଛି । କିନ୍ତୁ ଆମର ଏ ଯୁଗ ସାହିତ୍ୟରେ ନାରୀକୁ ଏକ ଭୋଗଯନ୍ତ୍ର ରୂପେ ପରିଣତ କରି ଘରଛଡ଼ା କରିବାର ଇଙ୍ଗିତ ଦେଇଛନ୍ତି, ପତ୍ର ପତ୍ରିକା ଓ ସିନେମାର ଅଶ୍ଳୀଳ ସାହିତ୍ୟ ମାଧମରେ । ଯେଉଁମାନେ ସମ୍ବାଦପତ୍ର ମାସିକପତ୍ର ଓ ଆଧୁନିକ କୁରୁଚିପୂର୍ଣ୍ଣ ଅଶ୍ଳୀଳ ବହି ପଢ଼ିବାର ରୁଚି ରଖନ୍ତି, ସେମାନେ ଏହା ଜାଣନ୍ତି ବୋଲି କିଣି ପଢ଼ିଥାନ୍ତି ଓ ଝିଅ ବୋହୂକୁ ସେ ବହି ଯୋଗାନ୍ତି ଓ ସିନେମାକୁ ନେଇ ଶୁଣାଇଥାନ୍ତି । ଆଧୁନିକ ସାହିତ୍ୟର ମନୋରଞ୍ଜକ ବାଣୀ,—

''ବୋଉଲୋ ! କି କହିବି ନୂଆ ଭାଉଜଙ୍କ କଥା
ସକାଳୁ ଉଠି ଦାନ୍ତ ନ ଘଷି
ଚା' ପିଅନ୍ତି ପଲଙ୍କେ ବସି
ମୁଁ ଟିକେ ମାଗିବାରୁ ହେଲେ ସେ ଗାରୁ ଗାରୁ
କହିଲେ ଯା ଯା ଯା'ରେ ଦିଅର ଟୋକା ।

× × × × ×

ପୁଣି ସାବି ସାବି ତୁତ ମୋର ନାଲିପାନ ବିବି
ତୋହରି ଲାଗି ଥାନାକୁ ଯିବି
ଦିନେ ହେଲେ ମୁଁ ତୋତେ ଉଡ଼ାଇ ନେବି
ତୁତ ମୋର ଗୋଲାପ ତୋଡ଼ା
ତୋ ଲାଗି ମୋ ଘର ଉଜୁଡ଼ା.....

× × × × ×

ପୁଣି :—

ଫୁଲେଇ ରାଣୀ ସଜଫୁଲ ଗୁଲୁଗୁଲିଆ
ତୋରି ଲାଗି ବେହୋସ ଏ ସାରା ଦୁନିଆଁ
ବଉଳ ପେଛି.... ନାଇଚୁ ଗୁଛି....
ଜବାବ ନାହିଁ ଆହା !
ଭିତର ଫମ୍ପା ଉପର ଚକଚକିଆ ! ........
ଅଥବା
ହେମ ହରିଣୀ ମଥାର ମଣି କରନା ନାହିଁ ନାହିଁ ନାହିଁରେ....

ଏହାହିଁ ବ୍ୟବସାୟୀ ସାହିତ୍ୟକାର ଓ ଚିତ୍ର ନିର୍ମାତା ମାନଙ୍କର ଆମ ସାହିତ୍ୟକୁ ଏ ଯୁଗର ଅବଦାନ ସିନା ?

ଏହି ଗୀତ କି ସହର ଓ କି ମଫସଲର ସିନେମା ଦେଖା ପିଲାଏ ବରାବର ବୋଲୁଥାନ୍ତି । ଏ ଯୁଗ କିଶୋର କିଶୋରୀଙ୍କର ଏ ହେଲା ଭାଗବତ ।

ଏବେ ଭାରତ ସରକାରଙ୍କର କୁମ୍ଭକର୍ଣ୍ଣ ନିଦ୍ରା ୧୯୪୬ ଠାରୁ ୧୯୭୦ ପରେ ପରେ ଭାଙ୍ଗି ଭାଙ୍ଗି ଆସୁଛି । କାରଣ ଏବେ ଭାରତର ପାର୍ଲାମେଣ୍ଟାରି ମନ୍ତ୍ରୀ ପାର୍ଲାମେଣ୍ଟ ଉପଦେଷ୍ଟା କମିଟିରେ କହିଛନ୍ତି, ଯେଉଁସବୁ ସିନେମାରେ ଯୌନଭାବ ଓ ହିଂସାଭାବକୁ ଅଧିକ ପ୍ରାଧାନ୍ୟ ଦିଆ ହେଉଛି ସେ ସବୁ ସିନେମା ବିରୁଦ୍ଧରେ ସରକାର କଠୋର ବ୍ୟବସ୍ଥା ଗ୍ରହଣ କରିବେ । ଯାଁଚ କମିଟିକୁ ସରକାରୀ ନିର୍ଦ୍ଦେଶ ଯାଇଛି ସିନେମାରୁ ହିଂସା ଓ ଯୌନ ଦୃଶ୍ୟକୁ କଟାଯିବ । ସେ କହଲେ ସିନେମା ମାଲିକ ଓ ନିର୍ମାତାମାନେ କେବଳ ବହୁତ ଲାଭ ଉଠାଇବାକୁ ହିଁ ଏପରି ଅସାମାଜିକ ଅବାଞ୍ଛନୀୟ ଚିତ୍ର ନିର୍ମାଣ କରୁଛନ୍ତି । ତେଣୁ ଚଳଚ୍ଚିତ୍ରରୁ ଏ ସବୁ ଦୃଶ୍ୟ କଟା ହେବାକୁ ସରକାରୀ ନିର୍ଦ୍ଦେଶ ଓ ସତର୍କ କରାହେଇଛି ।

(ମାତୃଭୂମି ୧୮.୭.୭୦)

ଦେଶର ସ୍ୱାଧୀନତା ପୂର୍ବରୁ ଓଡ଼ିଶା କଂଗ୍ରେସ ମନ୍ତ୍ରୀମାନେ ହାଇଫେନ ବହି ବ୍ୟାଜାପ୍ତି ସତକଥା ସମ୍ବାଦପତ୍ର ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିଥିଲେ । ଉତ୍କଳ ମହିଳା ପରିଷଦ ମଧ୍ୟ ଏଦିଗରେ ସରକାରଙ୍କୁ ଲେଖିଥିଲେ । ତେଣୁ କାର୍ଯ୍ୟ ହୋଇଥିଲା । ମୁଁ ମଧ୍ୟ ବହି ବ୍ୟାଜାପ୍ତି କରାଇଥିଲି ଓ ସମ୍ବାଦପତ୍ର ବିରୁଦ୍ଧରେ ମୁଖ୍ୟ ଅଂଶ ନେଇ ୧୯୩୬-୩୭ରେ ଏସବୁ କାର୍ଯ୍ୟ କରାଇଥିଲି । ତା'ପରେ ମନ୍ତ୍ରୀମଣ୍ଡଳ ଭାଙ୍ଗିଲାରୁ ପୁଣି ଅଶ୍ଳୀଳତା ଦେଶ ସ୍ୱାଧୀନତା ପ୍ରାପ୍ତିପରେ ଚଉହାତ ମେଲାଇ ଦେଶରେ ବିଜ୍ଞାପନ, ସାହିତ୍ୟ, ଶିଳ୍ପ, ସଂଗୀତ, ନୃତ୍ୟ ଓ ଦୈନିକ ସମ୍ବାଦପତ୍ର ପାକ୍ଷିକ ଓ ସାପ୍ତାହିକ ପତ୍ରରେ କବନ୍ଧନୃତ୍ୟ ଆରମ୍ଭ

କରିଦେଲା । 'ଧରମ ଝିଅ' 'ଦେହ ଓ ଦାହ' କେତେକଣ କରୁଛି ପ୍ରଚ୍ଛଦପଟର ପରକୀୟା ନଭେଲ, ଡିଟେକ୍‌ଟିଭ ନଭେଲ, ଘରଛଡ଼ା ନଭେଲ, ଗୀତଗାଥାମାନ ବଜାର ଛାଇଦେଲା । ଘରଣୀ ମାନଙ୍କର ରୁଚି ପିଲାଦିନୁ ସେଇ ଅନୁସାରେ ଗଢ଼ି ଉଠିଲା । ହିପି ବିଟଲସ ଦଳ ପୃଥିବୀରେ ସବୁଆଡ଼ ବୁଲିଲେ । ଭାରତକୁ ଆସିଲେ । ସେମାନଙ୍କ ଠାରୁ ନଳୀପେଣ୍ଟ, ବାଳ ଦାଢ଼ି, ଗାଲରେ ଚଉଡ଼ା କଲି, ବ୍ଲାଉସ, ହୁଗୁଳା ପଞ୍ଜାବୀ ଅଧାହାତ କୁର୍ତ୍ତା ପାଇଜାମା ମୁଣ୍ଡ ନୁଖୁରା, ଦେହ ପାଣ୍ଡୁର, ଖଡୁ ଚୂଡ଼ି ପଛରେ ଲେଡିସ ୱାଚ, ଜୋତା ଚଟି ଚପଲ ସହିତ ସରୁ ରୂପା ପାଉଁଜି ଅଧା ଛାତିକଟା ପେଟ ପିଠିକଟା କାଞ୍ଚୁଲି ବ୍ଲାଉସ କେତେ କଣ ସିନେମା-ନୁକରଣରେ ବାହାରିଲା । ପିଠିରେ ଅଞ୍ଚଳ ଘୋଡ଼ା ନହୋଇ କାନ୍ଧ ଆଲନାରେ ଝିଅ ବୋହୂ ଓହଳାଇଲେ । ନାକ ଫୋଡ଼ା ନୋଲକ ନାକଛବି ବହୁକାଳରୁ ଅନ୍ତର୍ଦ୍ଧାନ ହୋଇଥିଲା । ଏବେ ସିନେମା ନାୟିକା ନାକ ଫୋଡ଼ା ଗହଣା ପିନ୍ଧିବାରୁ ତାହାବି ଆମ ଯୁବତୀକୁଳରେ ଆରମ୍ଭ ହେଲା । ଅଙ୍ଗ ରାଗ ନେଲପଲିସ ବିଭିନ୍ନ ରଙ୍ଗର କୁଙ୍କୁମ କଳା ପାଉଡର ଲାଞ୍ଜିରେଖା ପାଇଁ ବଜାରକୁ ଆସିଲା । ଶେଷରେ ଆମ ଗୃହସ୍ଥ ଓ ଭାବୀ ଗୃହିଣୀମାନେ ଘରଛାଡ଼ି ପିଲାପକେଇ ଘରଭାଙ୍ଗି ବଚସ୍କର ବୃହନ୍ନଳା ସ୍ୱାମୀମାନଙ୍କୁ ଧରି ବା ଛାଡ଼ି ବଞ୍ଚିଲେ । ଘର ରହିଲା ନାହିଁ ଯାହା ସର୍ବପ୍ରାଣର ଏକାନ୍ତ ଆଶ୍ରୟସ୍ଥଳୀ ଦିନେ ଥିଲା । ଅନ୍ନ ବାଢ଼ିବା, ଅନ୍ନ ରାନ୍ଧିବା ଘରଣୀଙ୍କ ସ୍ଥାନ ହୋଟେଲ ପୂଜାରୀ ପୂରଣ କଲେ ।

ସୁତରାଂ ଏ ଯୁଗରେ ଓଡ଼ିଆଣୀଙ୍କୁ ଭାରତର ନାରୀଙ୍କୁ ଗୃହସଜାଡ଼ି ମାତୃତ୍ୱ ପ୍ରସ୍ତୁତିର ଉତ୍ତମ ସଂସ୍କାର ଓ ପତ୍ନୀତ୍ୱ ପ୍ରସ୍ତୁତିର ଉତ୍ତମ ତପସ୍ୟା, ସଂଯମ ଓ କୃଚ୍ଛ ସାଧନାମୟ, ଶୃଙ୍ଖଳିତ ଭାରତୀୟ ଜୀବନଯାତ୍ରା ଚଳଣୀର କଥା କେଉଁ ସାହିତ୍ୟକାର କହନ୍ତି ନାହିଁ । ସେ ଚିତ୍ର ଆଜିକା ନକ୍ସଲ ବାଡ଼ିର ସାହିତ୍ୟରେ ଅଦୃଶ୍ୟ । ପୁଣ୍ୟ ସାହିତ୍ୟ ଯାହା ନାରୀକୁ ମହିମା ମଣ୍ଡିତ କରିଥିଲା । ତାହା ଆଜି ନାରୀକୁ ନରକର ଜୀବ, ସନ୍ତାନ ଶୋଷଣକାରିଣୀ ପୁତନାର ରୂପ ଦେଇଅଛି । ଜନନୀ ନାହିଁ, ଜାୟା ନାହିଁ– ଅଛି କେବଳ ସୈରିଣୀ-ବାରାଙ୍ଗନାର ପଙ୍କିଳ ଚିତ୍ର । ସୁତରାଂ ସାହିତ୍ୟରେ ଘରକି ଘରଣୀ ନାହାନ୍ତି । ନରନାରୀ ସନ୍ତାନ ପିତାମାତା ସମ୍ବଳିତ ଏକାନ୍ନବର୍ତ୍ତୀ ଗୃହସ୍ଥ ଘର ନାହିଁ । ନରନାରୀ ସନ୍ତାନ ଧରି ଖୋଲା ଆକାଶ ତଳେ ଖରା କାକର ବର୍ଷା ତଳେ ରାସ୍ତା କରରେ ଗଛମୂଳେ ଶୁଅନ୍ତି, ଖାଆନ୍ତି–ବଢ଼ନ୍ତି । ମନୁଷ୍ୟ ଗୃହହୀନ ଯାଯାବର ଓ ଘରଣୀ ଅଘରୀ । ଏଥିପାଇଁ ରାଷ୍ଟ୍ରନୀତି ଠାରୁ ଏବର ସାହିତ୍ୟ ଓ ସମ୍ବାଦପତ୍ରମାନେ ସାମାଜିକ ଦାୟିତ୍ୱରୁ ମୁକ୍ତ ନୁହନ୍ତି । ଏ ପାପର ଭାଗିଦାର ସେମାନେ ମଧ୍ୟ ।

ନାରୀ କେତୋଟି I.A.S ବା ସରକାରୀ ଚାକିରି କଲେ ପ୍ଲେନ ଉଡ଼ାଇ ପଇସା ଆଣିଲେ କେବଳ ଘରବାନ୍ଧି ପାରିବେ ନାହିଁ କି ସେ ଘରର ଗରଣୀ ହୋଇ ସ୍ଥାୟୀଭାବେ

ରହି ପାରିବେ ନାହିଁ । ବହୁରୂପା ଏଣ୍ଡୁଅ ତୁଲ୍ୟ ଏହି ଦୁର୍ଭାଗ୍ୟକ୍ଲିଷ୍ଟ ନରନାରୀମାନେ ଜୀବନରେ ଲକ୍ଷ୍ୟ ହରାଇ ଆଧୁନିକ ବିଜ୍ଞାନ ସଭ୍ୟତା ଓ ନବ ସଂସ୍କୃତିର ରଥଚକ୍ର ତଳେ ନିଷ୍ପେଷିତ ହୋଇଯିବେ । ତାହା ହୋଇ ଆସିବାର ଦାରୁଣ ବିଡ଼ମ୍ବନାକୁ ସାହିତ୍ୟକାରମାନେ ନାନା ବିକୃତ ଆଲେଖ୍ୟରେ ଭାଷା ଭାବ ଓ ଆଦର୍ଶହୀନ ଚିତ୍ରରେ ଚିତ୍ରିତ କରି ଆମର ଘର ଘରଣୀଙ୍କୁ ଗୁଡ଼ି ପରି ଆକାଶରେ ଉଡ଼ାଇଛନ୍ତି ।

ପ୍ରତି ଦେଶର ଗୋଟିଏ ଗୋଟିଏ ବିଶିଷ୍ଟତା ଓ ଚଳଣୀର ରୀତି ପରଂପରା ଅବଧାରିତ ହୋଇ ରହିଛି । ତାହାର ସାମୟିକ ପରିବର୍ତ୍ତନ କେଉଁଠି ଦୃଷ୍ଟିଗୋଚର ହେଲେ ମଧ ତାହା ଚିରନ୍ତନ ନୁହେଁ । ଆମ ଦେଶରେ ଗୃହିଣୀ କର୍ମ ଶିକ୍ଷା ଝିଅ ପିଲାଦିନୁ ମାଆଙ୍କ ପାଖେ ଖୁଡ଼ି ମାଉସୀ ପାଖେ ରହି ଶିଖନ୍ତି । ମାଆଙ୍କୁ ଘରକାମରେ ଛୋଟ ଭାଇ ଭଉଣୀଙ୍କ ସେବାରେ ସେମାନେ ସାହା ହୁଅନ୍ତି । ଘରକାମରେ ଗୃହିଣୀର କର୍ତ୍ତବ୍ୟ କଣ ସେମାନେ ତହିଁରେ ଅଭ୍ୟସ୍ତ ହୁଅନ୍ତି । ବର୍ତ୍ତମାନ ନାରୀଶିକ୍ଷା ଚାକିରି ଜୀବିକାର ନାନା ପ୍ରକାର ସମସ୍ୟାରେ ଜଡ଼ିତ ହୋଇ ପଡ଼ିଛି । ସମାଜରେ ତାର ସଂପତ୍ତି ଓ ସନ୍ତାନ ଅଧିକାରକୁ ରାଷ୍ଟ୍ର ମାନିଛି । ମାତ୍ର ସମାଜ ଗୃହ ପରଂପରା ଏହା ମାନୁନାହିଁ ବୋଲି ନାରୀ ପଥହରା ହୋଇ ଉତ୍‌କ୍ଷିପ୍ତ ବିଚଳିତା ହୋଇ ଧୈର୍ଯ୍ୟହରା ହେଉଛି । ସେ ସୁରୁଖୁରୁରେ କିପରି ବଞ୍ଚିରହିବ ଏକଥା ୩୦ ବର୍ଷ ପୂର୍ବେ ସେ ଭାବୁ ନଥିଲା । ମାତ୍ର ୨୫ବର୍ଷ ହେଲା ସେ ତାହା ଭାବି ନିଜର ପଥର ସନ୍ଧାନ ଖୋଜି ଖୋଜି ବାଉଳି ହୋଇଯାଉଛି । ତାର ସଂସ୍କାର (convention) ସବୁ ଭାଙ୍ଗି ଗଲାରୁ ସେ ଜୀବନ ପଥର ସନ୍ଧାନ କରୁଛି । ତେଣୁ ଏ ନୂଆ ପରିସ୍ଥିତିରେ ପୁରୁଣା ଗୃହଜୀବନ ତାକୁ ବନ୍ଧନ ପରି ମନେ ହେଉଛି । ଘରଣୀ ହେବାର ଅସୀମ ଶ୍ରମ ସାଧନା ଧୈର୍ଯ୍ୟ ତ୍ୟାଗଭାବ ତାର ରହୁନାହିଁ । ତେଣୁ ଯେଉଁ ଘରର ଘରଣୀ ସେ ହେଉଛି ସେ ଘରର ଘରକରଣା କରି ଗୃହିଣୀର କର୍ତ୍ତବ୍ୟ ଦାୟିତ୍ୱ ବହନ କରିବାକୁ ତା'ର ଇଚ୍ଛା ନାହିଁ । ସେ ଅଖଟୁ ବୋଲି ଗୃହ ରଚନା କରି ସମସ୍ତଙ୍କ ଆଶ୍ରୟସ୍ଥଳ ନୟନମଣି ହେବାକୁ ତାର ଅଭିରୁଚି, ଉତ୍ସାହ ଓ କର୍ମ ନିସ୍ପୃହ ଥିବାରୁ ସେ ଏକ କେନ୍ଦ୍ରିକ ଏକକ ସ୍ୱାର୍ଥପର ଜୀବନ ରଚନା ଚାହୁଁଛି । ଏହି ଦୟନୀୟ ପରିସ୍ଥିତିରୁ ଲେଖକମାନେ ମାଲ ସଂଗ୍ରହକରି ସେମାନଙ୍କ ମନର ପୁଟ ରଙ୍ଗ ଦେଇ ସେମାନେ ନାରୀକୁ ସର୍ବସଂହାଧରଣୀ ଜନ୍ମଭୂମି ରୂପରେ କଳ୍ପନା ନକରି ଏକ ହାଲୁକା ଦି'କଡ଼ିଆ ଭୋଗ୍ୟ ଜୀବ ସ୍ୱରୂପ ଚିତ୍ର କରି ସାହିତ୍ୟ ପଥରେ ଟାଙ୍ଗି ଦେଉଛନ୍ତି । ଆମ ସମାଜ ଓ ଏ ଦେଶ ଆଦି ଧ୍ୱଂସମୁଖୀ । ଭବ ସମୁଦ୍ର ମଝିରେ ଜୀବନ ଡଙ୍ଗା ଉବୁଟୁବୁ ହେଉଛି । କେଉଁଠି ଡଙ୍ଗା ଲଙ୍ଗର ପକାଇବ ତାର କୂଳ କିନାରା ନାହିଁ କି ସ୍ଥାନ ନାହିଁ । ଏପରି ନ ଯଯୌ ନ ତସ୍ଥୌ ଅବସ୍ଥାରେ ଆଜି ନାରୀଜାତି ପଡ଼ିରହିଛି ଅଜ୍ଞାନ ଅନ୍ଧାରରେ । ତାକୁ ଯେଉଁ ସାହିତ୍ୟକାର କୁତ୍ସିତ ଆଦର୍ଶର ପୁଟ ଦେଇଛନ୍ତି ଆମ ଘରମାନଙ୍କରେ ସେ କେଉଁ ନୀତି ସଂସ୍କାର ବୟାନ କରନ୍ତି ?

ଗୃହସ୍ଥ ଓ ଗୃହିଣୀ କି କି ଗୁଣରେ ଅଧିକାରିଣୀ ହୋଇ ଏ ଧର୍ମନିରପେକ୍ଷ କୃତ୍ରିମ ଜଡ଼ବାଦୀ ସମାଜର କୃତ୍ରିମ ବିଧିରୀତି ଓ ଆଚରଣରେ ଆଧୁନିକ ତଥାକଥିତ ପ୍ରଗତିଶୀଳ ବିଜ୍ଞାନ ଯୁଗରେ ଗୃହିଣୀର ଚିରନ୍ତନ ସାଧୁ ସଂସ୍କୃତି ଫେରି ଆସିବ ? I.A.S, ଦିପୋଟି, ଇଞ୍ଜିନିୟର, ଓକିଲ, ମଟର-ପ୍ଲେନ-ରେଳ ଚାଳିକା, ମାଷ୍ଟ୍ରାଣୀ, ଡାକ୍ତରାଣୀ ଏହି ପ୍ରଗତିଯୁଗର ପ୍ରଗତିଶିଳା ନାରୀମାନେ ସୁଗୃହିଣୀ ହେବାକୁ ସୁମାତା ହେବାକୁ ସେମାନଙ୍କର ବେଳ ଅଣ୍ଟିବ ନାହିଁ । ବ୍ୟବସାୟ ବା ଚାକିରି କରିବେ ଅଥବା କେତେବେଳେ ସୁମାତା ସୁପତ୍ନୀ ସୁନାଗରିକା ସୁଗୃହିଣୀ ହେବା ପାଇଁ ଧୈର୍ଯ୍ୟ ଓ ଅସୀମ ତ୍ୟାଗ କରିବାକୁ ସେମାନଙ୍କର ଶକ୍ତି ମତି ଓ ଅବସର ବା କାହିଁ ?

ଯେଉଁ ନାରୀ ଶୁଭେଚ୍ଛୁମାନେ ଏ ଯୁଗରେ ପ୍ରଗତିଶୀଳା ଓ ଆଗଉଥିବା ନାରୀମାନଙ୍କର ପୁଣି ସୁମାତା ସୁପତ୍ନୀ ହେବା ଉଚିତ ବୋଲି ଆଧୁନିକ ପ୍ରଗତିଶୀଳତା ସହିତ ପ୍ରାଚୀନ ନାରୀ-କୁମାରୀ ଜୀବନ ସଂସ୍କାରକୁ ମିଶାଇ ଦେଇ ସୁନ୍ଦର ଗୃହିଣୀ ମାତା ବନିତା ଗଢି ସମାଜ ସଂସ୍କୃତି ଗୃହ ପରିବେଶ ଓ ପରିସ୍ଥିତିକୁ ଆଦର୍ଶନୁସାରୀ ଉନ୍ନତଶୀଳ କରିବାକୁ ଇଚ୍ଛା କରନ୍ତି ତାହା ଅତି ଅସମ୍ଭବ ଓ ତାଙ୍କର ଧାରଣା ଭ୍ରମ । ଯେପରି ଟିକେ ନିଆଁରେ ତୁଳାଗଦା ପୋଡ଼େ, ଯେପରି ବିଲରୁ ପୋକମରା ଔଷଧ ଟୋପାଏ ଚାଷୀ ହାତରେ ଲାଗିଲେ ସେ ସେଇହାତେ ପାନଖଣ୍ଡେ ଖାଇଲେ ଏନ୍‌ଡ୍ରିନ୍ ବିଷ ଯୋଗୁଁ ମରିଯାନ୍ତି ସେଇପରି ଏଯୁଗ ଝିଅ ଜଡ଼ ବିଜ୍ଞାନ ପାଠକୁ ଜୀବନରେ ଶ୍ରେଷ୍ଠ ସ୍ଥାନ ଦେଇ ଶ୍ରୀମତ ଭାଗବତ, ରାମାୟଣ, ଶ୍ରୀଚଣ୍ଡି, ମହାଭାରତକୁ ଅବହେଳା କରି ପଣ୍ଡିତମନ୍ୟ ହୋଇ ନିଜ ଦେଶ ସଂସ୍କୃତି ଓ ପୁରାଣ ଶାସ୍ତ୍ରକୁ ଅବମାନନା କରି ଯେଉଁ ନାରୀ ପ୍ରଗତି ଢେଉରେ ଲହରୀ ଭାଙ୍ଗନ୍ତି ସେମାନେ ବୁଡ଼ି ମରିଯାନ୍ତି ।

ଏ ଯୁଗରେ ନରନାରୀଙ୍କୁ ଅନ୍ତର୍ମୁଖୀ କରିବା ଭଳି ସାହିତ୍ୟ ହେଉନାହିଁ । ସମସ୍ତଙ୍କୁ ଆମ ପୂର୍ବନେତା ପଣ୍ଡିତ ଜହରଲାଲ ନେହେରୁ ବହିର୍ମୁଖ କରାଇ ଦେଇ ଭୋଗବାଦୀ ଇନ୍ଦ୍ରିୟ ସର୍ବସ୍ୱ କରାଇ ଦେଇଗଲେ– ଧର୍ମ ନିରପେକ୍ଷ ନୀତି ପ୍ରୟୋଗ କରି । ଶିକ୍ଷା ଓ ସଂସ୍କୃତି ନାଶ ହୋଇ ହିନ୍ଦୁ କୋର୍ଡ଼ ସ୍ଥାପିତ ହେଲା । ଦେଶ ଓ ସମାଜର ମୂଳଦୁଆ ହଲିଯାଇ ତଳମାଟି ଉପର ଉପର ମାଟି ତଳ ହେଲା । କୃଷିମୁଖୀ ଦେଶକୁ ଯନ୍ତ୍ର କଳମୁଖୀ କରାହେଲା । ଏଇ ପରିସ୍ଥିତି ନାରୀକୁ ଗୃହିଣୀ ଅନ୍ନପୂର୍ଣ୍ଣା ରୂପ ନଦେଇ ଘରବାଲି ନକରାଇ ଦାଣ୍ଡବାଲି କଲା । ପୁରୁଷ ନାରୀକୁ ନ ପୋଷି ନାରୀ ପୁରୁଷକୁ ପୋଷିଲା । ପାଠପଢ଼ା ଚାକିରିକରା ଝିଅକୁ ବେକାର ବା ଅଳ୍ପ ରୋଜଗାରୀମାନେ ବିଭାହେଲେ । ନାରୀ ଗ୍ରାମସେବିକା ହୋଇ ଗ୍ରାମସେବା ସରକାରୀ କର୍ମଚାରୀଙ୍କ ସେବା କରିବାକୁ ବାଧ ହେଲା । ଯେଉଁମାନେ ଧନୀ ସେମାନେ ଗରିବ ଶିକ୍ଷିତଙ୍କୁ ଜୋଇଁ କଲେନାହିଁ । ଝିଅମାନେ ହାତରେ ଘରକାମ ରନ୍ଧାବଢ଼ା

କରିବାକୁ ପଡ଼ି ପରିବାର ମନ ଧରି ଚାଲିବାକୁ କଷ୍ଟମଣି ଶିକ୍ଷିତ ଅଳ୍ପ ରୋଜଗାରୀ ପୁଅକୁ ବିଭା ହେବାକୁ ନାରାଜ ହୋଇ ଚାକିରି କଲେ ବା ବାପଘରେ ବୁଢ଼ୀ ହେବା ଯାଏ ବାଡୁଅ ରହି ଜୀବନ କାଟିଲେ । ବହୁ ବିଧବା ଝିଅ ଯାହାକୁ ତାକୁ ଦାମୁଡ଼ି ମୂଲରେ ବାପମାଙ୍କ ଦ୍ୱାରା ବିକ୍ରିତ ହେଲେ । ପୁଣି ବିଧବାମାନେ କାଚଖଡ଼ୁ, ସିନ୍ଦୁର ନାଇଲେ, ଅଖାଦ୍ୟ ଖାଇଲେ ।

ଘରନାହିଁ, ଘରଣୀ ନାହିଁ । ମଠରେ ଦେଉଳରେ ଦେବତା ଅପୂଜା ରହି ତାଙ୍କ ସରଞ୍ଜାମ ମୂର୍ତ୍ତି ଅଳଙ୍କାର ଚୋରି ଯାଉଛି । ସରକାରୀ ଟ୍ରଷ୍ଟି ଦେଉଳ ଦିଅଁ ନୀତି ଚଳାଇଲା ପରି ଆମ କୁମାରୀ ଓ ଘରଣୀମାନଙ୍କ ପରଂପରାଗତ ଜୀବନକୁ ସରକାର ଓ ତାଙ୍କ ଏମ୍ପ୍ଲୟମେଣ୍ଟ ସଂସ୍ଥା ନିୟନ୍ତ୍ରିତ କରି ଚଳାଇଲେ । ସହରୀ ନାରୀଙ୍କ ଛାଇ ମଫସଲ ନାରୀଙ୍କ ଉପରେ ପଡ଼ିବାରୁ ସେଠାରୁ ମଧ ନାରୀ ଘରଛଡ଼ା ବୃତ୍ତି ଧରିଲା । ଶିଶୁମାନେ ରୁଗ୍ଣ, ମୂର୍ଖ–ଦୁର୍ବଳ ସ୍ନେହ ମମତା ଅଭାବରୁ ମା' ମାନଙ୍କ ଅବାଞ୍ଛିତ ସନ୍ତାନ ହୋଇ ନିତ୍ୟ ମାଡ଼ ଗାଳି ଖାଇ ସ୍କୁଲ ମାଷ୍ଟରଙ୍କ ମାଡ଼ଗାଳି ଖାଇ ଅଭାବ ଅସୁବିଧା ଦାରିଦ୍ର୍ୟ ଓ କୁସଂଗରେ ରହି ପ୍ରତିକ୍ରିୟାଶୀଳ ହିଂସ୍ରକ ଈର୍ଷାପର ଓ ସଂଘର୍ଷ ସ୍ୱଭାବର ଲୋକ ହେଇ ଭଙ୍ଗାରୁଜା ଜଳାପୋଡ଼ା ମାରଧର ନୀତି ଗ୍ରହଣ କଲେ । ସରକାର ଜନ୍ମନିରୋଧ କରି ଗୃହିଣୀମାନଙ୍କ ଦେହରେ ନାନା ଉପସର୍ଗ ରୋଗ ପୂରାଇଲେ ।

ଅଶ୍ଳୀଳ ସାହିତ୍ୟ, ଅଶ୍ଳୀଳ ସିନେମା, ସହଶିକ୍ଷା ଓ ବହୁ ବୟସରେ ଝିଅ ବିବାହ, ଚିରକୁମାରୀ ରଖାଇ ସମାଜ ରାଷ୍ଟ୍ର ଆଇନ ଓ ନୀତି ଭାରତର ଚିରଶାନ୍ତି ନିଳୟଗୃହର ନିରାପତ୍ତା ଜୀବନ ନଷ୍ଟ କରି ଦେଇଅଛି । ଯୌନବୃତ୍ତି ଯୌନଭାବକୁ ଉଲଗ୍ନିତ କରି ନାରୀଙ୍କ ଆଗରେ ରଖାଯାଇ ଜନ୍ମ ନିରୋଧ ପାଳା ଚାଲିମଧ ଦେଶରେ ଶାନ୍ତି ପ୍ରଗତି ନାହିଁ । କେବଳ ମଟର ପ୍ଲେନ ସାଇକେଲ ଚଳାଇ ନାରୀ ଅଫିସରେ ବସି ଟଙ୍କା କମାଇ ନାରୀ ସ୍ୱାର୍ଥ–ସର୍ବସ୍ୱ ଭୋଗବାଦିନୀ ଏକ କେନ୍ଦ୍ର ଜୀବନର ଜଡ଼ଭାବ ଏ ଯୁଗର ଆଧୁନିକ ସାହିତ୍ୟରୁ ଅବଦାନ ଲାଭ କରିଅଛି । ସାହିତ୍ୟର ସାଥୀ ସିନେମା ।

ଏହାର ପ୍ରତିକାର ନୂଆ ସରଣୀରୁ ସରି ଯାଇଅଛି । ନାରୀମାନଙ୍କୁ ଉତ୍କଳ ମହିଳା ସମ୍ମିଳନୀର ଆଦର୍ଶ ଆମର ଜଣେ ଖବରକାଗଜ ସଂପାଦକ ଏବେ ତାଙ୍କ ସମ୍ବାଦପତ୍ରରେ ଦେଖାଇଛନ୍ତି । ବାହାରେ ପଦାର୍ଥ ହଜାଇ ସେ ଘରେ ଖୋଜିଲେ କି ମିଳିବ ? ଅମଡ଼ା ବାଟରେ ଆମ ନରନାରୀ ଚାଲିଲେ ୟୁରୋପୀୟ ସଂସ୍କୃତିହୀନ ଜଡ଼ବାଦୀଙ୍କ ରାସ୍ତାଧରି । ସୁତରାଂ ଧ୍ୱଂସ ମୃତ୍ୟୁ ହିଁ ଆମ ନାରୀମାନଙ୍କୁ ସ୍ୱାଗତ କରିବାକୁ ହାତ ଠାରୁଛି । ଭାରତର ଯେଉଁ ଯୁବତୀମାନେ ଗୃହଶୋଭା ବର୍ଦ୍ଧନ କରି ଭଗବତୀଙ୍କ ପରି ସୃଷ୍ଟିପାଳିନୀ ହୋଇଥାନ୍ତେ, ସେହିମାନେ ଭାଗ୍ୟ ବିଡ଼ମ୍ବିତା ହୋଇ ଆଜି ହୋଟେଲ ପରିଚାରିକା, ପକେଟ ମାରୁଣୀ, ସନ୍ତାନ ଘାତିନୀ, ନକସଲବାଡ଼ିବାଲୀଙ୍କ ସମ୍ମିଳନୀରେ ବନ୍ଧୁକ ଛୁରା ବୋମାର କାର୍ଯ୍ୟକାରିଣୀ । ହାୟ ଭାରତ ଜନନୀ !

ଦେଶରେ ଗଳି କନ୍ଦିରେ ଏ ପର୍ଯ୍ୟନ୍ତ ଭାରତ ନାରୀ ଅଦୃଶ୍ୟ ଭାବରେ ବଞ୍ଚିଛି ବୋଲି ଭାରତର ଆତ୍ମାର ସତ୍ତା ରହିଛି । ତା’ ନହୋଇଥିଲେ ପୃଥିବୀରୁ ଭାରତବର୍ଷ ଓ ଭାରତୀୟ ସଂସ୍କୃତି ଉଭେଇ ଯାଆନ୍ତାଣି । ଆଜି ଯେ ଦୁର୍ନୀତିକାର ପୁତ୍ରମାନଙ୍କୁ ମଧ୍ୟ ଆମେ ଦେଖୁଛୁ ତାହା ଏ ଯୁଗରେ ନାରୀଙ୍କର ସନ୍ତାନ ସୃଷ୍ଟିର ମଡେଲ । ମାତାର ଗୁଣ ସ୍ୱାଭାବ କନ୍ୟା ନିଏ ।

ସିନେମାର ଗୀତରେ ଯେ ଦାନ୍ତ ନ ଘଷି ପଲଙ୍କରେ ବସି ନୂଆ ଭାଉଜ ଚାହା ପିଇବା କଥା ଦିଅର ତା’ ବୋଉକୁ କହୁଛି । ତା ବାସ୍ତବରେ ହେଉଛି କି ନଭେଲ ସିନେମା ଗୀତରୁ ନାରୀ ପ୍ରେରଣା ପାଉଛି ତାହା ଭାବିବା କଥା । ଏକଥା ସତ୍ୟ ଯେ କଲେଜ ଛାତ୍ରୀମାନେ ହଷ୍ଟେଲରେ ବିନା ଜଳଖିଆରେ ଚାହା ଭୋକିଲା ପେଟରେ ପିଇ ଦଶଟା ବେଳଯାଏ ପଡ଼ିଥାନ୍ତି । ଅନ୍ୟ ବୋର୍ଡ଼ିଂ ମାନଙ୍କରେ ଛାତ୍ରୀମାନଙ୍କର ଏହି ଦୁର୍ଦ୍ଦଶା ! ଏହି ଦଶା ଭାବି ଗୃହିଣୀମାନେ ଚିରକାଳ ଭୋଗ କରିଥାନ୍ତି । ଏ ସବୁ କୁ-ଅଭ୍ୟାସ କୁ-ଶିକ୍ଷାର ଅଙ୍ଗହାର ଏବଂ ଏହାରି ଫଳାରୁ ନାରୀ ଓ ସେମାନଙ୍କ ସନ୍ତାନମାନଙ୍କ ସ୍ୱାସ୍ଥ୍ୟ ନାଶ— ଜୀବନ ନାଶ ।



# ରବୀନ୍ଦ୍ର ପୂଜା

ଭାବିଥିଲି କବିଙ୍କ ସାହିତ୍ୟ ସମ୍ବନ୍ଧରେ ମୋର ପ୍ରବନ୍ଧରେ କିଛି ବିସ୍ତାରିତ ଆଲୋଚନା କରିବି । କିନ୍ତୁ ସମୟର ଆୟୁ ଏତେ ଅଳ୍ପ ଯେ, ତାହା ସୁଚାରୁରୂପେ ଲେଖିବାପାଇଁ ଯେ ମନୋବୃତ୍ତି ଲୋଡ଼ା ଓ ଯେ ଆତ୍ମନିବିଷ୍ଟତାର ଆବଶ୍ୟକ କରେ ତାହା ହୋଇପାରି ନଥିବାରୁ ନିଜ ସଂକଳ୍ପ କାର୍ଯ୍ୟରେ ପରିଣତ ହେବା ସମ୍ଭବପର ହୋଇନାହିଁ । ଏହାଛଡ଼ା ବହୁକାଳରୁ ପାଶୋରି ଯାଇଥିବା ତାଙ୍କର ସାହିତ୍ୟକୁ ପୁଣି ତଟକା କରି ଆଲୋଚନା କରିବାପାଇଁ ଅକିଞ୍ଚନର ଧୃଷ୍ଟତା ବୋଲି ପ୍ରତୀତ ହେଉଛି । ତାଙ୍କର ଅଧିକାଂଶ ନାଟକ, ଦାର୍ଶନିକ ନିବନ୍ଧ, ପ୍ରବନ୍ଧ, କବିତା, କାବ୍ୟ, ଉପନ୍ୟାସମାନ ପାଠକରିବାର ସୁଯୋଗ ପାଇଛି– କିଶୋର ବୟସରେ । ତାଙ୍କର କଳ୍ପନା, ତାଙ୍କର ଭାଷା, ଭାବ, ରଚନାଶୈଳୀ ମନରେ ଅଭୂତପୂର୍ବ ଆନନ୍ଦ ପରିବେଶନ କରିଥିଲା କହିଲେ ଅଳ୍ପ କୁହାଗଲା । ସବୁଠାରୁ ବଡ଼ ହେଉଛି ତାଙ୍କର ରଚନା ଭିତରେ ମଣିଷ ଜାତିକୁ ସେ ଯେ ବାଣୀ ଶୁଣାଇଛନ୍ତି । ସେହି ଆଦର୍ଶ ମନରେ ହୃଦୟରେ ମୋର ଗଭୀର ସତ୍ୟାଦର୍ଶ ବା ସତ୍ୟବୋଧର ପ୍ରେରଣା ଦାନ କରିଥିଲା । ସୌନ୍ଦର୍ଯ୍ୟ ସୃଷ୍ଟିର ଅଦ୍ୱିତୀୟ କବି ରବୀନ୍ଦ୍ରନାଥଙ୍କ ଜୀବନରେ, ତାଙ୍କର ରସସାଧନା ମୂଳରେ ଥିଲା ସତ୍ୟ, ଶିବ ଓ ସୁନ୍ଦରଙ୍କର ସମନ୍ୱୟ । ଏହି ତିନୋଟି ଭାବର ବିରୋଧାଭାସ ତାଙ୍କ ରଚିତ ସାହିତ୍ୟରେ ଦୃଷ୍ଟିଗୋଚର ହୁଏନାହିଁ । ସେ ଥିଲେ ପ୍ରଥମ ଶ୍ରେଣୀର ଲେଖକ ଓ ଭାବୁକ । କବିଙ୍କର ବ୍ୟକ୍ତିତ୍ୱ ଏହି ତିନୋଟି ଭାବ ସାଧନାର ସମନ୍ୱୟ ଉପରେ ଗଠିତ ହୋଇଥିବାରୁ ତାଙ୍କ ରଚନାରେ କୌଣସି କାଳ, ଜାତି ଓ କ୍ଷେତ୍ରର ସୀମାରେଖା ପଡ଼ିନାହିଁ । ଉପନିଷଦକାର ପ୍ରାଚୀନ ଋଷିମାନଙ୍କର ରଚନାରେ ଯେପରି ସର୍ବବ୍ୟାପକଭାବ, ଓ ଔଦାର୍ଯ୍ୟଦୃଷ୍ଟି ଦେଖାଯାଏ, ତାଙ୍କର ରଚନାମାନଙ୍କର ସମ୍ୟକ୍ ବିଶ୍ଳେଷଣ କଲେ ସେହିପରି ବିଶ୍ୱବ୍ୟାପକ ଭାବ ଓ ଋଷିଦୃଷ୍ଟିର ପରିଚୟ ମିଳେ । ସାଧାରଣ ପାଠକ ଓ ସେହିସ୍ତରର ସାହିତ୍ୟିକମାନେ ତାଙ୍କର କବିତାର ଅର୍ଥ ଅବୋଧ୍ୟ ବା ଦୁର୍ବୋଧ୍ୟ ବୋଲି ସ୍ଥଳବିଶେଷକୁ ଲକ୍ଷ୍ୟକରି କହିଥାନ୍ତି । ବସ୍ତୁତଃ ତାଙ୍କର ଜୀବନର ମହିମାମୟ ଆଦର୍ଶ ଓ ତୁଙ୍ଗକଳ୍ପନା, ମନୁଷ୍ୟଜୀବନ, ତାର ଜାତି ଓ ସଭ୍ୟତା ସମ୍ବନ୍ଧରେ ମୌଳିକ ପରିଚୟ ଯେଉଁମାନଙ୍କର ଘଟିନଥିବ, ତାଙ୍କର ପରିକଳ୍ପନା ଯେଉଁମାନେ ଉପଲବ୍ଧି କରି ନଥିବେ, ସେମାନଙ୍କ ପକ୍ଷରେ ତାଙ୍କର କାବ୍ୟ, କବିତା, ଉପନ୍ୟାସାଦିରେ ନିହିତ ଆଦର୍ଶପୂତଃ କଳାସୃଷ୍ଟି ସମ୍ବନ୍ଧରେ ସମ୍ୟକ୍ ରସବୋଧ କରିବା ଦୁରୂହ ହେବା ସ୍ୱାଭାବିକ । ତାଙ୍କର ଅମର ରଚନାରେ

ଭାଷାଜାଲରେ ଆବୃତ୍ତ ହୋଇ ଯେଉଁ ଅନ୍ତର୍ନିହିତ ରହସ୍ୟବାଦ ରହିଛି, ବାସ୍ତବିକ ତାହା ସାଧାରଣ ସ୍ଥୂଳଧର୍ମୀ ପାଠକ ପ୍ରାଣକୁ ଆନନ୍ଦ ଦେଇପାରେ ନାହିଁ । ତାର କାରଣ ତାଙ୍କର ଆଦର୍ଶ ଓ ଚିନ୍ତାର ସ୍ତର ଏତେ ନିବିଡ଼ ଏତେ ସୂକ୍ଷ୍ମ ଯେ ତାହା ସାଧାରଣ ଚିତ୍ତର ଅନୁଭୂତି କେନ୍ଦ୍ରରେ କୌଣସି ବାସ୍ତବ ଜାତ ସ୍ପନ୍ଦନ ଆଣିଦେବା ସମ୍ଭବ ହୁଏ ନାହିଁ । ମରମୀ କବି ପ୍ରକୃତିର ଅତି ପ୍ରିୟତମ ସନ୍ତାନ । ଏହି କାରଣରୁ ମୁକ୍ତିଭିତରେ ମନୁଷ୍ୟ ଜୀବନର ଏବଂ ସମସ୍ତ ମାନବୀୟ ଅନୁଷ୍ଠାନ ମାନଙ୍କର ପ୍ରକାଶ ଏବଂ ବିକାଶର କୌଶଳ ଲକ୍ଷ୍ୟ କରିଛନ୍ତି । ସଂକୀର୍ଣ୍ଣ ରାଷ୍ଟ୍ରୀୟତା, ସମାଜ, ଲୋକାଚାର, ଦେଶାଚାର, ପ୍ରଥା, ଧର୍ମ, ପରିବାର ଓ ସମସ୍ତ ସଂସ୍କାରଜାତ, ଭାବରୁ ମନୁଷ୍ୟ ଜୀବନର ମୁକ୍ତି । ମିଥ୍ୟା ବନ୍ଧନର ନାଗଫାଶ, ମିଥ୍ୟା ଅନୁଷ୍ଠାନର ଓ ସମାଜର କ୍ଷଣିକ ବନ୍ଧନରୁ ବିଚ୍ଛିନ୍ନ ମନୁଷ୍ୟର ସହଜ ସୁନ୍ଦର ଜୀବନଯାତ୍ରା ଉପରେ କବିଙ୍କର ଚିରନ୍ତନ ଅନୁରକ୍ତି ତାଙ୍କର ରଚନାବଳୀରେ ପ୍ରଚ୍ଛନ୍ନ । କିନ୍ତୁ ବୈରାଗ୍ୟରେ କବିଚିତ୍ତ ବିମୁଖ । ସେ ସଂସାରର ସମସ୍ତ ବନ୍ଧନ ଓ ମନୁଷ୍ୟ ସମ୍ବନ୍ଧ ଭିତରେ ମୁକ୍ତିର ସନ୍ଧାନୀ । ତାଙ୍କର କବିତା କହୁଛି– ‘‘ବୈରାଗ୍ୟ ସାଧନେ ମୁକ୍ତି ସେ ଆମାର ନୟ,– ସହସ୍ର ବନ୍ଧନମାଝେ ଲଭିବ ମୁକ୍ତିର-ସ୍ୱାଦ ।’’

ଶୋକ, ଦୁଃଖ ବିପଦ, ଦୈନ୍ୟଭିତରେ କବି ଦେଖିଛନ୍ତି ମାନବ ଆତ୍ମାର ଭାସ୍ୱର ବିକାଶ, ଉଜ୍ଜଳ ଆଭା, ଦୁର୍ଜ୍ଜୟ ଶକ୍ତିର ଚାଞ୍ଚଲ୍ୟ ଓ ଚିର ଆନନ୍ଦମୟ ସଙ୍ଗୀତଧ୍ୱନିର ଅଶ୍ରାନ୍ତ, ଅକ୍ଳାନ୍ତ, ରାଗିଣୀର ଅନାହତ ଅବ୍ୟାହତ ସ୍ୱର ସମନ୍ୱୟ । ମୁକ୍ତ ଜୀବନରେ ଭାଗବତ ପ୍ରକାଶ ସମ୍ଭବପର କେବଳ ହୋଇପାରେ ଏବଂ ମାନବର ସଂସ୍କାରମୁକ୍ତ ମୂଳ ପ୍ରକୃତି ଚିରଦିନ ସତ୍ୟାଶ୍ରୟୀ ବୋଲି ମାନବ ସଭ୍ୟତାକୁ କ୍ରମବିକାଶ ପଥରେ ଯୁଗେ ଯୁଗେ ସୌନ୍ଦର୍ଯ୍ୟ ଓ ଆନନ୍ଦମୟ ପୂର୍ଣ୍ଣତା ଦାନ କରିଥାଏ । ଯେଉଁଠି ମାନବ ମିଥ୍ୟା ଓ ଅଶିବକୁ ଆଶ୍ରୟ କରିଛି, ସେହିଠାରେ ତାର ସଭ୍ୟତାର ବିକାଶ ଓ ଆଦର୍ଶକୁ କ୍ଷୁଣ୍ଣ କରାହୋଇ ବିପର୍ଯ୍ୟୟ ଘଟାଇଛି । ସେହିଠାରେ ତାର ସଭ୍ୟତା ଗୋଟିଏ ଧ୍ୱଂସମୟ ଶ୍ମଶାନରେ ନେଇ ତାକୁ ଉପନୀତ କରିଅଛି ।

ମାନବୀୟ ସତ୍ତା ଉପରେ କବିଙ୍କର ଅଖଣ୍ଡ ବିଶ୍ୱାସ୍ ଥିବାରୁ ସେ ତାହାକୁ ଆବରିତ କରିଥିବା ମିଥ୍ୟା ସଂସ୍କାର ଜଞ୍ଜାଳରୁ ମୁକ୍ତ ହେବାକୁ ବାରମ୍ବର ଆହ୍ୱାନ କରିଛନ୍ତି । ମୃତ୍ୟୁର ତାମସୀ ଗହ୍ୱରରୁ ଅମୃତ ଲୋକର ସନ୍ଧାନ ନେବାକୁ ମାନବ ଜୀବନକୁ ଇଙ୍ଗିତ ଦେଇଛନ୍ତି । ସ୍ଥବିର ଜଡ଼ମାନଙ୍କୁ ମୁକ୍ତି ଅମୃତର ବାର୍ତ୍ତା ଦେବାକୁ ସେ ଯୌବନକୁ ଡାକି କହିଛନ୍ତି ‘‘ଆରେ ଅବୋଧ, ଆରେ କାଁଚା, ଆଧମରା ଦେର ଘା ମେରେ ତୁଇବାଁଚା । ଆଘାତ ଦେଇ ନିର୍ଜୀବ ଭିତରେ ସ୍ପନ୍ଦନ ଓ ଜାଗୃତି ଆଣିବ ଯୌବନ । ମନୁଷ୍ୟକୁ ଦେବତାଠାରୁ ଉଚ୍ଚ ଆସନ ସେ ଯେପରି ଦେଇଛନ୍ତି, ତାହା ତାଙ୍କର ମାନବ ପ୍ରତି ବିଶ୍ୱାସ ଓ ପ୍ରୀତିର ନିଦର୍ଶନ । ସେ

କହିଛନ୍ତି ଧର୍ମ, ପ୍ରଥା, ଆଚାର, ଅନୁଷ୍ଠାନ, ସଂସ୍କାର ପ୍ରଭୃତିଠାରୁ ମାନବ ବଡ଼ । ଏପରି କି ଅଦୃଶ୍ୟ ଭଗବାନଙ୍କର ପ୍ରକାଶ ମଧ୍ୟ ମାନବ ଭିତରେ, ସେଥିପାଇଁ ତାଙ୍କର ମହାବାଣୀ'' ''ସବାର ଉପରେ ମାନୁଷ୍ୟ ସତ୍ୟ ତାହାର ଉପରେ ନାଇଁ ।''

ବିଶ୍ୱର ପ୍ରତି ସ୍ପନ୍ଦନରେ, ଗ୍ରହ, ସୂର୍ଯ୍ୟ, ଚନ୍ଦ୍ର, ତାରା, ନଦୀ, ପର୍ବତ, ପୁଷ୍ପ, ଲତା, ଫଳ, ବୃକ୍ଷ, ଦିନ, ରାତ୍ରି, ବର୍ଷା, ବସନ୍ତ, ଶରତ ପ୍ରକୃତିର ସମସ୍ତ ଦ୍ୟୋତନାରେ ସେ ଅଖଣ୍ଡ ବିଶ୍ୱବ୍ୟାପୀ ସତ୍ତାର ପ୍ରକାଶ ଏବଂ ସୃଷ୍ଟିରେ ସେହି ଭାଗବତ ବିକାଶ ଲକ୍ଷ୍ୟ କରିଛନ୍ତି । ବିଶ୍ୱ ପ୍ରକୃତିର ସହିତରେ ମାନବ ଜୀବନର ଅପରୂପ ପ୍ରେମ ସମ୍ବନ୍ଧ ଯେ କେଡ଼େ ଗଭୀର ସତ୍ୟ, ତାହା ତାଙ୍କର ଉପଲବ୍‌ଧିର ବିଷୟବସ୍ତୁ ଥିବାରୁ ତାଙ୍କର ପ୍ରେମ କବିତା ଗୁଡ଼ିକ ମଧ୍ୟ ସେହି ରହସ୍ୟମୟ ସୂକ୍ଷ୍ମତମ ଅନୁଭୂତିର ପ୍ରକାଶ ବ୍ୟଞ୍ଜନାରେ ରସାୟିତ ହୋଇଅଛି । ସୀମା ଭିତରେ ଅସୀମକୁ, କ୍ଷଣିକ ମଧ୍ୟରେ ଚିରନ୍ତନକୁ ଏକ ମଧ୍ୟରେ ବହୁକୁ, ଦେଶର ଭୌଗୋଳିକ ସୀମା ପରିବେଷ୍ଟନୀ ମଧ୍ୟରେ ଆନ୍ତର୍ଜାତିକ ଭାବକୁ ତାଙ୍କ ଛଡ଼ା ଏବଂ ତାଙ୍କ ପୂର୍ବେ ଭାରତର ଅନ୍ୟ କୌଣସି କବି ଭାଷାରେ ଚିତ୍ରିତ କରି ରୂପଦାନ କରିନାହାନ୍ତି । ଯାହା ମହତ୍, ଯାହା ସୁନ୍ଦର, ଯାହା ଶୁଭ୍ର ଓ ଶିବ, ଯାହା ଶାଶ୍ୱତ ସତ୍ୟ, ସେହି ସନାତନ ଆଦର୍ଶହିଁ ତାଙ୍କର ସାହିତ୍ୟାଧାର । ସେ ଏକାଧାରେ କବି, ପ୍ରକୃତି ରସିକ, ଜାତୀୟବାଦୀ, ଦାର୍ଶନିକ ଓ ସର୍ବାଙ୍ଗ ସୁନ୍ଦର ଶିଳ୍ପୀ । ତାଙ୍କର କାବ୍ୟ ସାହିତ୍ୟ ଉପରେ ଆମ୍ଭମାନଙ୍କର ପ୍ରାଚୀନ ବୈଷ୍ଣବ କବିମାନଙ୍କର ପ୍ରଭାବ ଗୌଣ ଭାବରେ ପଡ଼ିଥିଲେ ହେଁ, ତାଙ୍କର ଗଦ୍ୟ ପ୍ରବନ୍ଧ ଉପରେ ଭାରତୀୟ ପ୍ରାଚୀନ ସଂସ୍କୃତି ମୁଖ୍ୟତଃ ପ୍ରଭାବପାତ କରିଥିଲେ ସୁଦ୍ଧା, କୌଣସି ବିଦେଶୀୟ ବା ସ୍ୱଦେଶୀୟ ପ୍ରାଦେଶିକ ସାହିତ୍ୟର ଆଦର୍ଶକୁ ସଜ୍ଞାନରେ କିମ୍ବା ଅଜ୍ଞାନରେ ସେ ଅନୁକରଣ କରିନାହାନ୍ତି । ସେହି କାରଣରୁ ବଙ୍ଗ ସାହିତ୍ୟରେ ବସ୍ତୁତାନ୍ତ୍ରିକ ବା (ରିଏଲିଷ୍ଟିକ) ଲେଖକମାନେ ଯେଉଁ ସମୟରେ କବିଙ୍କର ଲେଖାକୁ ରହସ୍ୟବାଦୀ ବୁର୍ଜୋୟାଭାବ ଦୁଷ୍ଟ ସାହିତ୍ୟ ବୋଲି ତୀବ୍ର ସମାଲୋଚନା କରିବାକୁ ଆରମ୍ଭ କରିଥିଲେ ଓ ନବୀନ ପ୍ରବୀଣ ସାହିତ୍ୟରଥିମାନଙ୍କର ମସୀଯୁଦ୍ଧ କମଳାସନା ଭାରତୀଙ୍କର ସୁଧାସରିତକୁ ବିକ୍ଷୁବ୍ଧ କରି ଦେଇଥିଲା, ସେତେବେଳେ କବି ରବୀନ୍ଦ୍ରନାଥଙ୍କର ସାହିତ୍ୟାଦର୍ଶ ସମ୍ବନ୍ଧରେ 'ବିଚିତ୍ରା'ରେ ତାଙ୍କ ଲିଖିତ ଗୋଟିଏ ପ୍ରବନ୍ଧ ପାଠ କରିଥିଲି । ୧୩/୧୪ ବର୍ଷ ତଳର ଅସ୍ପଷ୍ଟ ସ୍ମୃତିରୁ ଆହରଣ କରି ଯେତିକି ମନେ ପଡ଼େ, ତାହା ଲେଖୁଛି । ସେ ଲେଖିଥିଲେ, ଯେ ଯଥାର୍ଥରେ କବି, ସେ କାହିଁକି ଦେଖିବାକୁ ଯିବ ଗୋଲାପର କୋମଳ ସୁରଭିର କାରଣ କଣ ଓ ଗୋଲାପ କେଉଁ ରାସାୟନିକ ଉପାଦାନମାନଙ୍କରେ ତିଆରି ହୋଇଛି ବୋଲି ? କବିର ରାଜ୍ୟ, ରୂପ, ରସ, ଗନ୍ଧ ଓ ସ୍ପର୍ଶ ରାଜ୍ୟରେ ବିସ୍ତୃତ । କବି ଯେ ସାହିତ୍ୟିକ ଯେ, ସେ ସର୍ବଦ୍ରଷ୍ଟା ।— ଜୀବନର ନିଖୁଣ ଆଲେଖ୍ୟ ସେ ଅଙ୍କନ କରିବ ସତ୍ୟ, କିନ୍ତୁ ତହିଁରେ ତା'ର ସହଜାତ ପ୍ରକୃତିର ସହଜ ସାବଲୀଳ ପ୍ରକାଶଭଙ୍ଗୀ ନ ଥିଲେ ତାହା ଆଉ ଯାହା ହେଉ,

ସାହିତ୍ୟପଦବାଚ୍ୟ ହେବନାହିଁ । କବି ଓ ସାହିତ୍ୟିକ ନିଜ ହୃଦୟର ସୌନ୍ଦର୍ଯ୍ୟ ବୋଧ, ଯଥାର୍ଥ ମାନବ ପ୍ରୀତି, ବୃହତ୍ତର ଶିବର ଆଦର୍ଶ ଉପରେ ଉତ୍ସାରିତ ଭାବ ଧାରାକୁ ଅବ୍ୟାହତ ସତ୍ୟାନୁଭୂତି ଆଧାରରେ ପ୍ରବାହିତ ନ କରି ଯଦି କୌଣସି ବିଶିଷ୍ଟ ଉଦ୍ଦେଶ୍ୟ, ବା ଲୋକପ୍ରିୟ ଚିନ୍ତା ଓ ସାଧାରଣ ରୁଚି ସମ୍ମତ କରି ସାହିତ୍ୟ ପ୍ରକାଶ କରିବାକୁ ଚାହାନ୍ତି ତେବେ ତାହା ବିଶ୍ୱ ମାନବର ସାହିତ୍ୟ ହେବନାହିଁ– ବିଶ୍ୱ ମନ ଉପରେ ଚିରନ୍ତନ ପ୍ରଭାବ ପକାଇବାପାଇଁ ତାର ମୂଲ୍ୟ ନିର୍ଦ୍ଧାରିତ ହେବନାହିଁ କାରଣ ତାହା ସନାତନ ନୁହେଁ– ଯେହେତୁ ଅଳ୍ପାୟୁ । ସେଥିପାଇଁ ଯାହା ସତ୍ୟ, ଯାହା ସୁନ୍ଦର ଓ ମଙ୍ଗଳମୟ ତାହାହିଁ ସାହିତ୍ୟର ଆଧାରଭୂତ ହେବା ଉଚିତ । ସାହିତ୍ୟିକ ତାର ରସଗ୍ରାହୀ ଚିତ୍ତରେ ମନୁଷ୍ୟ ଜୀବନର ବୈଠକଖାନାକୁ ଶ୍ରଦ୍ଧା କରିବା ଶୋଭନ, ପାଇଖାନାର ପୂତିଗନ୍ଧମୟ ନର୍ଦ୍ଦମାରେ ନିଜର ରସ ସାଧନାକୁ କେନ୍ଦ୍ରୀଭୂତ କଲେ ସାହିତ୍ୟ ସାଧନାର ବର୍ତ୍ତମାନ ସୃଷ୍ଟି ବର୍ତ୍ତମାନ ପାଇଁ ଲୋକ ପ୍ରଶଂସା ଓ କରତାଳି ମୁଖର ହେଲେ ହେଁ ତାର ଭବିଷ୍ୟତ ଶୂନ୍ୟ । ଯାହା ସର୍ବମାନବର, ସର୍ବକାଳର, ସମସ୍ତ ଭୂଗୋଳର ବସ୍ତୁ, ତାହାହିଁ ସାହିତ୍ୟକୁ ଉଦାରତର ଅବଦାନରେ ସାର୍ଥକ ଲୋକରେ ଉପନୀତ କରିଦିଏ ।'' ରବୀନ୍ଦ୍ରନାଥଙ୍କର ସାହିତ୍ୟିକ ଆଭିଜାତ୍ୟର ଅଭିମାନ ତାଙ୍କର ଉଚ୍ଚକୋଟିର ବ୍ୟକ୍ତିତ୍ୱ ସହିତ ଏତେ ଅଙ୍ଗାଙ୍ଗୀ ଭାବରେ ଗ୍ରଥିତ ଓ ଜଡ଼ିତ ଥିଲା ଯେ ସେ ତାଙ୍କର ଆତ୍ମ ଅଭିବ୍ୟକ୍ତିର ସୁଗମ କ୍ଷେତ୍ର ବା ଶ୍ରେଣୀସୀମାକୁ ଛାଡ଼ି କଦାପି ଅପଥକୁ ପ୍ରବର୍ତ୍ତନ କରି ନଥିଲେ । ସେହି କାରଣରୁ ଆଧୁନିକ ବଙ୍ଗର ବାସ୍ତବପନ୍ଥୀ କବି ଓ ସାହିତ୍ୟିକମାନଙ୍କ ସହିତ ସେ କଦାପି ରଫାନିଷତ୍ତି କରି ଲୋକପ୍ରିୟ ସାହିତ୍ୟ ରଚନାରେ ଆତ୍ମଅଭିଜାତପୁଷ୍ଟ ସାହିତ୍ୟିକ ବ୍ୟକ୍ତିତ୍ୱକୁ ଖର୍ବ କରିବାର ବିଡ଼ମ୍ବନା ବରଣ କରି ନଥିଲେ । ତାଙ୍କ ସାହିତ୍ୟରେ ତାଙ୍କର ନିଜସ୍ୱ ବ୍ୟକ୍ତିତ୍ୱ ଅତ୍ୟନ୍ତ ପରିସ୍ଫୁଟ ଥିଲା ବୋଲି ବଙ୍ଗ ସାହିତ୍ୟକୁ ସେ ଯେ କେବଳ ନବ ଆଦର୍ଶ, ନବଭାଷା, ବିଭିନ୍ନ ମୁଖୀ ଚିନ୍ତା ଓ ପ୍ରାଚୀ ପ୍ରତୀଚିର ବିଚିତ୍ର କୃଷ୍ଟି ଦାନ କରିଛନ୍ତି, ତାହା ନୁହେଁ, ଏହି ଶତାବ୍ଦୀର ବଙ୍ଗୀୟ କବିମାନଙ୍କୁ ଲିଖନଭଙ୍ଗୀ, ନୂତନସ୍ୱର, ରାଗ, ନୃତ୍ୟ, ଛନ୍ଦ, କଳାର ବିଭିନ୍ନ ସୃଷ୍ଟି ମଧ୍ୟ ଦାନ କରିଛନ୍ତି । ସେହି ହେତୁ ବଙ୍ଗଳାରେ ତାଙ୍କର ସମସାମୟିକ ଲେଖକ ଓ କବିମାନେ ନିଜର ଅଗୋଚରରେ ପୁଣି ଗୋଚରରେ ମଧ୍ୟ ରବୀନ୍ଦ୍ରଙ୍କ (ଷ୍ଟାଇଲ) ବା ରଚନାରୀତି ତକ ଅନୁକରଣ କରିଥିବାର ଦେଖାଯାଏ । ସେ ସାହିତ୍ୟ ଓ କାବ୍ୟ କବିତାର ଯୁଗ ପ୍ରବର୍ତ୍ତକ ଥିଲେ ବୋଲି ତାଙ୍କରି ଯୁଗରେ ପ୍ରକାଶିତ ବହୁ କବି, ଔପନ୍ୟାସିକ, ଲେଖକଙ୍କର ରଚନାରୀତି ଉପରେ ରବୀନ୍ଦ୍ର ପ୍ରତିଭାର ଖର କରୋଜ୍ଜ୍ୱଳ କିରଣ ସମ୍ପାତ ଅତି ସ୍ପଷ୍ଟଭାବରେ ପାଠକବର୍ଗଙ୍କର ଚକ୍ଷୁ ଏଡ଼େଇ ପାରିନାହିଁ, କହିଲେ ଅତ୍ୟୁକ୍ତି ହେବନାହିଁ । ଏହା ବ୍ୟତୀତ ଭାରତୀୟ ଅନ୍ୟାନ୍ୟ ପ୍ରାଦେଶିକ ସାହିତ୍ୟରେ ମଧ୍ୟ ତାଙ୍କର ରଚନାଶୈଳୀ, ଭାବ ଓ ଶବ୍ଦ ଯୋଜନାର ପ୍ରତ୍ୟକ୍ଷ ଓ ଅପ୍ରତ୍ୟକ୍ଷ ଆମଦାନୀ ଘଟିଥିବାର ଜଣାପଡ଼େ ।

ହିନ୍ଦୀ, ତେଲୁଗୁ, ମରାଠୀ, ଗୁଜୁରାଟୀ, କର୍ଣ୍ଣାଟ, ଆସାମୀ, ଗୁଜୁରାଟୀ ସାହିତ୍ୟରେ ତାଙ୍କର ପୁସ୍ତକମାନ ଅନୁବାଦିତ ହେଇଛି, ଭାବର ଆମଦାନୀ ଘଟିଛି । ସୁତରାଂ ଭାରତର ବିଭିନ୍ନ ପ୍ରଦେଶର ଚିନ୍ତାଧାରା ଉପରେ ସେହି କାରଣରୁ ତାଙ୍କର ବ୍ୟକ୍ତିତ୍ୱର ପ୍ରଭାବ ପଡ଼ିଥିବା ସ୍ୱାଭାବିକ । ଓଡ଼ିଆ ସାହିତ୍ୟରେ କବିଙ୍କ ଭାଷା, ଭାବ ଓ ଶୈଳୀ ପ୍ରଭୃତିର ପ୍ରଭାବ ଯେ ନ ପଡ଼ିଛି, ତାହା ନୁହେଁ । କିନ୍ତୁ ଓଡ଼ିଆ ଓ ବଙ୍ଗଳା ଭାଷାର ସାମଞ୍ଜସ୍ୟ ଅତି ଗୂଢ଼ବୋଲି ତାଙ୍କର କୌଣସି ପୁସ୍ତକର ଅନୁବାଦ ଓଡ଼ିଆ ସାହିତ୍ୟ ଜଗତରେ ଆବଶ୍ୟକ ପଡ଼ିନାହିଁ । ତାଙ୍କ ସାହିତ୍ୟ ସମ୍ବନ୍ଧରେ ମଧ୍ୟ ଆଲୋଚନା ହେବାର ଆବଶ୍ୟକତା ନ ପଡ଼ିଥିବାରୁ ଏ ସମ୍ବନ୍ଧରେ ଗୋଟିଏ ନିର୍ଦ୍ଦ୍ୱନ୍ଦମତ ବ୍ୟକ୍ତ କରି ହେଉନାହିଁ । ସ୍ଥୂଳତଃ ସେ ବିଗତ ଅର୍ଦ୍ଧଶତାବ୍ଦୀର ଲୋକଗୁରୁ, ଚିନ୍ତାନାୟକ, କବି, କଳାଶିଳ୍ପୀ, ଦାର୍ଶନିକ, ଶିକ୍ଷାବିତ୍, ଲୋକସେବକ ଓ ଭାରତୀୟ ଦର୍ଶନ ସଂସ୍କୃତିର ଉଦ୍ଧାରକ, ପ୍ରାଚ୍ୟ ଆଦର୍ଶ ଓ ବିଦ୍ୟାର ଉଦ୍‌ବୋଧକ ବିଂଶ ଶତାବ୍ଦୀର ଭାବ ଓ ଭାଷାର ପ୍ରବର୍ତ୍ତକ । ବଙ୍ଗଦେଶକୁ ଅର୍ଦ୍ଧଶତାବ୍ଦୀଧରି ସେ ପ୍ରାଣର ରସ ଯୋଗାଇଛନ୍ତି । ନବଭାବ ଓ ଭାଷା ତିଆର କରି ଦେଶରେ ନବୀନତାର ପ୍ରବର୍ତ୍ତନ କରିଛନ୍ତି । ବଙ୍ଗ ସାହିତ୍ୟ ଆଜି ତାଙ୍କରି ପଇଁ ପୃଥିବୀରେ ଗୋଟିଏ ବଡ଼ ସାହିତ୍ୟ ବୋଲି ପରିଗଣିତ । କେବଳ ବଙ୍ଗ କାହିଁକି ସମସ୍ତ ଭାରତବର୍ଷ ତାଙ୍କର ଆବିର୍ଭାବ ପାଇଁ ପୃଥିବୀରେ ସମ୍ମାନିତ ହୋଇଛି । ପାଶ୍ଚାତ୍ୟ ମନୀଷୀ (ମେକ୍ସ ମୁଲାରଙ୍କ)ପରେ କେବଳ ରବୀନ୍ଦ୍ରନାଥ ଏକମାତ୍ର ବ୍ୟକ୍ତି ଯେ କି ଭାରତର ଦୁର୍ଦ୍ଦିନରେ ଭାରତୀୟ ଚିନ୍ତାଧାରା, ଭାରତୀୟ ସାହିତ୍ୟ ଓ ଭାରତୀୟ ପ୍ରକୃତି ତଥା ଜୀବନର ମହନୀୟ ଆଦର୍ଶକୁ ସୌଷ୍ଟବମୟ ଭାଷାରେ ବିଦେଶରେ ପ୍ରକାଶିତ କରି ସମଗ୍ର ୟୁରୋପୀୟ ସୁଧୀଗଣଙ୍କ ସମ୍ଭ୍ରମପୂର୍ଣ୍ଣ ଦୃଷ୍ଟି ପ୍ରାଚ୍ୟଆଡ଼କୁ ଟାଣି ଆଣି ପାରିଥିଲେ । ଯେଉଁକାଳରେ ଏ ଦେଶୀ ଲୋକେ ବିଶେଷତଃ ବଙ୍ଗର (ଇଙ୍ଗ-ବଙ୍ଗ ସମାଜର ଲୋକେ ଶେଲି, ବୈରନ, କୀଟସ୍, ଜନ୍ ଷ୍ଟୁଆର୍ଟମିଲ୍, ବ୍ରାଇଟସ୍, ବାର୍କ) ପ୍ରଭୃତି ପାଠକରିବା ଦ୍ୱାରା ଆତ୍ମପ୍ରସାଦ ମଣୁଥିଲେ, ସେହି ସଙ୍କଟମୟ କାଳରେ ରବୀନ୍ଦ୍ରନାଥ ତାଙ୍କ ସୃଷ୍ଟ ନୂତନଭାଷାରେ ଯୁଗାନୁମୋଦିତ ଭାବ ଦେଇ ବଙ୍ଗୀୟ ସମାଜ ଓ ଶିକ୍ଷାୟତନ ତଥା ଶିକ୍ଷିତମାନଙ୍କର ମନରେ ଯଥେଷ୍ଟ ଆନନ୍ଦ ଓ ଆଶା ଜାଗ୍ରତ କରିଥିଲେ । ସେହି କାରଣରୁ ବଙ୍ଗସ୍ୱଦେଶ ଓ ସ୍ୱଭାଷାର ମର୍ଯ୍ୟାଦା କରି ଶିଖିଥିଲା ଓ ଆତ୍ମସ୍ଥ ହୋଇ ପାରିଥିଲା । ତାଙ୍କର ଜୀବନ ବିପ୍ଳବମୟ । ତାଙ୍କର ଚିନ୍ତାରେ ବିଦ୍ରୋହର ତୀକ୍ଷ୍ଣ ଅସ୍ତ୍ର । ଏହି ବିଦ୍ରୋହ ବିପ୍ଳବଭାବ ଯୌବନର ନିଜସ୍ୱବୃତ୍ତି ବୋଲି କବିଙ୍କର ମତ । ମାନବ ଜୀବନକୁ ଏହି ଶତାବ୍ଦୀରେ ଯେଉଁ ଚିନ୍ତାନାୟକ, ପଥପ୍ରଦର୍ଶକ ଓ ଆଦର୍ଶବାହକମାନେ ନୂତନ ଦୃଷ୍ଟିଭଙ୍ଗୀ ଦାନ କରିଥିଲେ, ରବୀନ୍ଦ୍ରନାଥ ସେମାନଙ୍କ ମଧ୍ୟରେ ଶ୍ରେଷ୍ଠତମ । ଭାରତରେ ବେଦ ଲିଖିତ ହେବାକାଳରୁ ଅଦ୍ୟାବଧି ଯେତେ ମନୀଷୀ ଏହି କର୍ମଭୂମି ଭାରତରେ ଜନ୍ମଗ୍ରହଣ କରିଛନ୍ତି, କବି ରବୀନ୍ଦ୍ର ସେମାନଙ୍କ ମଧ୍ୟରେ ଶ୍ରେଷ୍ଠତମ ବ୍ୟକ୍ତି, ଏବଂ ଶୀର୍ଷସ୍ଥାନୀୟ । ତାଙ୍କ ଲିଖିତ

ମାନବ ମନର କଳ୍ପନା, ବିଭିନ୍ନମୁଖୀ ଚିନ୍ତା ଓ ଆଦର୍ଶ ପରିକଳ୍ପନା ତଥା ସୂକ୍ଷ୍ମ ଅନୁଭୂତି ଯାହାକୁ ତାଙ୍କର ଅମୃତଝରା ଲେଖନୀ ରୂପମୟୀ କରିଛି, ତାହା ଆସନ୍ନଯୁଗମାନଙ୍କରେ ମଧ୍ୟ ଅନାଗତର ଅତିଥି ତୁଲ୍ୟ ପୂଜିତ ହେବ ଓ ବଞ୍ଚି ରହିବ । ଭାବୀଯୁଗର ସାହିତ୍ୟିକ ତାଙ୍କର ବିୟୋଗବ୍ୟଥା ଏହିଦିଗରୁ ଅନୁଭବ କରିବେ ନାହିଁ ଯେହେତୁ ସେ ସାହିତ୍ୟକୁ ଗୋଟିଏ ଅଖଣ୍ଡ ପୂର୍ଣ୍ଣତା ଦାନ କରିଯାଇଛନ୍ତି । ଯାହା କାଳିଦାସଙ୍କ ରଚନା ଭଳି ଅନାଗତ ବହୁଶତାବ୍ଦୀ ପର୍ଯ୍ୟନ୍ତ ଭାବୁକ ଓ କବି ପ୍ରାଣରେ ଉନ୍ମାଦନା ଦେବ । ବିଶ୍ୱସାହିତ୍ୟକୁ ବିଶ୍ୱମାନବିତାକୁ ଆପଣାର ସୌନ୍ଦର୍ଯ୍ୟ ସୃଷ୍ଟିର ଅକୃପଣ ହସ୍ତର ପରିବେଶନ ତାଙ୍କ ଛଡ଼ା ଭାରତରେ କିଏ କରିଛି ?

ଆଧୁନିକ ଯନ୍ତ୍ର ସଂଘର୍ଷମୟ ଯୁଗରେ ଯେତେବେଳେ ମାନବମନ କଳୁଷସଂକୀର୍ଣ୍ଣ ଜାତୀୟତାରେ କ୍ଷୁଣ୍ଣ ହୋଇ ଈର୍ଷା ହିଂସା ପ୍ରତିଦ୍ୱନ୍ଦୀ ଭାବରେ ପାଶବିକ ଲୀଳାର ତାଣ୍ଡବନୃତ୍ୟ ଲଗାଇ ଦେଇଛି, ଲୋଭ, ପ୍ରତିହିଂସା, ଅନ୍ୟାୟ ଯେତେବେଳେ ମାନବ ସଭ୍ୟତାର ଚରମ ଅପମାନ ଘଟାଇଛି, ସେତେବେଳେ ରବୀନ୍ଦ୍ରନାଥଙ୍କର ବାଣୀ, ତାଙ୍କର ବିଶ୍ୱମାନବଭାବ, ମୈତ୍ରୀ ଓ ଆନ୍ତର୍ଜାତିକ ପ୍ରୀତି, ପ୍ରାଚ୍ୟ ପ୍ରତୀଚ୍ୟ ଭାବବିନିମୟ ବ୍ରତ ଉଦ୍‌ଯାପିତ ହେବା ପୃଥିବୀକୁ ବିଧାତାର ଚରମ ଅଭିଶାପ ବୋଲି ମଣିବାକଥା । ଆଦର୍ଶପ୍ରିୟ ପୃଥିବୀର ଅନ୍ୟତମ ଶ୍ରେଷ୍ଠମାନବ ରବୀନ୍ଦ୍ରନାଥଙ୍କର ବିୟୋଗ ବ୍ୟଥା ବିଶ୍ୱଜନକୁ ବ୍ୟଥିତ କରୁଛି ଏହି କାରଣରୁ ଏହି କ୍ଷତି ଆଉ ନିକଟ ବା ଦୂର ଭବିଷ୍ୟତରେ ପୂରଣ ହେବା ସମ୍ଭବପର ନୁହେଁ । ତାଙ୍କର ବ୍ୟକ୍ତିତ୍ୱ ତାଙ୍କର ସାହିତ୍ୟ ଆଜି ବଙ୍ଗର ଭୌଗୋଳିକ ପରିବେଷ୍ଟ ଲଙ୍ଘନ କରି ବିଶ୍ୱମାନବର ସମ୍ପତ୍ତି ହୋଇଛି । ପ୍ରକୃତିର ଏହି ପ୍ରିୟ ପୂଜାରୀଙ୍କର ବିୟୋଗ ବ୍ୟଥାରେ ଉତ୍କଳର ଯୁବକଚିତ୍ତ କ୍ଷୁବ୍ଧ; କିନ୍ତୁ ଏହି ମହାମାନବଙ୍କର ପ୍ରକାଶଭଙ୍ଗୀ ଏବଂ ଅମରପ୍ରେରଣା ଓ କାନ୍ତଇଙ୍ଗିତ ଉତ୍କଳର ଅନାଗତ ତରୁଣ ମନକୁ ଉନ୍ମନା କରିବ ଏବ ତରୁଣର ତାରୁଣ୍ୟ ଉପରେ ଭାବଘନ ଗମ୍ଭୀର ଆଦର୍ଶର ପୂତମୟ ଚିହ୍ନ ଅଙ୍କିତ କରିବ ବୋଲି ମୋର ଦୃଢ଼ ବିଶ୍ୱାସ ହୁଏ । ଆଜି ସେ ଅନାଗତ କାଳର ପଥପ୍ରଦର୍ଶକ । ଜର୍ମାନୀର ମହାକବି ଗେଟେଙ୍କୁ ଛାଡ଼ିଦେଲେ ତାଙ୍କ ସହିତ ପୃଥିବୀର ଆଉ କେଉଁ କବି ସମାସୀନରେ ବସିବାର ପୂର୍ଣ୍ଣଯୋଗ୍ୟତା ରଖନ୍ତି ନାହିଁ ।

ବଙ୍ଗଭାଷା ଉପରେ କେବଳ ନୁହେଁ, ଇଂରାଜୀ ସାହିତ୍ୟ ଓ ଭାଷା ଉପରେ କବିଙ୍କର ଅଧିକାର ଅବ୍ୟାହତ ଥିଲା । ତାଙ୍କର ଇଂରାଜୀ କବିତା ମଧ୍ୟ ତାଙ୍କର ଭାବର ବାହନ ହୋଇ ତାଙ୍କର ଅସାମାନ୍ୟ ପ୍ରତିଭା ଫୁଟାଇ ପାରିଛି । ଗାନ୍ଧିଜୀଙ୍କୁ ଛାଡ଼ିଦେଲେ ତାଙ୍କ ତୁଲ୍ୟ ଇଂରାଜୀ ଲେଖକ ମଧ୍ୟ ଭାରତରେ ଆଉ ନାହାନ୍ତି । ତାଙ୍କର ବଙ୍ଗଳା କବିତା ବହି ଦୁର୍ଭାଗ୍ୟକୁ ଏହି ଶ୍ରାଦ୍ଧବାସର ପ୍ରବନ୍ଧ ରଚନା କାଳରେ ମୋତେ ମିଳିଲା ନାହିଁ । ଇଂରାଜୀରେ ଲିଖିତ ତାଙ୍କର କବିତାରୁ ବୁଝି ହେଉଛି ଯେ ଇଂରାଜୀଭାଷା ତାଙ୍କର ଭାବର ବାହକ କିପରି ନିପୁଣ

ଭାବରେ ହୋଇ ପାରିଥିଲା । ମନୁଷ୍ୟ ଜାତିର ଦରଦୀ କବି ସ୍ୱପ୍ନ ଦେଖୁଛନ୍ତି ଦୂର ଭବିଷ୍ୟତରେ ମହାକାଳ କିପରି ଇତିହାସ ରଚନା କରି କରି ଚାଲିଛି । ପୃଥିବୀର ଦୁର୍ଭାଗ୍ୟପୀଡ଼ିତ କ୍ଷୁଧାର୍ତ୍ତ କ୍ଳାନ୍ତ ମାନବାତ୍ମାକୁ ଶାନ୍ତ୍ୱନା ଦେଇ ସେ ଗୋଟିଏ ସୁନ୍ଦର କବିତା ଲେଖିଛନ୍ତି । ଯେଉଁଟିକୁ କି ସମସ୍ୟାଜାତ ବସ୍ତୁବାଦ ଦୋଷରେ (ରିଏଲିଷ୍ଟିକ୍) କବିତା ଶ୍ରେଣୀରେ ଗଣା ହେବ ନାହିଁ । ତାହା ସ୍ୱପ୍ନାଚାରୀ କବିଙ୍କର ଅସାମାନ୍ୟ କ୍ଷମତା ବହନ କରିଛି ତହିଁରେ ସୁନ୍ଦରଙ୍କର ପ୍ରକାଶ, ସତ୍ୟର ପୂଜା ଏବଂ ଶିବଙ୍କର ଅଭୟ ପରିସ୍ଫୁଟ ହୋଇଛି । କବି ଶ୍ରମିକ ଭବିଷ୍ୟତ ସମ୍ବନ୍ଧରେ ସ୍ୱପ୍ନ ଦେଖିଛନ୍ତି– ବାସ୍ତବତା ଉପରେ । ଇତିହାସ ଲିଖିତ ଜାତି ଏବଂ ସାମ୍ରାଜ୍ୟମାନଙ୍କର ଧ୍ୱଂସସ୍ତୂପବଦ୍ଧ ସଂକୀର୍ଣ୍ଣ ପଥବାହିଦରିଦ୍ର ବଞ୍ଚିତ ତାର ମୁକ୍ତି ସାଧନାର ସ୍ୱର୍ଣ୍ଣରଥ ଟାଣି ନେଇ ଯାଉଛି– ଅସ୍ପଷ୍ଟ ଦୂର ଅନାଗତ କୋଳକୁ । ସେହିଠାରେ ତାର ଆଶା; ଆଶ୍ୱାସଭରା ମିଳନ ପରମ ବାଞ୍ଛିତ ମୁକ୍ତି ସହିତରେ । କବିଙ୍କର ଇଂରାଜୀ କବିତାରେ ସେ ତାହାରି ରୂପ ଅଙ୍କିତ କରିଛନ୍ତି ।

## The Toiler

Adrift on the lazy tide of time sailing to empty space.
I had a vision of phantom shapes.
Processions of people passed and repassd
trampling their way
in a victorious march,
The Pathans with their imperial greed
their steeds raising clouds of dust
and after them the Moghal's
Their crescent banners fluttering high.........
They came and they left
and far as I looked in the empty space
I find no trace of them.
Since that time
many a sun did rise
and many a sun did set
Then came the mighty English bands
racing an iron-roads.......
fiery with their pride of power.

They too will vanish
their far-flung-net round the world
will be swept away
by the tide of time
and not the faintest trace
will they leave behind them
on this vast and empty space
The vision fade.
as I look around this dear old earth
I see the vast ware of common mass.
traversing by diverse ways
the endless track from life to death
urged on by common human needs
from time immemorial.
It is they that row
and they that sit at the helm
It is they that sow the seeds
and they that toils at the harvest
They remain the same through ages the toilers
The scepters snap
the war-drums beat no more
columns of victory
Stand in stupid silence
bloodshot eyes and blood stained hands
hide in historys pages
But they toil on at-home and abroad.
By the sea and by the river
here and there everywhere
Their million voices mingle in a song
their grief and joy of everyday

harmonise in a mighty human life.
Empires have passed away and on their
ashes and ruines
they ply their daily round
The toiler.

କବି ପୃଥିବୀରେ ମାନବଜାତି ଉପରେ ଅହରହ ପାଶବିକଲୀଳାର କଦର୍ଯ୍ୟତା ସହି ପାରୁନାହାନ୍ତି । ଦୁଃଖଭାରରେ ମ୍ରିୟମାଣ ପ୍ରାଣ ତାଙ୍କର ହୁଏତ ନିରାଶାରେ ଉତ୍ତ୍ୟକ୍ତ ହୋଇ ସୃଷ୍ଟିକର୍ତ୍ତାଙ୍କ ପ୍ରଶ୍ନ ପଚାରିଛି ଯେଉଁମାନେ ଦୁନିଆରେ ତାର ମଙ୍ଗଳ ସୃଷ୍ଟି ନାଶକରି ଆକାଶ ପବନ କଳଙ୍କିତ କରୁଛନ୍ତି, ତୁମେ ତାଙ୍କୁ କଣ କ୍ଷମା ଦବ ? କବି କହୁଛନ୍ତି–

"Age after age time and again hast thou o' lord,
Sent they messengers– To this pitiless world.
They have left their word."
Forgive all love all cleanse your hearts from
blood red stains of hatred —
Adorable they are ever to be remembered
yet from the outer door
Did I turn them away to-day evil day
with unmeaning salutation
Have I not seen secret malignance
Strike down the helpless
under the cover of hypocritical might ?
Have I not seen at might's defiant outrages
The silence voice of justice weepring in solitude?
Did I not see in what agony reckless youth running mad
Vainly shattered their lives against insensitive rocks ?
Choked in my voice today mute my songs.
Darkly my World lies imprisoned in a dismal dream.
And I ask thee, o lord, in tears
Hast thou thyself forgiven hast even thou loved
Those that are poisoning thy air and blotting out thy light ?

କବି ସ୍ୱାଧୀନତାର ଚିରଭକ୍ତ। ଭୟ ଭିତରେ ନିର୍ଭୟ, ବିଶୃଙ୍ଖଳା ଭିତରେ ନିୟମ ଶୃଙ୍ଖଳା ମୃତ୍ୟୁ ଭିତରେ ଜୀବନର ସ୍ୱାଦ ସେ ପାଇଛନ୍ତି । ବୃହତ୍ତର ଶ୍ରେୟପାଇଁ କ୍ଷୁଦ୍ରପ୍ରେୟ ଓ ଲାଭ କ୍ଷତିକୁ ବଳିଦାନ କରି ବିଶ୍ୱ ପଥିକ ଗତି ନିୟନ୍ତ୍ରଣ କରୁ, ଏହା ତାଙ୍କର ମର୍ମକଥା । ସ୍ୱାଧୀନତା ସମ୍ବନ୍ଧରେ ସେ କହୁଛନ୍ତି —

Fear the phantom demon,
Shaped by your own distorted dreams
Freedom from the burden of ages
Bending your head, breaking your back blinding your eyes.
To the beckoning call of future
Freedom from shackles of slumber
with which you fasten yourself to might's stillness
Mistursting the star that speaks of truth's adventurous path,
Freedom from the anarchy of a destiny
Whose sails are weekly yielded
To bind uncertained winds
And the helm to a hand ever rigid and cold as Death.
Freedom from the insult of dwelling.
In a doll's world
where movements are started
through brainless wires
repeated through mindless habit
where figures wait with patient obedience
For a master of show
to be stirred in to
a moments mimicry of life.

ଜଗତରେ ମାନବଜାତିର ଜନ୍ମଗତ ଅଧିକାର ସ୍ୱାଧୀନତା ରବୀନ୍ଦ୍ରଙ୍କର ପରମ କାମନାର ବିଷୟ । ଅନ୍ଧକାରର କୁଜ୍ଝଟିକା ଭିତରେ ସେ କିନ୍ତୁ ସବୁଦିନେ ଆଶାର ରଶ୍ମି ଦେଖିଛନ୍ତି । ସେଥିପାଇଁ କହିଛନ୍ତି —

"I have great faith in humanity. Like the sun it can be clouded but never extinguished. I admit that at this time when guns

are thundering all the world over, the baser eliments appear predominant. The powerful are exulting at the number of their victims. They take the name of science to cultivate the school boy superstition that they have sustain physical signs indicating their eternal rights to rule, as the explosive force of the earth quake once might have claimed with enough of evidence its never-ending sway over the destiny of this earth.

But they in their turn will be disappointed their's is the cry of a past that is already exhusted, a past, that thrived upon the exclusive spirit of National industrialism which will no longer be able to be able to keep the balance in its perpetual disharmony with its sorrowdings. Only those races will prosper who for the sake of their own perfection and permanent safety, are ready to cultivate the spiritual magnanimity of mind that enables the soul of man to be realised in the heart of all races. For men to come near to one another and yet to continue to ignore the claims of humanity is a sure process of suicide. We are waiting for the time when the spirit of the age will be incarnated in a complete human truth and the meeting of men will be translated in to the unity of man."

ବିଶ୍ୱଜଗତର ମିଳନ କ୍ଷେତ୍ରରେ ମନୁଷ୍ୟର ଐକ୍ୟ ଏବଂ ତଦ୍ୱାରା ତାର ମୁକ୍ତି କେବଳ ସମ୍ଭବପର ଏହି ତାଙ୍କର ମନୁଷ୍ୟ ଜାତିକୁ ଶାନ୍ତ୍ୱନାମୟ ବାଣୀ । ଆନ୍ତର୍ଜାତିକ ଭାବରେ ତାଙ୍କର ସାହିତ୍ୟ ଓ ଆଦର୍ଶ ଓତପ୍ରୋତ ଭାବରେ ସଂଲଗ୍ନ ହୋଇଥିଲେ ହେଁ, ଭାରତବର୍ଷ ତାଙ୍କ ନିକଟରେ ଏକମାତ୍ର ତୀର୍ଥ ଯେଉଁଠାରେ କି ମାନବର ଏହି ବାଞ୍ଛା ସାର୍ଥକ ହୋଇ ପାରିବ । ଭାରତର ଶିକ୍ଷା, ସଂସ୍କୃତି ଓ ଆଦର୍ଶ କେବଳ ପୃଥିବୀର ଶେଷ ଭରସାସ୍ଥଳ ଏବଂ ପୃଥିବୀକୁ ଭାରତ ତାର ଶ୍ରେଷ୍ଠ ଅବଦାନ ଦ୍ୱାରା ଆଲୋକିତ କରିବ । ପ୍ରାଚ୍ୟଦେଶର ମହାମାନବ ଦ୍ୱାରା କେବଳ ଏହା ସମ୍ଭବପର ବୋଲି ସ୍ୱଦେଶ ଓ ସ୍ୱଦେଶର କୃଷ୍ଟି ଉପରେ ସଭ୍ୟତା ଉପରେ ରବୀନ୍ଦ୍ରଙ୍କର ଅଚଳା ନିଷ୍ଠା ଥିଲା । ସେ କହିଛନ୍ତି —

"The wheels of fate will some day compel the English to give up their Indian empire. But what kind of India will they leave behind, what stark misery ? When the stream of their centuries administration runs day at last what It waste of mud and filth will they leave behind them ? I had at one time believed that tide spirings of civilization would issue out of the heart of Europe. And today when I am about to quit the world that stubborn faith has

gone bankrupt altogether. To-day my one last hope is that the deliver will be born in to this poverty-stricken country and from the East his massage will go forth to the world at large and fill the heart of man with boundless hope.

ପିଷ୍ଟ ମାନବ ଜାତିକୁ କବି ଉପରୋକ୍ତ ଭରସାମୟ ବାଣୀ ଶୁଣାଇଛନ୍ତି ।

ରବୀନ୍ଦ୍ରନାଥଙ୍କର କବିପ୍ରାଣ ବିଶ୍ୱର ପୀଡ଼ିତ ବୁଭୁକ୍ଷୁ ନିର୍ଯ୍ୟାତିତଙ୍କ ବେଦନାରେ ଅଧୀର । ନାରୀଜାତିକୁ କବି ସମ୍ମାନ କରିଛନ୍ତି ଓ ନାରୀର ବଦ୍ଧବେଦନାରେ ବ୍ୟଥିତ ହୋଇଛନ୍ତି । ନାରୀକୁ ତାଙ୍କପରି ବନ୍ଦନାଗୀତି ଦ୍ୱାରା ଭାରତର ଅନ୍ୟ ମହାକବିମାନେ ଯେ ତାଙ୍କ ପୂର୍ବେ ଶ୍ରଦ୍ଧା ସମ୍ଭ୍ରମ ଜଣାଇ ନାହାନ୍ତି ତାହା ନୁହେଁ, ସେମାନଙ୍କର ଅଭିନନ୍ଦନ, ସେମାନଙ୍କର ବନ୍ଦନାଗୀତିର ଢଙ୍ଗ ଅନବଦ୍ୟ ହେଲେହେଁ ରବୀନ୍ଦ୍ରନାଥଙ୍କ ସହିତ ତାହାର ତୁଳନା ହୁଏ ନାହିଁ । ନାରୀକୁ ସେ ବାସ୍ତବତା ସହିତ ଜଡ଼ିତ କରି ବିଚାର କରିଛନ୍ତି, ପରଖିଛନ୍ତି ସତ୍ୟ, ପୁରୁଷର ଆଧ୍ୟାତ୍ମିକତା ସହିତ ନାରୀର ପ୍ରତ୍ୟକ୍ଷ ଯୋଗ ନାହିଁ ସତ୍ୟ କିନ୍ତୁ ନାରୀ ଯେ ନିରାଟ ବାସ୍ତବତା ଛଡ଼ା ଅନ୍ୟ କିଛି ନୁହେଁ, ଅପାର୍ଥିବତା କ୍ଷେତ୍ରରେ ଅବ୍ୟକ୍ତର ପରିସର ମଧ୍ୟରେ ନାରୀର ଯେ ସ୍ଥାନ ରହିଛି ଏହାକୁ ବିଂଶ ଶତାବ୍ଦୀର କବି ରବୀନ୍ଦ୍ରନାଥହିଁ ବୋଧହୁଏ ଭାରତୀୟ କବିମାନଙ୍କ ମଧ୍ୟରେ ପ୍ରଥମେ ସ୍ୱୀକାର କରିଛନ୍ତି । ତାଙ୍କର ଅସଂଖ୍ୟ ପ୍ରେମ କବିତା ମଧ୍ୟରେ ମଧ୍ୟ ଏହାର ପରିଚୟ ମିଳେ । ନାରୀକୁ ସେ ଅତୀନ୍ଦ୍ରିୟ ଲୋକରେ ଦେଖିଛନ୍ତି ବୋଲି ତାଙ୍କର ପ୍ରସିଦ୍ଧ କବିତା 'ଉର୍ବଶୀ'ର ପ୍ରଥମ ପଂକ୍ତିରେ କହିଛନ୍ତି—

"ନହମାତା, ନହକନ୍ୟା, ନହବଧୂ, ସୁନ୍ଦରୀ ରୂପସୀ,
ହେ ନନ୍ଦନବାସିନୀ ଉର୍ବଶୀ ।"

ଏପରି ବହୁ କବିତାରେ କବି ନାରୀକୁ ଅଭିନନ୍ଦିତ କରିଛନ୍ତି । ନାରୀ ମୁଖରେ ପୁରୁଷକୁ ମଧ୍ୟ ସେ ବିଚିତ୍ରବାର୍ତ୍ତା ଶୁଣାଇଛନ୍ତି । ମୋର ମନେହୁଏ, ଭାରତରେ ବା ଅନ୍ୟ ଦେଶର କବିମାନେ ନାରୀର ଏ ଆତ୍ମ ପରିଚୟ ତାଙ୍କ କାବ୍ୟମାନଙ୍କରେ ଏପରି ଗୌରବମୟ ଭାବରେ ଦେଇ ନ ଥିବେ । ଚିତ୍ରାଙ୍ଗଦା କାବ୍ୟରେ ନାୟିକା ଚିତ୍ରାଙ୍ଗଦା ନାୟକ ଅର୍ଜ୍ଜୁନଙ୍କୁ କହୁଛନ୍ତି—

"ଆମି ଚିତ୍ରାଙ୍ଗଦା ।
ଦେବୀ ନହି, ନହି ଆମି ସାମାନ୍ୟା ରମଣୀ ।
ପୂଜା କରି, ରାଖିବେ ମାଥାୟ, ସେଓ ଆମି ନହି ।
ଯଦି ପାର୍ଶ୍ୱେ ରାଖ ମୋର ସଙ୍କଟେର ପଥେ,
ଦୁରୂହ ଚିନ୍ତାର ଯଦି ଅଂଶ ଦାଓ,
ଯଦି ଅନୁମତି କର

କଠିନ ବ୍ରତେର ତବ ସହାୟ ହଇତେ,
ଯଦି ସୁଖେ ଦୁଃଖେ ମୋର କର ସହଚରୀ
ଆମାର ପାଇବେ ତବେ ପରିଚୟ !''

ନାରୀର ସ୍ଥାନ ପୂଜା ବେଦୀ ଉପରେ ନୁହେଁ କିମ୍ବା ଭୋଗର ଆବଦ୍ଧ ସଂକୀର୍ଣ୍ଣ ସୀମାବଦ୍ଧ ବେଦୀ ଉପରେ ନୁହେଁ । ସେ ଦେବୀ ନୁହେଁ, ମାନବୀ ନୁହେଁ, ଅନ୍ୟ କିଛି, ଏହି ଦୁଇଟି ଉପାଧିର ବାହାରେ । ସେ ପୁରୁଷର ସାଥୀ ତାହାର ସମକକ୍ଷ, ତାହା ସହିତ ନାରୀର ସମାନ ସ୍ଥାନ, ତାହାଠାରୁ ଉଚ୍ଚ ନୁହେଁ ବା ନୀଚ ନୁହେଁ । ଏହି ସହଜ ଦୃଷ୍ଟିରେ ପୁରୁଷ ନାରୀକୁ ଦେଖିବା ଠିକ୍ ଦେଖିବା, ବିଚାରିବା ଠିକ୍ ବିଚାରିବା । ନାରୀ ସମ୍ବନ୍ଧରେ କବିଙ୍କର ଆଦର୍ଶ ସାଧାରଣ ବୋଧ ନୁହେଁ । ନାରୀକୁ ସେ ବ୍ୟକ୍ତି ବୋଲି ଭାବିଛନ୍ତି । ଏହା ଯୁଗାନୁମୋଦିତ ଧର୍ମ ପ୍ରଭାବରୁ ନୁହେଁ, ତାଙ୍କର ସହଜାତ ଔଦାର୍ଯ୍ୟ ଓ ତୀକ୍ଷ୍ଣ ବିଚାର ବୁଦ୍ଧି ଗୁଣରୁ କବି ତାଙ୍କର 'ସତୀ' କାବ୍ୟରେ ମଧ୍ୟ ନାରୀର ନାରୀତ୍ୱ ଓ କଣ ତାର ପରିଚୟ ଦେଇ ମରାଠୀ ହିନ୍ଦୁନାରୀ ଅମାବାଈ ମୁଖରେ ତାହାର ଧର୍ମାନ୍ଧ ପିତାକୁ କୁହାଇଛନ୍ତି :—

''ଧିକ୍ ପିତା ଧିକ୍—
ବଧେଛ ପତିରେ ମୋର— ଆରୋ ମର୍ମାନ୍ତିକ
ଏଇ ମିଥ୍ୟା ବାକ୍ୟ ଶେଲ । ତବ ଧର୍ମ କାଛେ
ପତିତ ହୟେଛି, ତବୁ ମମଧର୍ମ ଆଛେ
ସମୁଜ୍ଜ୍ୱଳ । ପତ୍ନୀ ଆମି, ନହି ସେବା ଦାସୀ ।
ବରମାଲ୍ୟେ ବରେଛିନୁ ତାଁରେ ଭାଲୋ ବାସି
ଶ୍ରଦ୍ଧାଭରେ, ଧରେଛିନୁ ପତିର ସନ୍ତାନ
ଗର୍ଭେ ମୋର, ବଲେ କରି ନାଇ ଆତ୍ମଦାନ ।
ହୃଦୟ ଅର୍ପଣ କରେଛିନୁ ବୀରପଦେ ।
ଯବନ ବ୍ରାହ୍ମଣ ସେ ଭେଦ କାହାର ଭେଦ ?
ଧର୍ମେର ସେ ନୟ । ଅନ୍ତରେର ଅନ୍ତର୍ଯ୍ୟାମୀ
ଯେଥା ଜେଗେ ରୟ— ସେଥାୟେ ସମାନ ଦୋହେଁ ।
ପୂର୍ଣ୍ଣ ଭକ୍ତିଭରେ କରେଛି ପତିର ପୂଜା
ହୟେଛି ଯବନୀ ପବିତ୍ର ଅନ୍ତରେ
ନହିଁ ପତିତା ରମଣୀ—
ପରିତାପେ ଅପମାନେ ଅବନତ ଶିରେ
ମୋର ପତି ଧର୍ମହତେ ଯାବଫିରେ ଧର୍ମାନ୍ତରେ ଅପରାଧୀସମ !''

ନାରୀର ବିଶିଷ୍ଟ ବିଚାର ବୁଦ୍ଧି ଓ ମନର ସ୍ୱତନ୍ତ୍ର ଧର୍ମ ଓ ରୁଚି ଅଛି, ଏବଂ ଏହା ନାରୀ ପକ୍ଷରେ ଅଗୌରବ କଥା ନୁହେଁ । ଏହା ଅନ୍ତରର ସତ୍ୟ ଉପରେ ପ୍ରତିଷ୍ଠିତ ବୋଲି ନାରୀ ଏହି କ୍ଷେତ୍ରରେ ସମସ୍ତଙ୍କର ଶ୍ରଦ୍ଧାର ଦାବି ରଖେ ।– ମନୁଷ୍ୟର ବ୍ୟକ୍ତିତ୍ୱ ହେଉଛି ଖୁବ୍ ମୂଲ୍ୟବାନ୍ ସମ୍ପତ୍ତି । ନାରୀ ଏହି ସମ୍ପତ୍ତିର ଅଧିକାର ପାଇବା ଉଚିତ ଏବଂ ନ୍ୟାୟ ।–

କବି ତାଙ୍କର ଗୋଟିଏ ପ୍ରବନ୍ଧରେ ଲେଖିଛନ୍ତି "ଆମାଦେର ପୂର୍ବ ଯୁଗେ ମେୟେରା ଛିଲ ପୁରୁଷେର ଅନ୍ତରାୟ । ସଂସାରେର ସଂକୀର୍ଣ୍ଣ ପ୍ରୟୋଜନେର କାଛେ ତାରା ପାରିବାରିକ କଲଟେପା ପୁତୁଲେର ମତୋ ବିହିତ ନିୟମେ ଆଓୟାଜ କରେଛେ, ହାତପା ନେଡ଼େଛେ । ଅଜ୍ଞତା ଓ ଅଶକ୍ତିଇ ଯେ ତାଦେର ଭୂଷନ୍ ଏଇ କଥାଇ ତାରା ଜାନେ । ମାତା ବା ଗୃହିନୀର ବିଶେଷ ବିଶେଷ ମୋଡ଼କେଇ ତାଦେର ପରିଚୟ । ତାଦେର ମନୁଷ୍ୟତ୍ୱେର ଯେ ସ୍ୱାତନ୍ତ୍ର୍ୟଟି ମୋଡ଼କ ଛାଡ଼ିୟେଓ ପ୍ରକାଶ ପ୍ରାୟ ତା କଖନୋ ବା ଅସ୍ୱୀକୃତା କଖନୋ ବା ନିନ୍ଦିତ । ଏମନି ଭାବେ ମେୟେରା ମାନୁଷେର ଏକଟା ପ୍ରକାଣ୍ଡ ଲୋକସାନ ଘଟିଏ ଏସେଚେ । ଆଜ ଏଲ ଏମନଯୁଗ ଯଖନ ମେୟେରା ମାନବତ୍ୱେର ପୂର୍ଣ୍ଣ ମୂଲ୍ୟ ଦାବୀ କରେଛେ । ଜନନାର୍ଥଂ ମହାଭାଗା ବଲେ ତାଦେର ଗଣନା କରା ହବେ ନା । ସମ୍ପୂର୍ଣ୍ଣ ବ୍ୟକ୍ତିବିଶେଷ ବଲେ ତାରା ହବେ ଗନ୍ୟ । ମାନବ ସମାଜେ ଏଇ ଆତ୍ମଶ୍ରଦ୍ଧାର ବିସ୍ତାରେର ମତୋ ଏତ ବଡ଼ ସମ୍ପଦ ଆର କିଛୁଇ ହତେ ପାରେ ନା । ଗଣନାୟ ମାନୁଷେର ପରିମାଣ ପାଓୟା ଯାୟନା– ପୂର୍ଣ୍ଣତାତେଇ ତାର ପରିମାଣ । ଆମାଦେର ଦେଶେଓ କୃତ୍ରିମ ବନ୍ଧନ ମୁକ୍ତ ମେୟେରା ଯଖନ ଆପନ ପୂର୍ଣ୍ଣ ମନୁଷ୍ୟତ୍ୱେର ମହିମା ଲାଭ କରବେ ତଖନ ପୁରୁଷଓ ପାବେ ଆପନ ପୂର୍ଣ୍ଣତା ।"

କବି ତାଙ୍କର ଉପନ୍ୟାସ ନାୟିକା ମୁଖରେ ପୁରୁଷ ପ୍ରକୃତିର ମଧ୍ୟ ସୁନ୍ଦର ପରିଚୟ ଦେଇଛନ୍ତି । "ପୁରୁଷ ମାନୁଷ ରାଜାର ଜାତ । ଦୁଃସାଧ କର୍ମେର ଅଧିକାର ଓଦେର ନିୟତଇ ପ୍ରଶସ୍ତ କର୍ତେ ହବେ । ନଇଲେ ତାରା ମେୟେଦେର ଚେୟେଓ ନୀଚୁ ହୟେ ଯାୟ । କେନନା ମେୟେରା ଆପନ ସ୍ୱାଭାବିକ ମାଧୁର୍ଯ୍ୟେ ଭାଲୋବାସାର ଜନ୍ମଗତ ଐଶ୍ୱର୍ଯ୍ୟେଇ ସଂସାରେ ପ୍ରତିଦିନ ଆପନ ଆସନକେଇ ସହଜେଇ ସାର୍ଥକ କରେ । କିନ୍ତୁ ପୁରୁଷେର ନିଜେକେ ସାର୍ଥକ କର୍ତେ ହୟ ପ୍ରତ୍ୟୟ ଯୁଦ୍ଧେର ଦ୍ୱାରା । ସେକାଲେ ରାଜାରା ବିନା ପ୍ରୟୋଜନେଇ ରାଜ୍ୟ ବିସ୍ତାର କର୍ତେ ଯେତୋ । ରାଜ୍ୟ ଲୋଭେ ନିତ୍ୟନୂତନ କରେ ପୌରୁଷେର ଗୌରବଂ ପ୍ରମାଣେର ଜନ୍ୟ । ଏଇ ଗୌରବେ ଯେନ ମେୟେରା ବାଧା ନା ଦେୟ ।"

ରବୀନ୍ଦ୍ରନାଥ ନାରୀଜାତିର, ଶୂଦ୍ରଜାତିର, ପରାଧୀନଜାତିର, ଅଛବ ଜାତିର, ମୁକ୍ତିକାମନା କରିଛନ୍ତି । ପୃଥିବୀରେ ଏହାଦ୍ୱାରା ମଙ୍ଗଳ ହେବ, ଏହା ଛଡ଼ା ଅନ୍ୟ କାହିଁରେ ନୁହେଁ । ଏହା ତାଙ୍କର ମତବାଦର ଭିତ୍ତି । ପ୍ରତିସଂଘ, ପ୍ରତିବ୍ୟକ୍ତିର ସ୍ୱାଧୀନତା ତାଙ୍କର

ଚିରଦିନ କାମନାର ବିଷୟ ଥିଲା ବୋଲି ତାଙ୍କର ସମସ୍ତ ସାହିତ୍ୟରେ ଏହି ଭାବହିଁ ନାନା ବିଚିତ୍ର ବର୍ଣ୍ଣ ସୁଷମାରେ ଆମ୍ଭମାନଙ୍କ ଚକ୍ଷୁରେ ଧରା ଦେଇଛି । ସେହି କାରଣରୁ ଆଜି ବିଶ୍ୱର ମାନବଜାତି ତାଙ୍କର ସମସ୍ତ ଦେଶବାସୀ ତାଙ୍କ ନିକଟରେ ଋଣୀ । ମେଘମେଦୂର ପ୍ରକୃତି ଆଜି ତାଙ୍କର ବିରହ ଦୁଃଖ ଭାରରେ ମ୍ରିୟମାଣା । ଆଜି ଏହାରି ବ୍ୟଞ୍ଜନା ଆମ୍ଭମାନଙ୍କର ପ୍ରାଣରେ ସତ୍ୟ ହୋଇଛି ।

## ଦ୍ୱିତୀୟ ଅଧ୍ୟାୟ

କବିଙ୍କର ଗଦ୍ୟ ସାହିତ୍ୟ, ପ୍ରବନ୍ଧ ଉପନ୍ୟାସ ସମ୍ବନ୍ଧରେ ମୁଁ ଆଉକିଛି ବିଶେଷ ଆଲୋଚନା କରିବାର କ୍ଷେତ୍ର ଓ ସମୟ ଆଜି ସଭାର ନିର୍ଦ୍ଦିଷ୍ଟ ଗଣ୍ଡି ଭିତରେ ପାଇ ପାରୁନାହିଁ । ତଥାପି ତାଙ୍କର ଆଦର୍ଶବାଦ ତାଙ୍କର ସାହିତ୍ୟଭାଷାରେ କିପରି ଫୁଟିଛି ତାହାର ଅଳ୍ପ ପରିଚୟ ଦେବି । ମୋ ସ୍ତରର ଲେଖିକା ପକ୍ଷରେ ଏହା ଧୃଷ୍ଟତା ମଣିଛି ବୋଲି ତାଙ୍କର ଲେଖା ତାଙ୍କରି ରଚିତ ଭାଷାରେ ହିଁ ପ୍ରକାଶ କରିବା କର୍ତ୍ତବ୍ୟ ବୋଲି ଭାବିଛି । ଏହା ଦ୍ୱାରାହିଁ ତାଙ୍କର ପୂଜା କରିବାର ସାର୍ଥକତା ।

''ଗୋରା'' ତାଙ୍କର ସୁବୃହତ୍ ଉପନ୍ୟାସ । ବ୍ରାହ୍ମଧର୍ମାବଲମ୍ବୀ ଜାଠଦଳର ସଂସ୍କାରକ୍ଲିଷ୍ଟ ବ୍ୟକ୍ତି ଏବଂ ସେହି ସମାଜର ଲୋକମାନଙ୍କୁ ସୁପରାମର୍ଶ ଦେଇଛନ୍ତି । ହିନ୍ଦୁଧର୍ମର ବିଧି ନିଷେଧ, ଲୋକାଚାର ପ୍ରଭୃତି ଧର୍ମାଚରଣର ବହିରଙ୍ଗକୁ ମଧ ସେ ତୀବ୍ର କଷାଘାତ କରିଅଛନ୍ତି । ପୁସ୍ତକର ପ୍ରଧାନ ନାୟକ ''ଗୋରା'' ଭାରତବର୍ଷୀୟ ଧର୍ମ, ଆଚାର, ସମାଜକୁ ଅତ୍ୟନ୍ତ ଶ୍ରଦ୍ଧା କରେ । ଭାରତର ପିଷ୍ଟ, କ୍ଷୁଧାର୍ତ୍ତ, ରୁଗ୍‌ଣ ଲୋକଙ୍କର ସେବା କରିବା ତାର କାମ୍ୟ । ଅତ୍ୟନ୍ତ ସଂସ୍କାରପ୍ରିୟ ବଶରୁ ତାର ଜୀବନର ପ୍ରତି ପଦକ୍ଷେପ ଦ୍ୱନ୍ଦଭିତର ଦେଇ ଚାଳିତ । ସେ ବ୍ରାହ୍ମଣ ଘରେ ପାଳିତ କିନ୍ତୁ ୟୁରୋପୀୟ ରକ୍ତ ତାର ଧମନୀରେ ବର୍ତ୍ତମାନ । ପାଳକ ପିତା ମାତା ତାର ଜନ୍ମ ବୃତ୍ତାନ୍ତ ତାକୁ ଲୁଚାଇ ରଖିଥିଲେ । ସେ ଯେଉଁ ଦିନ ଆତ୍ମପରିଚୟ ପାଇଲା, ସେହିଦିନ ତାର ମନରେ କି ଭାବ ଜାତ ହେଲା ତାହା କବିଙ୍କ ଭାଷା କହୁଛି :–

ଗୋରା ବଲିଆ ଉଠିଲ ''ପରେଶବାବୁ ।''
ଆମାର କୋନୋ ବନ୍ଧନ ନେଇ ।
ପରେଶବାବୁ ଆଶ୍ଚର୍ଯ୍ୟ ହଇଆ କହିଲେନ୍ ''କିସେର ବନ୍ଧନ ?''
ଗୋରା ବଲିଲ ''ଆମି ହିନ୍ଦୁ ନଇଁ ।''
ପରେଶବାବୁ କହିଲେନ୍ ''ହିନ୍ଦୁ ନଓ ?''
ହିନ୍ଦୁନଓ–ଗୋରା କହିଲ ''ନା ଆମି ହିନ୍ଦୁ ନଇଁ ।''

ଆଜ ଖବର ପେୟେଛି ଆମି ମିଉଟିନିର ସମୟକାର କୁଡ଼ନୋ ଛେଲେ । ଆମାର ବାପ ଆଇରିଶମ୍ୟାନ୍ । ଭାରତବର୍ଷେର ଉତ୍ତର ଥେକେ ଦକ୍ଷିନ ପର୍ଯ୍ୟନ୍ତ ସମସ୍ତ ଦେବମନ୍ଦିରେର ଦ୍ୱାର ଆଜି ଆମାର କାଛେ ରୁଦ୍ଧ ହୟେଗେଛେ । ଆଜ ସମସ୍ତ ଦେଶର ମଧ୍ୟେ କୋନୋ ପଂକ୍ତିତେ କୋନୋ ଜାୟଗାୟ ଆମାର ଆହାରେର ଆସନ ନେଇ । ଗୋରା କହିଲ "ଆମି ଆଜ ମୁକ୍ତ, ପରେଶବାବୁ ! ଆମି ଯେ ପତିତ ହବ ବ୍ରାତ୍ୟ ହବ ସେହି ଭୟ ଆମାର ନେଇ । ଆମାକେ ଆର ପଦେ ପଦେ ମାଟିର ଦିକେ ଚେୟେ ଶୁଚିତା ବାଞ୍ଚିଏ ଚଲତେ ହବେ ନା" ସୁଚରିତା ଗୋରାର ପ୍ରଦୀପ୍ତ ମୁଖେର ଦିକେ ଏକଦୃଷ୍ଟିତେ ଚାହିଁଆ ରହିଲ ।

ଗୋରା କହିଲ, "ପରେଶବାବୁ ! ଏତଦିନ ଆମି ଭାରତବର୍ଷକେ ପାବାର ଜନ୍ୟେ ସମସ୍ତ ପ୍ରାନ୍ ଦିୟେ ସାଧନା କରେଛି । ଏକଟା ନା ଏକଟା ଜାୟଗାୟ ବେଧେଛେ– ସେଇସବ୍ ବାଧାର ସଙ୍ଗେ ଆମାର ଶ୍ରଦ୍ଧାର ମିଲ୍ କରବାର ଜନ୍ୟ ଆମି ସମସ୍ତ ଜୀବନ ଦିନରାତ କେବଲି ଚେଷ୍ଟା କରେ ଏସେଛି । ଏଇ ଶ୍ରଦ୍ଧାର ଭିତ୍ତିକେଇ ଖୁବ୍ ପାକାକରେ ତୋଲ୍‌ବାର ଚେଷ୍ଟାୟ ଆମି ଆର କୋନ୍‌କାଯ କରତେ ପାରିନି– ସେଇ ଆମାର ଏକଟି ମାତ୍ର ସାଧନା ଛିଲ । ସେଇ ଜନ୍ୟେ ବାସ୍ତବ ଭାରତବର୍ଷର ପ୍ରତି ସତ୍ୟଦୃଷ୍ଟି ମେଲେ ତାର ସେବା କର୍ତ୍ତେ ଗିୟେ ଆମି ବାର ବାର ଭୟେ ଫିରେ ଏସେଛି । ଆମି ଏକଟି ନିଷ୍କଣ୍ଟକ ନିର୍ବିକାର ଭାବେର ଭାରତବର୍ଷ ଗଢ଼େ ତୁଲେ ସେଇ ଅଭେଦ୍ୟ ଦୁର୍ଗେର ମଧ୍ୟେ ଆମାର ଭକ୍ତିକେ ସମ୍ପୂର୍ଣ୍ଣ ନିରାପଦେ ରକ୍ଷାକରବାର ଜନ୍ୟେ ଏତଦିନେ, ଆମାର ଚାରିଦିଗେର ସଙ୍ଗେ କି ଲଡ଼ାଇ ନା କରିଛି । ଆଜ ଏକମୁହୂର୍ତ୍ତେଇ ଆମାର ସେଇ ଭାବେର ଦୁର୍ଗ ସ୍ୱପ୍ନେର ମତ ଉଡ଼େଗେଛେ । ଆମି ଏକେବାରେ ଛାଡ଼ାପେୟେ ହଠାତ୍ ଏକଟା ବୃହତ୍ ସତ୍ୟେର ମଧ୍ୟେ ଏସେ ପଡ଼େଛି । .ସମସ୍ତ ଭାରତବର୍ଷେ ଭାଲ ମନ୍ଦ ସୁଖ ଦୁଃଖ ଜ୍ଞାନ ଅଜ୍ଞାନ ଏକେବାରେଇ ଆମାର ବୁକେଇ କାଛେ ଏସେ ପୌଁଛେଚେ । ଆଜ ଆମି ସତ୍ୟକାର ସେବାର ଅଧିକାରୀ ହୟେଛି । ସତ୍ୟକାର କର୍ମକ୍ଷେତ୍ର ଆମାର ସାମନେ ଏସେ ପଡ଼େଛେ । ସେ ଆମାର ମନେର ଭିତରକାର କ୍ଷେତ୍ର ନୟ–ସେ ଏଇ ବାଇରେର ପଞ୍ଚବିଂଶତି କୋଟି ଲୋକେର ଯଥାର୍ଥ କଲ୍ୟାନ କ୍ଷେତ୍ର ।

ଗୋରା କହିଲ ଆମାର କଥା କି ଆପନି ଠିକ୍ ବୁଝତେ ପାରଛେନ୍ ନା । ଆମି ଯା ଦିନରାତ୍ରି ହୋତେ ଚାଚ୍ଛିଲୁମ; ଅଥଚ ହତେ ପାରିଛିଲୁମନା, ଆଜ-ଆମି ତା ହୟେଛି । ଆମି ଆଜ ଭାରତବର୍ଷୀୟ । ଆମାର ମଧ୍ୟେ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ୍, କୋନ୍ ସମାଜେର କୋନ୍ ବିରୋଧ ନେଇ । ଆଜ୍ ଏଇ ଭାରତବର୍ଷେର ସକଲେର ଜାତଇ ଆମାର ଜାତ । ସକଲେର ଅନ୍ନଇ ଆମାର ଅନ୍ନ । ଦେଖୁନ୍, ଆମି ବାଂଲାର ଅନେକ ଜେଲାୟ ଭ୍ରମନ୍

କରେଛି । ଖୁବ୍ ନୀଚ ପଲ୍ଲୀତେ ଓ ଆତିଥ୍ୟ ନିୟେଛି । ଆମି କେବଲ ସହରେର ସଭାୟ ବକ୍ତୃତା କରେଛି ତା ମନେ କରେବେନ୍ ନା । କିନ୍ତୁ କୋନୋମତେଇ ସକଲ ଲୋକେର ପାଶେ ଗିୟେ ବସତେ ପାରିନି । ଏତଦିନ ଆମି ଆମାର ସଙ୍ଗେ ସଙ୍ଗେଇ ଏକଟା ଅଦୃଶ୍ୟ ବ୍ୟବଧାନ ନିୟେଇ ଘୂରେଛି । କିଛୁତେଇ ସେଟାକେ ପେରୁତେ ପାରିନି । ସେଜନ୍ୟ ଆମାର ମନେର ଭିତରେ ଖୁବ୍ ଏକଟା ଶୂନ୍ୟତା ଛିଲ । ଏଇ ଶୂନ୍ୟତାକେ ନାନା ଉପାୟେ କେବଲି ଅସ୍ୱୀକାର କର୍ତେ ଚେଷ୍ଟା କରେଛି । ଏଇ ଶୂନ୍ୟତାର ଉପରେ ନାନା ପ୍ରକାର କାରୁକାର୍ଯ୍ୟ ଦିୟେ ତାକେଇ ଆରୋ ବିଶେଷରୂପ ସୁନ୍ଦର କରେ ତୁଲତେ ଚେଷ୍ଟା କରେଛି । କେନନା ଭାରତବର୍ଷକେ ଆମି ଯେ ପ୍ରାନେର ଚେୟେ ଭାଲୋବାସି ଆମି ତାକେ ଯେ ଅଂଶଟିତେ ଦେଖତେ ପେତୁମ୍ ସେ ଅଂଶେର କୋଥାଓ ଯେ ଆମି କିଛୁମାତ୍ର ଅଭିଯୋଗେର ଅବକାଶ ଏକେବାରେ ସହ୍ୟ କର୍ତେ ପାର୍‌ତୁମ୍‌ନା ଆଜ ସେଇ ସମସ୍ତ କାରୁକାର୍ଯ୍ୟ ବାନାବାର ବୃଥା ଚେଷ୍ଟାଥେକେ ନିଷ୍କୃତିପେୟେ ଆମି ବେଁଚେଗେଛି । ପରେଶବାବୁ କହିଲେନ୍ ସତ୍ୟକେ ଯଖନ ପାଇ ତଖନ୍ ସେ ତାର ସମସ୍ତ ଅଭାବ ଅପୂର୍ଣ୍ଣତା ନିୟେଓ ଆମାଦେର ଆତ୍ମାକେ ତୃପ୍ତ କରେ । ତାକେ ମିଥ୍ୟା ଉପକରନ୍ ଦିୟେ ସାଜିୟେ ତୋଲ୍‌ବାର ଇଚ୍ଛାମାତ୍ରଇ ହୟନା । ଗୋରା କହିଲେ ଦେଖୁନ୍ ପରେଶବାବୁ ! କାଲ ରାତ୍ରେ ଆମି ବିଧାତାର କାଛେ ପ୍ରାର୍ଥନା କରେଛିଲୁମ୍ ଯେ ଆଜ ପ୍ରାତଃକାଲେ ଆମି ଯେନ୍ ନୂତନ ଜୀବନ ଲାଭ କରି । ଏତଦିନ ଶିଶୁକାଲ ଥେକେ ଯେ କିଛୁ ମିଥ୍ୟା ଯେ କିଛୁ ଅଶୁଚିତା ଆବୃତ କରେଛିଲ ଆଜ ଯେନ ତା ନିଃଶେଷ କ୍ଷୟ ହୟେ ଗିୟେ ଆମି ନବଜନ୍ମ ଲାଭ କରି । ଆମି ଠିକ୍ ଯେ କଳ୍ପନାର ସାମଗ୍ରୀଟି ପ୍ରାର୍ଥନା କରେଛିଲୁମ୍ ଈଶ୍ୱର ସେ ପ୍ରାର୍ଥନାୟ କର୍ଣ୍ଣପାତ୍ କରେନ୍‌ନି । ତିନି ତାଁର ନିଜେର ସତ୍ୟ ହଠାତ୍ ଏକେବାରେ ଆମାର ହାତେ ଏନେଦିୟେ ଆମାକେ ଚମକିୟେ ଦିୟେଛେନ୍ । ତିନି ଯେ ଏମନ କରେ ଆମାର ଅଶୁଚିତାକେ ଏକେବାରେ ସମୂଲେ ଘୁରିୟେ ଦେବେନ ତା ଆମି ସ୍ୱପ୍ନେଓ ଜାନତୁମ୍‌ନା । ଆଜ ଆମି ଏମନ୍ ଶୁଚି ହୟେ ଉଠେଛି ଯେ ଚଣ୍ଡାଲେର ଘରେଓ ଆମାର ଆର ଅପବିତ୍ରତାର ଭୟ ରହିଲନା । ପରେଶବାବୁ ! ଆଜ ପ୍ରାତଃକାଲେ ସମ୍ପୂର୍ଣ୍ଣ ଅନାବୃତ ଚିତ୍ତଖାନି ନିଏ ଏକେବାରେ ଆମି ଭାରତବର୍ଷେର କୋଲେର ଉପରେ ଭୂମିଷ୍ଠ ହୟେଛି । ମାତୃ କ୍ରୋଡ଼ ଯେ କାକେ ବଲେ ଏତଦିନ ପରେ ତାର ଆମି ପରିପୂର୍ଣ୍ଣ ଉପଲବ୍ଧି କରତେ ପେରେଛି । ପରେଶବାବୁ କହିଲେନ୍— 'ଗୌର ! ତୋମାର ମାତୃକ୍ରୋଡ଼େ ତୁମି ଯେ ଅଧିକାର ପେୟେଛ ସେଇ ଅଧିକାରେର ମଧ୍ୟେ ତୁମି ଆମାଦେରଓ ଆହ୍ୱାନ କରେ ନିୟେଯାଓ ।' ଗୋରା କହିଲେ 'ଆଜ ମୁକ୍ତି ଲାଭକରେ ପ୍ରଥମେଇ ଆପନାର କାଛେ କେନ ଏସେଛି ଯାନେନ୍' ? ପରେଶ କହିଲେନ୍ 'କେନ ?' ଗୌର କହିଲେ, ଆପନାର କାଛେଇ ଏଇ ମୁକ୍ତିର ମନ୍ତ୍ର ଆଛେ । ସେଇ ଜନ୍ୟେଇ ଆପନି ଆଜ କୋନୋ ସମାଜେଇ ସ୍ଥାନ ପାନ୍‌ନି । ଆମାକେ ଆପନାର ଶିଷ୍ୟ କରୁନ୍ । ଆପନି

ଆମାକେ ଆଜ ସେଇ ଦେବତାର ମନ୍ତ୍ର ଦିନ୍, ଯିନି ହିନ୍ଦୁ ମୁସଲମାନ୍ ଖ୍ରୀଷ୍ଟାନ୍ ବ୍ରାହ୍ମ ସକଲେରଇ । ଯାଁର ମନ୍ଦିରେର ଦ୍ୱାର କୋନୋ ଜାତିର କାଛେ କୋନୋ ବ୍ୟକ୍ତିର କାଛେ କୋନଦିନ ଅବରୁଦ୍ଧ ହୟନା, ଯିନି କେବଲଇ ହିନ୍ଦୁର ଦେବତା ନନ୍—ଯିନି ଭାରତବର୍ଷେର ଦେବତା ।

ଗୋରା ଭିତରେ ରବୀନ୍ଦ୍ରନାଥଙ୍କର ଭାରତବର୍ଷର ଧର୍ମର ଆଦର୍ଶ ଏବଂ ଭାରତବର୍ଷର ସେବକର ଯଥାର୍ଥ ଆଦର୍ଶ ଲିଖିତ ରହିଛି । ଧର୍ମ ଯେଉଁଠି କେବଳ ଶୁଚିତା ଆଚାର ନିୟମ ପ୍ରଣାଳୀର ଜାଲ ଭିତରେ ଆବଦ୍ଧ, ସେଠାରେ ଭାରତୀୟ ହେବାର ଯଥାର୍ଥ ଆତ୍ମ ସାଧନା ବ୍ୟର୍ଥ ହୁଏ, ଏବଂ ତାହାରି ପାଇଁ ଭାରତୀୟ ବ୍ୟକ୍ତି ସମସ୍ତ ଭାରତର ଆତ୍ମା ସହିତ ଆନ୍ତରିକ ମିଳିତ ହୋଇ ନ ପାରି ସହଜ ସେବାକରିବାର ପ୍ରବୃତ୍ତି ହରାଇ ବସେ । ସେଥିପାଇଁ କବିଙ୍କର ଲୋକସେବାର ଅଧିକାର କେବଳ ସେଇମାନଙ୍କର; ଯେଉଁମାନେ ସମ୍ପ୍ରଦାୟ ଓ ବିଭିନ୍ନ ଧର୍ମ ଓ ତାର ପ୍ରଣାଳୀମାନଙ୍କର ସମନ୍ୱୟ ନିଜର ବାସ୍ତବ ଜୀବନରେ କରି ପାରନ୍ତି । ଭେଦ ଭିତରେ ସର୍ବମାନବର ସମସ୍ତ ଭାରତବର୍ଷୀୟ ଆତ୍ମାର ଉପଲବ୍ଧି ସମ୍ଭବପର ନୁହେଁ । ସେହି କାରଣରୁ ଗୋରା ଯେତେବେଳେ ନିଜର ଜନ୍ମ ଇତିହାସ ଏବଂ ଜାତି ସମ୍ବନ୍ଧରେ ଚୈତନ୍ୟ ଲାଭ କଲା, ସେତେବେଳେ ତାର ମନରେ ସଂସ୍କାର ଜାତ ଯୁଗଯୁଗର ଭେଦଜନିତ ସଂସ୍କାର ଶୃଙ୍ଖଳ ଛିନ୍ନ ହୋଇଗଲା— ଓ ତାର ସେବାକ୍ଷେତ୍ର ସମସ୍ତ ଭାରତବର୍ଷକୁ ସେ ଉପଲବ୍ଧି କରି ପାରିଲା ପୁଣି ନିଜେ ଭାରତବର୍ଷର ସେବକ ହେବାର ଯୋଗ୍ୟତା ଅର୍ଜନ କରିପାରିଲା । ତା' ପୂର୍ବରୁ ହିନ୍ଦୁସଂସ୍କାର ଭିତରେ ଥାଇ ନିତ୍ୟ ଦ୍ୱନ୍ଦ ଭିତରେ ତାହା ହୋଇ ପାରୁ ନ ଥିଲା । ଏହି ହେଉଛି ରବୀନ୍ଦ୍ର ଆଦର୍ଶର ଗୋଟିଏ ବିଶେଷ ରୂପକ ।

ରବୀନ୍ଦ୍ରନାଥଙ୍କର ଆହୁରି ଏକ ଶ୍ରେଷ୍ଠ ଉପନ୍ୟାସର ନାମ "ଘରେ ବାଇରେ" । ତାହା ମୁଁ ୨୦/୨୧ ବର୍ଷ ତଳେ ପାଠ କରିଥିଲି ତାହାରି ସ୍ଥୂଳ ପରିଚୟ ନିମ୍ନରେ ଦେଉଛି । ସେ ବହିରେ ସେ ହିନ୍ଦୁ-ସମାଜର ବିବାହିତା ନାରୀକୁ ନିଜର ଅଦ୍ଭୁତ କଳ୍ପନା ବଳରେ ଓ ଅନୁପମ ଯୁକ୍ତି ଓ ତୀକ୍ଷ୍ଣ ମେଧା ବଳରେ ଗୋଟିଏ ବିଶେଷ (idea) ବା ଆଦର୍ଶର ରୂପକରୂପେ ପ୍ରତିଷ୍ଠିତ କରିଛନ୍ତି । ଦିନେ ସେହି ବହି ବଙ୍ଗର ପୁରାତନପନ୍ଥୀ ସାହିତ୍ୟିକମାନଙ୍କ ଦ୍ୱାରା ତୀବ୍ର ଭାବରେ ସମାଲୋଚିତ ହୋଇଥିଲା । ହିନ୍ଦୁ ସମାଜର ଚିରନ୍ତନ ରୀତି ଓ ପଦ୍ଧତି ତଥା ପ୍ରଥା ବିରୁଦ୍ଧରେ କବି ତାଙ୍କର ଅସାମାନ୍ୟ ପ୍ରତିଭା ବଳରେ ଲିପିଚିତ୍ର କରିଛନ୍ତି । ତାହା ଦ୍ୱାରା ହିନ୍ଦୁ ସମାଜର କି ଉପକାର ହେଲା, ତାହା ସମାଜତତ୍ତ୍ୱବିଦ୍ କହିବେ, କିନ୍ତୁ କବି ଯେ ସାମାଜିକ ପ୍ରାଚୀନ ଆଭିଜାତ୍ୟର ଗାରିମା ଭାଙ୍ଗିଦେଇ ତାହାକୁ ଘାତସହ କରି ଦେଇଛନ୍ତି ତାହା ଏ ଯୁଗର ଚକ୍ଷୁଷ୍ମାନ୍ ଲୋକେ ଅବଶ୍ୟ ସ୍ୱୀକାର କରିବେ ।

ଉପନ୍ୟାସର ନାୟକ ନିଖିଳେଶ୍ । କବିଙ୍କର କଳ୍ପନାଲୋକର ଆଦର୍ଶ ହିନ୍ଦୁ ସ୍ୱାମୀ । ସେ ଉଚ୍ଚ ଶିକ୍ଷିତ ବୁନିୟାଦି ବଂଶର, ସମାଜର ଅଭିଯାତ ଶ୍ରେଣୀର ବ୍ୟକ୍ତି । ସ୍ୱାମୀର ଆଦର୍ଶ ସମ୍ବନ୍ଧରେ ତାଙ୍କର ସଚେତନ ଭାବର ତୁଳନା ସାଧାରଣ ସ୍ୱାମୀମାନଙ୍କ ସହିତ କରିହୁଏନା । ନିଜର ପତ୍ନୀ ବିମଳାର ରୂପ ଗୁଣ ତୁଳନାରେ ନିଜକୁ କ୍ଷୁଦ୍ର ବୋଲି ତାଙ୍କର ଧାରଣା ଜନ୍ମିବାର ଆଦୌ କାରଣ ନ ଥିଲେହେଁ ପାରିପାର୍ଶ୍ୱିକ ଅଭିଯାତପୁଷ୍ଟ ମନକୁ ସେ ସମ୍ପୂର୍ଣ୍ଣ ରୂପରେ ଭୁଲି ଯାଇଥିଲେ । ବିମଳାଙ୍କର ଏକାନ୍ତ ନିଷ୍ଠାପର ପତିଭକ୍ତି ଓ ବାଲ୍ୟକାଳରୁ ପିତୃ ଗୃହରୁ ଶିକ୍ଷା ପାଇଥିବା ଶୁଣି ଆସିଥିବା ସଂସ୍କାରଜାତ ଧରାବନ୍ଧା କର୍ତ୍ତବ୍ୟ ବୁଦ୍ଧି ତାଙ୍କୁ ଏକଟଣା ପ୍ରାଚୀନ ସ୍ୱରର ତିକ୍ତତାରେ ମଧ ମୋହ ସୃଷ୍ଟି କରି ଅଭିଭୂତ କରି ପକାଇଥିଲା । ବିମଳାଙ୍କର ସେବା, ଆଜ୍ଞାନୁବର୍ତ୍ତିତା ଅବଗୁଣ୍ଠନ-ମୋହ ଅନ୍ତଃପୁର-ପ୍ରୀତି ନିଖିଳେଶ ମନରେ ତାଙ୍କର ଆଦର୍ଶଜାତ ପୌରୁଷ ଉପରେ ତୀବ୍ର କଷାଘାତ କରୁଥିଲା । ସେହି ଆଘାତ ସେହି ଧକ୍କା ତାଙ୍କୁ ତାଙ୍କ ନିଜ ନିକଟରେ ମଧ ତୁଚ୍ଛ ଭଳି ଦେଖାଇ ଦେଉଥିଲା ଯେତିକି, ଅନ୍ତରରେ ଆତ୍ମସମ୍ମାନ ବୋଧର ତୀବ୍ରତା ବଢୁଥିଲା ସେତିକି । ବରାବର ସ୍ୱାମୀପଦରେ ଥାଇ ସେ ମନକୁ ପଚାରୁଥିଲେ ଯେ ପୂଜା, ଯେ ଆତ୍ମସମର୍ପଣ ଓ ପ୍ରୀତିର ଅମଳିନ ଅର୍ଘ୍ୟ ପତ୍ନୀଠାରୁ ସେ ପ୍ରତି ନିୟତ ପାଉଛନ୍ତି ତାହା ପାଇବାର ବା ଭୋଗ କରିବାର ଯଥାର୍ଥ ଅଧିକାର ତାଙ୍କର ନାହିଁ । ହିନ୍ଦୁ ସମାଜର ଆଚାର ଓ ପ୍ରାଚୀନ ପୋଥି ପୁରୁଣା ସଂହିତା ତାଙ୍କର ମାଆଙ୍କର ଆଦର୍ଶ ତଳେ ବାଲ୍ୟକାଳରୁ ଗଠିତ ହୋଇଥିବା ବିମଳା ଯାହା କରୁଛି, ଯାହା ଭାବୁଛି ଏବଂ ଯେପରି ତାର କର୍ତ୍ତବ୍ୟ ବୁଦ୍ଧିକୁ ନିୟନ୍ତ୍ରଣ କରୁଛି ତାହା ଗୋଟେ ଅର୍ଥହୀନ ସଂସ୍କାର । ଏହି ସଂସ୍କାର ତାଙ୍କର ଜୀବନକୁ ଅନନ୍ତର ସହଜ ବୁଦ୍ଧିକୁ ଆଚ୍ଛନ୍ନ କରିଥିବାରୁ ତାଙ୍କର ଆତ୍ମ ପରିଚୟ ଘଟିବାର ସୁଯୋଗ ନ ଥିଲା । ନିଜର ଆଶା, କଳ୍ପନା ନିଜେ କଣ ଚାହାଁନ୍ତି ଓ ନିଜେ କି ଧାତୁରେ ଗଠିତ ତାହାର ଗଣିତ ପରିମାପ ସମ୍ବନ୍ଧରେ ତାଙ୍କୁ ଅଜଣା । ସେ ଶିଖିଥିବା କଥା, ଦେଖିଥିବା ସେବା, ପଢ଼ିଥିବା ଆଦର୍ଶର ଅନ୍ଧ ଅନୁସରଣ ତଥା ଅନୁକରଣ କରି ଚାଲିଛନ୍ତି । ଦୈବଯୋଗରୁ ଯେଉଁ ଅପରିଚିତ ପୁରୁଷ ସହିତ ଚିରାଚରିତ ପଦ୍ଧତି ଓ ରୀତି ଅନୁସାରେ ତାଙ୍କର ମିଳନ ଘଟାଇଛି, ସେହି ସ୍ୱାମୀ ନାମକ ଗୋଟିଏ ବିଶିଷ୍ଟ ଧାରଣା ପଦତଳରେ ଅନ୍ଧଭାବରେ ନିଜର୍ ଅନ୍ତରର ନୈବେଦ୍ୟ ଅର୍ପଣ କରୁଛନ୍ତି । ନିଜେ ସେ ଜାଣନ୍ତି ନାହିଁ କାହାର ପୂଜାରିଣୀ ସେ !

ସ୍ୱାମୀ ନିଖିଳେଶଙ୍କ ମନ ବିଦ୍ରୋହୀ ହୋଇଉଠେ ସ୍ତ୍ରୀଙ୍କ ଅନ୍ଧ ଉପଚାରର ସମାରୋହରେ । ସ୍ତୂପୀକୃତ ମିଥ୍ୟା, ସଂସ୍କାର ସଂଜାତ ଆବର୍ଜନାରେ ବେଷ୍ଟିତ ହୋଇ ଅନ୍ତର ଅସହ୍ୟ ଆତ୍ମପ୍ରତାରଣାର ବେଦନାରେ ରକ୍ତମୋକ୍ଷଣ କରେ । ନିଖିଳେଶ ଚାହୁଁଥିଲେ ଜୟର ଗୌରବ, ନାରୀ ହୃଦୟର ସଂସ୍କାରମୁକ୍ତ ସହଜାତ ପ୍ରେମ– ଉତ୍ସାରିତ ଶ୍ରଦ୍ଧା, ନାରୀ ହୃଦୟ ଜୟ କରିବାର ପରମାନନ୍ଦ । ସତ୍ୟର କଷଟି ପଥରରେ କଷାହୋଇ ସାରିଥିବା ନିକଷ

ହେମନିଭ ପ୍ରେମର ସ୍ୱାଭାବିକ ଆତ୍ମସମର୍ପଣ ! ଛଳନା ନୁହଁ । ସେହି କାରଣରୁ ସେ ଚାହିଁଲେ ସ୍ତ୍ରୀ ସମସ୍ତ ପାରିବାରିକ ଆଭିଜାତ୍ୟର ବାଧା ଏଡ଼ି ଉଚ୍ଚଶିକ୍ଷିତା ହେବ ଓ ନିଜର ସ୍ୱାଧୀନ ବୁଦ୍ଧି ବୃତ୍ତି ଖଟେଇ ଆପଣାର ସୁନିର୍ଦ୍ଦିଷ୍ଟ ଜଗତକୁ ଆବିଷ୍କାର କରିବ । ପର୍ଦ୍ଦାର ଅନ୍ତରାଳରୁ ଅନ୍ତଃପୁର ସୀମାର ଅଭ୍ୟନ୍ତରରୁ ଦୁନିଆର ରାଜପଥରେ ଛିଡ଼ାହୋଇ ନିଜର ପଥ ଆବିଷ୍କାର କରିବ—ବାଛିବ । ଏହି କାରଣରୁ ନିଖିଳେଶ ନିଜ ବନ୍ଧୁ ସନ୍ଦୀପକୁ ଆଣି ବିମଳାଙ୍କ ସହ ପରିଚୟ କରିଦେଲେ । ବିମଳା ପତିବ୍ରତ ଧର୍ମ ପାଳନ କରି ପତି ଆଦେଶାନୁଯାୟୀ ଆଧୁନିକ ସମାଜର ନବଭାବ, ନବଶିକ୍ଷା ଓ ରୀତିନୀତିର ଅନୁଶୀଳନ କରିବାରେ ପ୍ରବୃତ୍ତ ହେଲେ । ସନ୍ଦୀପର ଆବିର୍ଭାବ ଓ ସଙ୍ଗ କ୍ରମେ କ୍ରମେ ତାଙ୍କର ଅତୀତ ଜୀବନର ନାନାବିଧ ଶୃଙ୍ଖଳ ଓ ସଂସ୍କାରକୁ ଗୋଟି ଗୋଟି କରି ଦଗ୍ଧ କରିବାକୁ ଲାଗିଲା— ସବୁ ଭାଙ୍ଗିଗଲା । ସନ୍ଦୀପର ଆଳାପ, ଅଭିନୟ, ସୁଶ୍ରୀ ଦୀପକ ମୂର୍ତ୍ତି ତାଙ୍କ ମନରେ ନିତ୍ୟ ନୂତନ ମୋହଜାଲ ଊର୍ଣ୍ଣନାଭ ତନ୍ତୁଭଳି ରଚନା କରି କରି ଚାଲିଲା— ବିମଳା ସେହି ଜାଲରେ ହେଲେ ବନ୍ଦୀ ।— ନିଖିଳେଶ ଏହି ପରିବର୍ତ୍ତନର ସ୍ରଷ୍ଟା । ସେହି କାରଣରୁ ନିର୍ଭୀକହୃଦୟ ନିର୍ବିକାରଚିତ୍ତରେ ସେ ପତ୍ନୀଙ୍କର ଏ ପରିବର୍ତ୍ତନ ଲକ୍ଷ୍ୟକରି ଆଶ୍ୱାସନା ପାଉଥିଲେ ଓ ନିଜକୁ ସମ୍ମାନିତ ପୁରୁଷ ବୋଲି ଉପଲବ୍ଧି କରୁଥିଲେ । କ୍ରମେ ସନ୍ଦୀପର ଅନୁରାଗ ବିମଳା ଜୀବନରେ କୁହୁକବଂଶୀ ବଜାଇଲା । ବିମଳା ନିଜର ଅତୀତ ବର୍ତ୍ତମାନ ଓ ଭବିଷ୍ୟଦ୍ ପାଶୋରି ଦେଲେ— ସେହି ସ୍ୱର ଲହରୀର ମୁଗ୍ଧା ଶ୍ରୋତ୍ରୀ ହୋଇ । ପ୍ରଣୟୀର କାମନାର ବସ୍ତୁ ହେଲେ ବିମଳା ।

ଶେଷରେ ସନ୍ଦୀପର ସ୍ଖଳନ ଓ ସ୍ୱାଭାବିକ ଚାରିତ୍ରିକ ଦୁର୍ବଳତା ବିମଳା ଆଗରେ ପ୍ରତିଭାତ ହେଲା । ଦିନେ ବିମଳା ଆତ୍ମସ୍ଥ ହେଲେ । ଅପାତ୍ରରେ ପୂଜା ଅର୍ଚ୍ଚନା କରିବାର ଆତ୍ମଗ୍ଲାନିରେ ଅସ୍ଥିର ହୋଇ ଅନୁତାପରେ ଦଗ୍ଧ ହୋଇଉଠିଲେ । ନିଜର ଭ୍ରମ ଉପଲବ୍ଧି କଲେ ।— ଦେଖିଲେ ବିଶ୍ୱର ବିସ୍ତୃତ ରାଜପଥରେ ପରିଚିତ ଅପରିଚିତ ପଥିକ ସ୍ରୋତରେ ହରାଥିବା ଯୋଗସୂତ୍ର ଛିନ୍ନ ନିଖିଳେଶ ଭିତରେ ନିଜର ଯଥାର୍ଥ ଅନ୍ତର ଦେବତା ତାଙ୍କର ଛପି ରହିଅଛି । ସେହି ମୁହୂର୍ତ୍ତରେ ନିଖିଳେଶଙ୍କ ସ୍ୱାମୀତ୍ୱର ପୌରୁଷ ସାର୍ଥକ ହେଲା । ବିଜୟର ଗୌରବଗର୍ବରେ ଶତସହସ୍ର ପଥିକ ସଭାରେ ନିଖିଳେଶ ସ୍ୱୟମ୍ବରା ପତ୍ନୀର ସ୍ୱେଚ୍ଛାକୃତ ବରଣମାଳା ଗ୍ରହଣ କଲେ । ସତ୍ୟ ଓ ଯଥାର୍ଥ ପତି-ପତ୍ନୀର ଅଧିକାର ପରସ୍ପର ଉପରେ ସେହି ଦିନ ପ୍ରତିଷ୍ଠିତ ହେଲା— ଆତ୍ମପରୀକ୍ଷାର ଅଗ୍ନିମୟ କଷଟିରେ ପରଖା ହୋଇ ନିଖିଳେଶ ପାଇଲେ ତାଙ୍କର ପରମ ବାଞ୍ଛିତାଙ୍କୁ— ବିମଳା ପାଇଲେ ପରମ ବାଞ୍ଛିତଙ୍କୁ !

ଏହି ହେଲା ଉପନ୍ୟାସର କଥାବସ୍ତୁ । ବଙ୍ଗର ପ୍ରସିଦ୍ଧ ଔପନ୍ୟାସିକମାନଙ୍କ ମତରେ ସାହିତ୍ୟ କ୍ଷେତ୍ରରେ ରବୀନ୍ଦ୍ରଙ୍କର ଏ ଅବଦାନର ତୁଳନା ନାହିଁ । ଏପରି ଗ୍ରନ୍ଥ ତାଙ୍କ ପୂର୍ବେ ଓ ପରେ କେହି ରଚନା କରି ନାହାଁନ୍ତି । କବିଙ୍କ ବର୍ଣ୍ଣନା ଓ ସାହସିକ ଚିନ୍ତା ସୁନ୍ଦର— ଉପମାହୀନ ।—

"ଚାର ଅଧ୍ୟାୟ" କବିଙ୍କର ପରିଣତ ବୟସର ରଚନା । ବଙ୍ଗଳାର ସ୍ୱଦେଶୀ ଯୁଗ ବିତିଗଲା ପରେ ଯେଉଁ ଦେଶବ୍ୟାପୀ ଅସହଯୋଗ ସନ୍ତ୍ରାସବାଦୀ ପ୍ରଭୃତି ଆନ୍ଦୋଳନର ବାତ୍ୟା ଉଚ୍ଛଳିତ ହୋଇ ଜନଚିତ୍ତରେ ପ୍ରବାହିତ ହୋଇଥିଲା, ତହିଁରେ ବଙ୍ଗର କେତେକ ଶିକ୍ଷିତା ତରୁଣୀ ଯୋଗ ଦେଇଥିଲେ । ସେମାନଙ୍କ ଜୀବନ ପରିଣତିରେ ଯେ ଅସ୍ୱାଭାବିକତା କବିଚିତ୍ତ ପୀଡ଼ିତ କରିଥିଲା, ତାହାହିଁ ପୁସ୍ତକର ମୂଳ କଥା ।– ଉପନ୍ୟାସର ନାୟିକା ଏଲା ସନ୍ତ୍ରାସବାଦୀ ଦଳର ନେତ୍ରୀ । ଏମ୍.ଏ, ପାଶ୍ କରିସାରି କୃଚ୍ଛ, ସାଧନା, ତ୍ୟାଗ ଓ ସେବାବ୍ରତରେ ଆତ୍ମବଳୀ ଦେବାର ଗୁରୁତର ସଂକଳ୍ପ ଘେନି ତାର ଜୀବନର ଅଭିଯାନ ପର୍ବର ଆରମ୍ଭ । ସେଥିପାଇଁ ସେ ଚିରକୁମାରୀ ରହିବାର ସାହସିକ ବ୍ରତ ଗ୍ରହଣ କଲା । କିନ୍ତୁ ଚିତ୍ତର ଅସୀମ ଦ୍ୱନ୍ଦର ଘୂର୍ଣ୍ଣିବାୟୁ ତାର ବ୍ରତ ଚୂର୍ଣ୍ଣ କରିଦେଲା । ନାରୀ ଚିତ୍ତର ସ୍ୱାଭାବିକ ପ୍ରବୃତ୍ତିର ପ୍ରେରଣାରେ ସେ ଅତୀନ୍ଦ୍ର ନିକଟରେ ଆତ୍ମ ଅର୍ପଣ କଲା । ଅତୀନ୍ଦ୍ର ଏଲାର ଅଗ୍ନିମୟ ପ୍ରେରଣାରେ ପ୍ରଭାବିତ ହୋଇ ସନ୍ତ୍ରାସବାଦୀ ଦେଶସେବୀ ଡକାୟତ ଦଳର ନେତୃତ୍ୱ କରି ଗିରଫ ହେଲା । ଏଲା ନିଜର ନାରୀ ସ୍ୱଭାବର ବିକୃତି ଘଟାଇ ଶେଷରେ ବ୍ୟର୍ଥ ହୋଇଗଲା ଏବଂ ଅତୀନ୍ଦ୍ର ଜୀବନକୁ ବ୍ୟର୍ଥ କରିଦେଲା । ପଥଭ୍ରଷ୍ଟ ଜୀବନର ଗ୍ଲାନି କି ମର୍ମନ୍ତୁଦ କବି ତାହାରି ବର୍ଣ୍ଣନା କୁଶଳ ହସ୍ତରେ ପଟୁ ଲେଖନୀରେ ବର୍ଣ୍ଣିଛନ୍ତି । ତାଙ୍କର କହିବାର କଥା ହେଉଛି, ସାଧାରଣ ନାରୀଧର୍ମ ହେଉଛି ପ୍ରେମ । ପ୍ରେମ, ସେବା, ତ୍ୟାଗର ପୂର୍ଣ୍ଣ ପ୍ରକାଶ ପାଇଁ ଗୃହସ୍ଥଳୀର ଓ ସମାଜର ସୌନ୍ଦର୍ଯ୍ୟ ବିଧାନ କରାହିଁ ତାହାର ଧେୟହେବା ଉଚିତ । ଯେଉଁ ଅପରିଣତ ବୟସ୍କ ତରୁଣୀ ବା ତରୁଣ ସଂସାରର ବାସ୍ତବତା ଓ ମାନବ ପ୍ରକୃତିର କଠୋର ପରୀକ୍ଷାମାନଙ୍କରେ ଉତ୍ତୀର୍ଣ୍ଣ ହେବା ପୂର୍ବରୁ ଶସ୍ତା ଯଶ ତୃଷ୍ଣାରେ ତାଡ଼ିତ ଓ ମୋହାକ୍ରାନ୍ତ ହୋଇ ଆତ୍ମ ପରିଚୟ ପାଇବା ପୂର୍ବରୁ ନାନା ଅପରିଚିତ ଓ ଅସ୍ୱାଭାବିକ ପଥକୁ ବରଣ କରନ୍ତି, ଅନୁସରଣ କରନ୍ତି ସେହିମାନଙ୍କ ଜୀବନରେ ଦୁର୍ବିପାକ, ମିଥ୍ୟା, ଛଳନା ଓ ଧ୍ୱଂସର ସୀମାହୀନ ପ୍ରାନ୍ତର ସୃଷ୍ଟିହୋଇ ମାସ୍ତୁଲହୀନ ପୋତ ଭଳି ଏହି ଅନୁକୃତି ଚାଳିତ ଜୀବଗୁଡ଼ିକୁ ନେଇ ଅପଥରେ ଧ୍ୱଂସ କରିଦିଏ । ଏଥିପାଇଁ ସେ ସତର୍କ କରି ଦେଇଛନ୍ତି । ଏହି ପୁସ୍ତକଟି ସମସ୍ୟାକ୍ରାନ୍ତ ବୋଲି କବିଙ୍କର ସ୍ୱଭାବସିଦ୍ଧ ପାରିପାଟ୍ୟ ଉପନ୍ୟାସର ପରିଣତିସୌଷ୍ଠବ ଦାନ କରି ପାରିନାହିଁ ।

× × × × ×

ଦୁଇବୋନ୍, ମାଲଞ୍ଚ, ବୌଠାକୁରାଣୀର ହାଟ, ତିନିପୁରୁଷ, ଚୋଖେରବାଲି, ଚତୁରଙ୍ଗ ଶେଷେର କବିତା ପ୍ରଭୃତି ଉପନ୍ୟାସ କବିଙ୍କ ତୁଙ୍ଗଚିନ୍ତା ଓ ଆଦର୍ଶ ରଚନା ଶୈଳୀ ପ୍ରସୂତ । ଏଥିମଧ୍ୟରୁ "ଶେଷେର କବିତା" କବିଙ୍କର ଖଣ୍ଡେ ଗଦ୍ୟମୟ କାବ୍ୟ ଭଳି ପ୍ରତୀତ ହୁଏ । ତହିଁରେ ନାୟକ ନାୟିକାଙ୍କର ରୋମାନ୍ସର ପରିଣତି ଓ ତାର ବିକାଶତତ୍ତ୍ୱ କବିଙ୍କର

କଳ୍ପନାମୟ ମସ୍ତିଷ୍କର ଅପୂର୍ବ ସୃଷ୍ଟି । ପୁସ୍ତକର ପ୍ରତିପାଦ୍ୟ ବିଷୟ ବାସ୍ତବତା ସାଥିରେ ପୂର୍ଣ୍ଣଭାବରେ ମିଳୁ ନ ଥିଲେ ସୁଦ୍ଧା ବାସ୍ତବତାର ଧାର ଦେଇ ଦେଇ ତାଙ୍କର ସୃଷ୍ଟି ଅପରୂପ କଳାକୁଶଳତାରେ ଫୁଟି ଉଠିଛି । ପାଠକ ପାଠିକାଙ୍କୁ ଏହି ପୁସ୍ତକ ଯଥେଷ୍ଟ କୌତୁକମୟ ଆନନ୍ଦର ଫଲ୍‌ଗୁ ଦିଏ । ଅବିବାହିତ ତରୁଣ ତରୁଣୀ ଯେଉଁଠି ପ୍ରଥମ ପ୍ରଣୟର ମୋହମୟ ନୂତନତା ବା ରୋମାନ୍ସ ଶେଷ କରିଛନ୍ତି, ସେଠାରେ ''ଶେଷେର କବିତା'' ଉପନ୍ୟାସର ନାୟକ ଅମିତ କହୁଛି ।—

''ଅକ୍‌ସିଜେନ୍ ଏକଭାବେ ବୟ ହାଓୟାୟ, ଅଦୃଶ୍ୟ ଥେକେ, ସେ ନାହଲେ ପ୍ରାନ୍, ବାଁଞ୍ଚେନା, ଆବାର ଅକ୍‌ସିଜେନ୍ ଆରେକଭାବେ କୟଲାର ସଙ୍ଗେ ଜ୍ୱଲ୍‌ତେ ଥାକେ । ସେଇ ଆଗୁନ୍ ଜୀବନେର ନାନାକାଜେ ଦରକାର । ଦୁଟୋର କୋନୋଟାକେଇ ବାଦ୍ ଦେଓୟା ଚଲେନା । ଏଖନ ବୁଝତେ ପେରେଛ ? ଯତୀବଲ୍ଲେ ସଂପୂର୍ଣ୍ଣନା, ତବେ କିନା ବୁଝବାର ଇଚ୍ଛା ଆଛେ ।

''ଯେ ଭାଲୋବାସା ବ୍ୟାପ୍ତଭାବେ ଆକାଶେ ମୁକ୍ତ ଥାକେ ଅନ୍ତରେର ମଧ୍ୟେ ସେ ଦେୟ ସଙ୍ଗ । ଯେ ଭାଲୋବାସା ବିଶେଷଭାବେ ପ୍ରତିଦିନେର ସବ କିଛୁତେ ଯୁକ୍ତ ହୟେ ଥାକେ ସଂସାରେ ସେ ଦେୟ ଆସଙ୍ଗ । ଦୁଟୋଇ ଆମି ଚାଇ, ଯତୀବଲେ ତୋମାର କଥା ଠିକ୍ ବୁଝତେ ପାରିନେ, ଆର ଏକଟୁ ସ୍ପଷ୍ଟ କରେ ବଲୋ ଅମିତଦା ।

''ଅମିତ ବଲେ— ଏକଦିନ ଆମାର ସମସ୍ତ ଡାନା ମେଲେ ପେୟେଛିଲୁମ ଆମାର ଓପର ଆକାଶ । ଆଜ ଆମି ପେୟେଛି ଆମାର ଛୋଟବାସା, ଡାନା ଗୁଟିଏ ବସେଚି । କିନ୍ତୁ ଆମାର ଆକାଶ ଓ ରଇଲୋ । ଯତୀବଲେ କିନ୍ତୁ ବିବାହେ ତୋମାର ଏଇ ସଙ୍ଗ ଆସଙ୍ଗକି ଏକତ୍ରେଇ ମିଲତେ ପାରେନା ?

''ଅମିତ ବଲେ ଜୀବନେ ଅନେକ ସୁଯୋଗ ଘଟତେ ପାରେ କିନ୍ତୁ ଘଟେନା । ଯେ ମାନୁଷ ଅର୍ଦ୍ଧେକ ରାଜତ୍ୱ ଓ ରାଜକନ୍ୟା ଏକସଙ୍ଗେ ମିଲିୟେ ପାୟ ତାର ଭାଗ୍ୟ ଭାଲୋ । ଯେ ତା ନା ପାୟ ଦୈବକ୍ରମେ ତାର ଯଦି ଡାନଦିକ୍ ଥେକେ ମେଲେ ରାଜତ୍ୱ ଆର ବାଁ ଦିକଥେକେ ମେଲେ ରାଜକନ୍ୟା ସେଓ ବଡ଼ କମ୍ ସୌଭାଗ୍ୟ ନୟ ।

ଯତୀ ବଲେ କିନ୍ତୁ ........

''ଅମିତ ବଲେ କିନ୍ତୁ ତୁମି ଯାକେ ମନେକରୋ romance ସେଇଟେତେ କମ୍‌ତି ପଡ଼େ ! ଏକଟୁଓନା । ଗଲ୍ପେର ବଇଥେକେଇ ରୋମାନ୍‌ସଏର ବାଁଧା ବରାଦ ଛାଁଚେ ଢାଲାଇ କରେ ଯୋଗାତେ ହବେ ନାକି ? କିଛୁତେଇ ନା । ଆମାର ରୋମାନ୍‌ସ ଆମି ସୃଷ୍ଟି କରିବ । ଆମାର ସ୍ୱର୍ଗେଓ ରୟେଗେଲ ରୋମାନ୍‌ସ, ଆମାର ମର୍ତ୍ତ୍ୟେ ଓ ଘଟାବେ ରୋମାନ୍‌ସ । ଯାରା ଓର ଏକଟା ବାଁଚାତେ ଗିୟେ ଆର ଏକଟାକେ ଦେଉଲେ କରେ ଦେୟ

ତାଦେରଇ ତୋମରା ବଲ ରୋମାନ୍‌ଟିକ୍ । ତାରା ହୟ ମାଛେର ମତୋ ଜଲେ ସାଁତାର ଦେୟ, ନୟ ବେଡ଼ାଲେର ମତୋ ଡାଙ୍ଗାୟ ବେଡ଼ାୟ, ନୟ ବାଦୁଡ଼େର ମତୋ ଆକାଶେ ଫେରେ । ଆମି ରୋମାନ୍ସର ପରମହଂସ । ଭାଲୋବାସାର ସତ୍ୟକେ ଆମି ଏକଇ ଶକ୍ତିତେ ଜଲେ ସ୍ଥଲେ ଉପଲବ୍ଧି କରବୋ ଆବାର ଆକାଶେଓ । ନଦୀର ଚରେ ରଇଲୋ ଆମାର ପାକାଦଖଲ । ଆବାର ମାନସେର ଦିକେ ଯଖନ ଯାତ୍ରା କରବୋ ସେଟା ହବେ ଆକାଶେର ଫାଁକା ରାସ୍ତାୟ । କେତକୀର ସଙ୍ଗେ ସମ୍ବନ୍ଧ ଭାଲୋ ବାସାରଇ, କିନ୍ତୁ ସେ ଜଳ ଘଡ଼ାୟ ତୋଲାଜଲ, ପ୍ରତିଦିନ ତୁଲିବ ପ୍ରତିଦିନ ବ୍ୟବହାର କରବୋ, ଆର ଲାବନ୍ୟେର ଆମାର ଯେ ଭାଲୋବାସା ସେ ରଇଲ ଦୀଘି, ସେ ଘରେ ଆନ୍‌ବାର ନୟ– ଆମାର ମନ ତାତେ ସାଁତାର ଦେବେ ।''

ରବୀନ୍ଦ୍ରନାଥଙ୍କର କଳ୍ପଲୋକର ନାୟକ ଅମିତ ସାଧାରଣ ୧୦ ଜଣଙ୍କ ଭଳି ଗତବନ୍ଧା ପ୍ରଣୟୀ ନୁହେଁ, ସେ intellectual— ସେଥିପାଇଁ କବି ତାର ମୁହଁରେ କୁହାଇଛନ୍ତି –'ଦେଖୋ ଭାଇ' ସବୁକଥା ସକଲେର ନୟ । ଆମି ଯା ବଲଛି ସେ ଆମାରଇ କଥା । ସେଟାକେ ତୋମାର ବଲେଇ ବୁଝତେ ଗେଲେ ଭୁଲ କରେ ବୁଝବେ । ଆମାକେ ଗାଲଦିଏ ବସବେ । ଏକେର କଥାର ଉପର ଆରେକ ମାନେ ଚାପି ଏଇ ପୃଥିବୀତେ ମାରାମାରି ଖୁନୋଖୁନୀ ହୟ ।''

'ଶେଷେର କବିତା'ର ନାୟକ ଅମିତର ବନ୍ଧୁ ଯତୀଶଙ୍କର । ଅମିତର ଭାବପ୍ରବଣତା ଅଧିକ, ସେ ଶରୀରୀ ଏବଂ ଅଶରୀରୀ ଏକାଧାରେ । ଯତୀ କହିଲା ପ୍ରଣୟିନୀ ଓ ନିଶ୍ଚିତ ଭାବୀ ପତ୍ନୀ ମଧ୍ୟରୁ ଜଣକୁ ବାଛିନେବା ଉଚିତ । କାରଣ ପତ୍ନୀ ଶ୍ରୀମତୀ କେତକୀ ଯଦି ତମଙ୍କୁ ଅଶ୍ରଦ୍ଧା କରନ୍ତି ଓ ଅସନ୍ତୁଷ୍ଟା ହୁଅନ୍ତି ? ଅମିତ କହିଲା, ମୋର ପତ୍ନୀ ସବୁ ଜାଣନ୍ତି, ସମ୍ପୂର୍ଣ୍ଣ ବୁଝନ୍ତି କି ନା ଜାଣେନା । କିନ୍ତୁ ସମସ୍ତ ଜୀବନ ଦେଇ ମୁଁ ତାଙ୍କୁ ବୁଝାଇବି ଯେ କେଉଁଠି ତାଙ୍କୁ ବଞ୍ଚିତ କରୁନାହିଁ– ଠକୁନାହିଁ । ଏକଥା ମଧ୍ୟ ତାଙ୍କୁ ବୁଝିବାକୁ ହେବ ଯେ ସେ ମୋର ପ୍ରଣୟିନୀ ନିକଟରେ ଋଣୀ । ଯତି କହିଲା ତାହା ହେଉ, କିନ୍ତୁ ତମର ବିବାହ ଖବରତ ଲାବଣ୍ୟଙ୍କୁ ଜଣାଇବା ଉଚିତ ? ଅମିତ କହିଲା, ନିଶ୍ଚୟ ଜଣାଇବି; କିନ୍ତୁ ତା ଆଗରୁ ମୋର ଚିଠି ତମେ ପହୁଞ୍ଚାଇ ଦବ ? ଯତୀ ସମ୍ମତ ହେଲା ।

ଅମିତର ଚିଠି —

ସେଦିନ ସନ୍ଧ୍ୟାବେଳେ ରାସ୍ତାଶେଷରେ ଆସି ଯେତେବେଳେ ଛିଡ଼ା ହେଲି, କବିତା ଦେଇ ଯାତ୍ରା ଶେଷ କରିଛି । ଆଜି ମଧ୍ୟ ଆସି ବନ୍ଦହେଲି ଗୋଟିଏ ରାସ୍ତା ଶେଷରେ । ଏଇ ଶେଷ ମୁହୂର୍ତ୍ତ ଉପରେ ଗୋଟିଏ କବିତା ରଖିଯିବାକୁ ଚାହେଁ । ତମର କବି ଉପରେ ଭାରଦେଲି ମୋର ଶେଷକଥା ଜଣାଇବାକୁ ।

''ତବ ଅନ୍ତର୍ଦ୍ଧାନ ପଟେ ହେରି ତବ ରୂପ ଚିରନ୍ତନ
ଅନ୍ତରେ ଅଲକ୍ଷଲୋକେ ତୋମାର ଅନ୍ତିମ ଆଗମନ''
ଲଭିୟାଛି ଚିରସ୍ୱର୍ଶମନି
ଆମାର ଶୂନ୍ୟତା ତୁମ ପୂର୍ଣ୍ଣକରି ଗିୟେଛ ଆପନି ।
ଜୀବନ ଆନ୍ଧାର ହୋଲୋ ସେଇକ୍ଷନେ ପାଇନୁ ସନ୍ଧାନ
ସନ୍ଧ୍ୟାର ଦେଉଲ ଦୀପ ଚିତ୍ତେର ମନ୍ଦିରେ ତବ ଦାନ
ବିଚ୍ଛେଦେର ହୋମ ବହ୍ନି ହତେ
ପୂଜା ମୂର୍ତ୍ତି ଧରି ପ୍ରେମ ଦେଖାଦିଲ ଦୁଃଖେର ଆଲୋତେ । ''ମିତା''

ଅମିତର ବିବାହ କେତକୀ ସହିତ ସମାଧା ହେଲା । ୬ ମାସ ପରକଥା । ବନ୍ଧୁ ଯତୀଶଙ୍କର ଅମିତର ପୂର୍ବପ୍ରଣୟିନୀ ଲାବଣ୍ୟର ଚିଠିଆଣି ଅମିତକୁ ଦେଲା । ଚିଠିର ଏକପୃଷ୍ଠାରେ ଲାବଣ୍ୟର ଶୋଭନଲାଲ ସହିତ ବିବାହର ଖବର ଲେଖା । ବିବାହ ହେବ ଜ୍ୟେଷ୍ଠରେ ୬ ମାସ ପରେ । ରାମଗଡ଼ ପର୍ବତ ଶିଖରରେ— ଅନ୍ୟ ପୃଷ୍ଠାରେ କବିତା ଲେଖା ।

କାଲେର ଯାତ୍ରାର ଧ୍ୱନି ଶୁନିତେ କି ପାଓ, ତାରି ରଥ ନିତ୍ୟଇ ଉଧାଓ
ଜାଗାଇଛେ ଅନ୍ତରୀକ୍ଷେ ହୃଦୟ ସ୍ପନ୍ଦନ
ଚକ୍ରେ ପିଷ୍ଟ ଆନ୍ଧାରେର ବକ୍ଷଫାଟା ତାରାର କ୍ରନ୍ଦନ
ଓଗୋ ବନ୍ଧୁ ! ସେଇ ଧାବମାନ କାଲ
ଜଡ଼ାଏ ଧରିଲ ମୋରେ ଫେଲି ତାର ଜାଲ
ତୁଲେ ନିଲ ଦ୍ରୁତରଥେ
ଦୁଃସାହସୀ ଭ୍ରମନେର ପଥେ
ତୋମାହତେ ବହୁଦୂରେ
ମନେ ହୟ ଅଜସ୍ର ମୃତ୍ୟୁରେ—
ପାରହୟେ ଆସିଲାମ ।
ଆଜି ନବ ପ୍ରଭାତେର ଶିଖର ଚୂଡ଼ାୟ
ରଥେର ଚଞ୍ଚଲ ବେଗ ହାଓୟାୟ ଉଡ଼ାୟ ।
ଆମାର ପୁରୋନୋ ନାମ
ଫିରିବାର ପଥନାହିଁ
ଦୂର ହତେ ଯଦି ଦେଖା ଚାହି
ପାରିବେ ନା ଚିନିତେ ଆମାୟ; ହେ ବନ୍ଧୁ ବିଦାୟ ।
କୋନୋଦିନ କର୍ମହୀନ ପୂର୍ଣ୍ଣ ଅବକାଶେ, ବସନ୍ତ ବାତାସେ

ଅତୀତେର ତୀର ହତେ ଯେ-ରାତ୍ରେ ବହିବେ ଦୀର୍ଘଶ୍ୱାସ
ଝରା ବକୁଲେର କାନ୍ନା ବ୍ୟଥିବେ ଆକାଶ
ସେଇକ୍ଷନେ ଖୁଁଜେ ଦେଖୋ
କିଛୁ ମୋର ପିଛେ ରହିଲ ସେ,
ତୋମାର ପ୍ରାନେର ପ୍ରାନ୍ତେ ବିସ୍ମୃତ ପ୍ରଦୋଷେ
ହୟ ତୋ ସେ ଫିରେ ଦେବେ ଜ୍ୟୋତି
ହୟତୋ ଧରିବେ କଭୁ ନାମ ହାରା ସ୍ୱପ୍ନେର ମୂରତି ।
ତବୁ ସେ ତୋ ସ୍ୱପ୍ନ ନୟ
ସବଚେୟେ ସତ୍ୟ ମୋର ସେଇ ମୃତ୍ୟୁଞ୍ଜୟ, ସେ ଆମାର ପ୍ରେମ
ତା'ରେ ଆମି ରାଖିଆ ଏଲେମ,
ଅପରିବର୍ତ୍ତନ ଅର୍ଘ୍ୟ ତୋମାର ଉଦ୍ଦେଶେ ।
ପରିବର୍ତ୍ତନେର ସ୍ରୋତେ ଆମି ଯାଇ ଭେସେ
କାଲେର ଯାତ୍ରାୟ, ହେ ବନ୍ଧୁ ! ବିଦାୟ ।
ତୋମାର ହୟନି କୋନୋ କ୍ଷତି
ମର୍ତ୍ତ୍ୟେର ମୃର୍ତ୍ତିକା ମୋର ତାଇ ଦିଏ ଅମୃତ ମୂରତି
ଯଦି ସୃଷ୍ଟି କରେ ଥାକୋ ତାହାରି ଆରତି
ହୋକ୍ ତବ ସନ୍ଧ୍ୟାବେଲା
ପୂଜାର ସେ ଖେଲା
ବ୍ୟାଘାତ ପାବେନା ମୋର ପ୍ରତ୍ୟହେର ମ୍ଲାନ ସ୍ପର୍ଶ ଲେଗେ
ତୃଷାର୍ତ୍ତ ଆବେଗ ବେଗେ ।
ଭ୍ରଷ୍ଟ ନାହିଁ ହବେ ତାର କୋନୋ ଫୁଲ ନୈବେଦ୍ୟର ଥାଲେ
ତୋମାର ମାନସ ଭୋଜେ ସଯତ୍ନେ ସାଜାଲେ ଯେ ଭାବ–
ରସେର ପାତ୍ର ବାଣୀର ତୃଷାୟ,
ତାର ସାଥେ ଦିବନା ମିଶାୟେ
ଯା ମୋର ଧୂଲିର ଧନ,
ଯା ମୋର ଚକ୍ଷେର ଜଲେ ଭିଜେ ।
ଆଜୋ ତୁମି ନିଜେ
ହୟତୋ ବା କରିବେ ରଚନ
ମୋର ସ୍ମୃତିଟୁକୁ ଦିୟେ ସ୍ୱପ୍ନାବିଷ୍ଟ ତୋମାର ବଚନ
ଭାର ତାର ନା ରହିବେ ନା ରହିବେ ଦାୟ, ହେ ବନ୍ଧୁ ! ବିଦାୟ ।

ମୋର ଲାଗି କରିଯୋନା ଶୋକ
ଆମାର ରୟେଚେ କର୍ମ, ଆମାର ରୟେଚେ ବିଶ୍ୱଲୋକ
ମୋର ପାତ୍ର ରିକ୍ତ ହୟ ନାଇଁ,
ଶୂନ୍ୟେରେ କରିବ ପୂର୍ଣ୍ଣ ଏଇ ବ୍ରତ ବହିବ ସଦାଇ
ଉତ୍କଣ୍ଠ ଆମାର ଲାଗି କେହ, ଯଦି ପ୍ରତୀକ୍ଷିୟା ଥାକେ
ସେଇ ଧନ୍ୟ କରିବେ ଆମାକେ ।
ଶୁକ୍ଳପକ୍ଷ ହତେ ଆଜି ରଜନୀଗନ୍ଧାର ବୃନ୍ତ ଖାନି
ଯେ ପାରେ ସାଜାତେ
ଅର୍ଘ୍ୟଥାଲା ଦେଖିବାରେ ପାୟେ, ଅସୀମ କ୍ଷମାୟ
ଭାଲୋମନ୍ଦ ମିଲାୟେ ସକଲି
ଏବାର ପୂଜାୟ ତାରି ଆପନାରେ ଦିତେ ଚାଇ ବଲୀ
ତୋମାରେ ଯା ଦିୟେଛିନୁ– ତାର
ପେୟେଛ ନିଃଶେଷେ ଅଧିକାର
ହେଥା ମୋର ତିଲେ ତିଲେ ଦାନ
କରୁଣ ମୁହୂର୍ତ୍ତ-ଗୁଲି ଗଣ୍ଡୁଷ ଭରିୟା କରେ ପାନ
ହୃଦୟ ଅଞ୍ଜଳୀ ହତେ ମମ, ଓଗୋ ତୁମି ନିରୁପମ
ହେ ଐଶ୍ୱର୍ଯ୍ୟବାନ୍ ! ତୋମାରେ ଯା ଦିୟେଛିନୁ, ସେ ତୋମାରି ଦାନ
ଗ୍ରହଣ କରେଛ ଯତ ଋଣୀ କରେ ରେଖେଛ ଆମାୟ ହେ ବନ୍ଧୁ ! ବିଦାୟ ।
"ବନ୍ୟା"

ଏହି ହେଲା "ଶେଷେର କବିତା"ର ଶେଷକଥା । ମିତା ଓ ବନ୍ୟାଙ୍କର ମାନସ ଲୋକର ମିଳନକାମନା ଓ ବିଚ୍ଛେଦ ବେଦନାର କଥା । କବି ଅମିତର ରୋମାନ୍‌ସକୁ ବ୍ୟକ୍ତିବିଶେଷର ସାଧ ବୋଲି କହିଛନ୍ତି । ସୁତରାଂ କେବଳ କଳା ଦିଗରୁ ପୁସ୍ତକ ଉପଭୋଗ୍ୟ କହିଲେ ଅନ୍ୟାୟ ହେବ । କବିଙ୍କର ଯାହା କେବଳ କଳ୍ପନାର ଖେଳା, ତାହାର ଅନ୍ତର୍ନିହିତ ତତ୍ତ୍ୱ "ଶେଷେର କବିତା"ରେ ରହିଛି । ମନୁଷ୍ୟଜୀବନରେ ପ୍ରେମ ବା ସ୍ନେହ ସମ୍ପର୍କରେ ବାସ୍ତବତା ସାଥିରେ ଅବାସ୍ତବର ଯୋଗ ବିୟୋଗ ଅତି ସତ୍ୟ ଅନୁଭୂତି । ଏକୁ ଇଂରାଜୀ ଭାଷାରେ ସଂଜ୍ଞା ନିର୍ଦ୍ଦେଶକରି ଦେବାକୁ ଗଲେ "Platonic love" ବୋଲି କୁହାଯିବ । କିନ୍ତୁ ସାଧାରଣ ମାନବଜୀବନରେ ଏହାର ସ୍ଥାନ ଅଛି ଏବଂ ରହିବାରେ କିଛି ଅସ୍ୱାଭାବିକ ବିଷଦୃଶତା ନାହିଁ, ଏହାହିଁ ପୁସ୍ତକଟିର ପ୍ରତିପାଦ୍ୟ ବିଷୟବସ୍ତୁ । କବିଙ୍କର ମାନବଜୀବନ ସମ୍ବନ୍ଧରେ ଗଭୀର ଅଧ୍ୟୟନ ଏବଂ ନିଖିଳ ଆତ୍ମା ସହିତରେ ସମାନୁଭୂତିର ଏ କବିତା ଗୋଟିଏ ପ୍ରତୀକ ।

କବି ରବୀନ୍ଦ୍ର ଭାବତପସ୍ୱୀ । ଭଗବାନଙ୍କ ସହିତ ତାଙ୍କର ନିତ୍ୟ ଅବ୍ୟାହତ ସମ୍ବନ୍ଧ 'ଗୀତାଞ୍ଜଳୀ'ର ମୂଳ କଥା । ସେ ପ୍ରାର୍ଥନା କରିଛନ୍ତି ''ଅନ୍ତର ମମ ବିକଶିତ କର ଅନ୍ତରତର ହେ ।'' ଏହାହିଁ ତାଙ୍କର ନିତ୍ୟ ଜଣାଣ । ପୁଣି ଏ ପାର୍ଥିବତାରେ ନିଜର ସତ୍ତା ହରାଇ ମଧ ଭକ୍ତକବିଙ୍କ ମନ ଖୁବ୍ ସଚେତ ରହିଛି ବୋଲି ସେ ନିଜକୁ ସାନ୍ତ୍ୱନାଦେଇ କହିଛନ୍ତି ''ରୂପ୍‌ସାଗରେ ଡୁବ୍ ଦିୟେଛି ଅରୂପ ରତନ ଆଶାକରି । ଯାବେ ଯଦି ନିୟେ ଯାଓଗୋ ଭାସିଏ ଆମାର ଜୀବନତରୀ ।।'' ଆତ୍ମସମର୍ପଣର ଏ ଆକୂତୀ କେଡ଼େ ମଧୁର ଓ ଗଭୀର ! କବି ଭଗବାନଙ୍କୁ ଜୀବନର ପରମପ୍ରିୟତମ ବୋଲି ବାଛିଛନ୍ତି ବୋଲି କହିଛନ୍ତି– ଏସ ନବ ନବରୂପେ ତୁମି ପ୍ରାଣେ ଏସ ଗନ୍ଧେ ବରନେ ତୁମି ଗାନେ । ''ନୈବେଦ୍ୟ'' ବହିଟି ତାଙ୍କର ଆତ୍ମନିବେଦନର ଇତିହାସ ହୋଇ ରହିଛି । ତାଙ୍କର ଗଭୀର ଆଧ୍ୟାତ୍ମିକତା ଓ ଭଗବଦ୍ ପ୍ରେମହିଁ ତାଙ୍କୁ କେବଳ ସାହିତ୍ୟରେ ନୁହେଁ ଦୁନିଆରେ ବଡ଼ କରି ପାରିଅଛି । ଏହି ଆଧ୍ୟାତ୍ମିକତା ଉପରେ ରବୀନ୍ଦ୍ର ପ୍ରତିଭା ଆଜି ଏଡ଼େ ବଡ଼ ହୋଇ ପାରିଛି ।

ବିଦେଶୀୟ ସଭ୍ୟତା ପ୍ରତି କବି ମନର ବିତୃଷ୍ଣା ନିବିଡ଼ ଥିଲା । ବସ୍ତୁତାନ୍ତ୍ରିକ ମାୟାଜାଲରୁ ମନୁଷ୍ୟ ଆତ୍ମାର ମୁକ୍ତି କବି ଆକୁଳ ହୋଇ ଖୋଜିଛନ୍ତି । ସେ ମୁକ୍ତ ବିହଙ୍ଗତୁଲ୍ୟ ଉଡ଼ିଯିବାକୁ ଚାହିଁଛନ୍ତି ସାମଗାନ ମୁଖର ବେଦଲୋକକୁ । ତାଙ୍କର 'ସଭ୍ୟତା' କବିତା ଏହାରି ବାର୍ତ୍ତାବାହିକା ।

ମୃତ୍ୟୁର ଅବ୍ୟବହିତ କାଳ ପୂର୍ବେ ସେ ତାଙ୍କର ବହୁ ସାଧନା ପ୍ରସୂତ ଶାନ୍ତି ନିକେତନର ବିଶ୍ୱଭାରତୀ ସହିତ ଚୀନ ଦେଶର ସଂସ୍କୃତି ମୂଳକ ଯୋଗ ସାଧନ କରିଥିଲେ । ପ୍ରାଚ୍ୟ ଓ ପାଶ୍ଚାତ୍ୟର ବିଭିନ୍ନ ସଂସ୍କୃତି ଓ କଳାର ବିନିମୟ ତାଙ୍କର ଆଦର୍ଶର ଅଙ୍ଗ ଥିଲା । କାରଣ ଏହି ମନୋମୟ ଲୋକରେ ମନୁଷ୍ୟ ବିଶ୍ୱର ପରିଚୟ ପାଏ ଓ ତାର ସମ୍ବନ୍ଧସ୍ଥାପନ କରିପାରେ । ସେହି କାରଣରୁ ଚୀନ ସରକାରଙ୍କ ଅର୍ଥାନୁକୂଲ୍ୟରେ ବିଶ୍ୱଭାରତୀ ସହିତ ''ଚୀନାଭବନ''ର ଯୋଗ ସମ୍ଭବ ହେଲା । ଭାରତବର୍ଷ ବିଶ୍ୱଜାତି ସଭାରେ ଗୁରୁ ସ୍ଥାନୀୟ ହେବାର ଯୋଗ୍ୟତା ରଖେ, ଏହା ତାଙ୍କର ଜୀବନ୍ତ ବିଶ୍ୱାସ ଥିଲା । ଏହାପାଇଁ ସେ ପୃଥିବୀରେ ଭାରତର ବାଣୀ ପ୍ରଚାର କରିଥିଲେ– ଦେଶ ଦେଶ ଭ୍ରମଣ କରି ବିଦେଶର ରତ୍ନ ମଧ ଆହରଣ କରିଥିଲେ ।

ଯେଉଁଆଡୁ ଦେଖିଲେ ତାଙ୍କର କର୍ମଭାବମୟ ସାଧକ ଜୀବନର କୂଳ ମିଳେ ନାହିଁ–

ଭାରତବର୍ଷର ସାହିତ୍ୟ, ଭାରତୀୟ ଜାତି ତାଙ୍କ ନିକଟରେ ଯେ ଋଣ କରିଛି, ତାହା ପରିଶୋଧ କରିବାପାଇଁ ସମଗ୍ର ଜାତୀୟ ଚେତନାର ବିକାଶକୁ ଅପେକ୍ଷା ରଖେ । ସେହି ମହାକବିଙ୍କର ମହିମାମୟ ଆତ୍ମାର ଜୟ କାମନା କରି ପ୍ରବନ୍ଧଟି ସାଙ୍ଗ କରୁଛି ।



* ଏହି ପ୍ରବନ୍ଧ ଉତ୍କଳ ସାହିତ୍ୟ ସମାଜରେ କବିଙ୍କର ପ୍ରଥମ ଶ୍ରାଦ୍ଧ ସଭାରେ ପଠିତ ହୋଇଥିଲା । – ତା.୧୭.୮.୧୯୪୧

# ପିପାସା

ଜଗଦୀଶ, ଦିଅ ମୋତେ ପ୍ରେମ ସୁନିର୍ମଳ

ଶ୍ରାନ୍ତ ପ୍ରାଣେ ଢାଳ ଶାନ୍ତିଧାର

ଦୁର୍ବଳ ପ୍ରାଣରେ ନାଥ ! ଦିଅ ନବବଳ

ଦୁଃଖ ଦୂର କର ହେ ମୋହର !

ଉପେକ୍ଷିତା କନ୍ୟା ତବ, କ୍ଷୁଦ୍ର ଅଳ୍ପପ୍ରାଣ,

ଏ ନିଖିଳ ବିଶ୍ୱ ଚରାଚରେ–

ପ୍ରେରିଛ କି ପିତା ମୋତେ ? ବିଳାପ ସଙ୍ଗୀତ

ଗାଇବାକୁ ଶୋକ ମୋହଭରେ ?

ଜଗତରେ ହାସ୍ୟରାଶି ବିଭବ ଗୌରବ

(ମୋର) ଚାରିଆଡ଼େ ଘେରିଣ ଖେଳଇ

ଯୁଗ ମୋର ତନ୍ଦ୍ରାଳସ ନୟନପଲ୍ଲବ

(ସିନା) ଅବହେଳେ ଧୂଳିରେ ଲୋଟଇ !

ନିଃସଙ୍ଗ ଜୀବନପଥ ଚାଲୁଅଛି ବାହି

ଏକମାତ୍ର ତୁମ୍ଭେ ସହଚର–

ତବ ସ୍ନେହେ କ୍ଷୀଣବକ୍ଷେ ସାହସ ବାନ୍ଧି–

ହେଉଅଛି କ୍ରମେ ଅଗ୍ରସର !

କେ ଜାଣି ନାହିଁ ମୁଁ ଯିବି ? କେତେ ଦିନାନ୍ତରେ–

ଲଭିବି ସେ ବିଶ୍ରାମର ସ୍ଥାନ

ମୋର-ଏ ଯାତନା ମର୍ମବ୍ୟଥା ଚିରକାଳ ପାଇଁ

ସତେ ? ତହିଁ ଅବା ହେବ ଅବସାନ !

ବିଶ୍ୱାସ-ଆଲୋକ ଦୀପ୍ତ କର ମୋ’ ହୃଦୟ
ଅପସରୁ ଅନ୍ଧକାରରାଶି—
ତବ କୃପାଦତ୍ତ ଜ୍ଞାନ ଦୀପ, ଉଜ୍ଜଳ, ମଧୁର
(ମୋର) ପୋଡ଼ାମନେ ରଖ ହେ ବିକାଶି
ପ୍ରଭୁ ! ଭ୍ରାନ୍ତିବଶେ ଚାହେଁ ଯଦି ଶାନ୍ତି-ହୀନ, ନଶ୍ୱର ଦାନ—
ସେହି ଦାନ ବରଷ ନା ମୋତେ—
ଅଯାଚିତ ମଧୁମୟ, କରୁଣା କଲ୍ୟାଣ
ବରଷ ହେ ! ତବ ଇଚ୍ଛା ଯେତେ ।
ଚଲାଅ ଅମରପଥେ ମୋ’ ଅନ୍ଧ ଜୀବନ—
ଯେହ୍ନେ ରତ ଥାଏଁ ସଦା ବିଶ୍ୱକାର୍ଯ୍ୟେ—
ନିଃଶେଷେ ବିଲୀନ ହେଉ (ସ୍ୱାର୍ଥ) ସଙ୍କୀର୍ଣ୍ଣ ବନ୍ଧନ
(ଲୁପ୍ତ ହେଉ) ଜଗତ “ପୁଣ୍ୟ” “ପ୍ରୀତି” ବୀର୍ଯ୍ୟେ !



# ସାରଳା ମହାଭାରତୀୟ ନାରୀଚିତ୍ର

## ମୁଖବନ୍ଧ

ପ୍ରାୟ ଦଶ ବର୍ଷ ପୂର୍ବେ ଧାରାବାହିକ ରୂପେ ସାରଳା ମହାଭାରତରେ ନାରୀର ଚିତ୍ର ନାମ ଦେଇ କେତେଗୁଡ଼ିଏ ପ୍ରବନ୍ଧ 'ସହକାର' ମାସିକ ପତ୍ରିକାରେ ଲେଖିଥିଲି । ସେ ଗୁଡ଼ିକ ସଂଗ୍ରହ କରି ପୁସ୍ତକ ଆକାରରେ ପ୍ରକାଶ କରିବା ପାଇଁ ଆବଶ୍ୟକ ପରିବର୍ତ୍ତନ କରିଛି ।

ଆମ ଓଡ଼ିଆ ସାହିତ୍ୟରେ ସମାଲୋଚନାମୂଳକ ଗ୍ରନ୍ଥ ସଂଖ୍ୟା ଅତି କମ୍ । ସେଥିରେ ପୁଣି ଗୋଟିଏ ଗୋଟିଏ ଗ୍ରନ୍ଥ ଉପରେ ଗୋଟିଏ ଗୋଟିଏ ବିଭାଗକୁ ଅବଲମ୍ବନ କରି ସମାଲୋଚନା କରିବା ପ୍ରୟାସ ମଧ ବେଶି ନାହିଁ । ସାରଳା ଦାସଙ୍କ ମହାଭାରତରେ ଏକ ପ୍ରକାଣ୍ଡ ଗ୍ରନ୍ଥରୁ ନାରୀ ଚରିତ୍ର ଭଳି ଏକ ଏକଦେଶଦର୍ଶୀ ବିଷୟ ଉପରେ ଆଲୋଚନା କରି ଗ୍ରନ୍ଥ ଲେଖିବା ଅତି ଦୁରୂହ ବ୍ୟାପାର । ପୁଣି ବିଭିନ୍ନ ପ୍ରକାଶିତ ସଂସ୍କରଣରେ ବିଷୟମାନଙ୍କରେ ବିଭିନ୍ନତା ପରିଲକ୍ଷିତ ହେଉଥିବାରୁ କୌଣସି ବିଷୟରେ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତ ପ୍ରତିପାଦନ କରିବା କିଛି ସହଜ କଥା ନୁହେଁ । ପ୍ରକାଶିତ ଓ ଅପ୍ରକାଶିତ ପାଣ୍ଡୁଲିପି ଓ ମୁଦ୍ରିତ ଗ୍ରନ୍ଥମାନଙ୍କରୁ ପାଠୋଦ୍ଧାର କରି ପ୍ରକୃତ ତଥ୍ୟ ବାହାର କରିବା ବର୍ତ୍ତମାନ କାଳରେ ଉପଯୁକ୍ତ ପୁସ୍ତକାଳୟ ଅଭାବରୁ ଏକାବେଳେକେ ଅସମ୍ଭବ କହିଲେ ଚଳେ । ଏସବୁ ଅଭାବ ଅସୁବିଧା ସତ୍ତ୍ୱେ ଏହି ସମାଲୋଚନାମୂଳକ ଗ୍ରନ୍ଥ ଲେଖିବାରେ ମତେ ପ୍ରେରଣା ଦେଇଛି ଆମ ଓଡ଼ିଶାର ନାରୀ ଜାତିର ବର୍ତ୍ତମାନ ଅବସ୍ଥା । ପୂର୍ବେ ଆମ ଶାସ୍ତ୍ରପୁରାଣକାରମାନେ କିଭଳି ଆଦର୍ଶ ଜାତିସମ୍ମୁଖରେ ରଖୁଥିଲେ, ତାହା ସମ୍ୟକ ରୂପେ ଅବଗତ କରାଇ ଜନସାଧାରଣକୁ ବର୍ତ୍ତମାନ ଯୁଗରେ ନାରୀଜାତିର ଉନ୍ନତି ପାଇଁ ଜାଗ୍ରତ କରାଇବା ମୋର ପ୍ରଧାନ ଉଦ୍ଦେଶ୍ୟ । ମହାକବି ସାରଳା ଦାସ ଯେଉଁ ଜୀବନ୍ତ ନାରୀଜଗତ୍ ସର୍ଜନା କରିଛନ୍ତି, ତାହା ବର୍ତ୍ତମାନ ଯୁଗର ନାରୀମାନେ ଆଲୋଚନା କରି ଯାହା ଶିକ୍ଷଣୀୟ, କରଣୀୟ, ତାହାକୁ ଗ୍ରହଣ କରିବେ, ଏହି ଆଶା ମୋର ରହିଛି ।

ସାରଳା ଦାସ ଯେଉଁ କାଳରେ ଉତ୍କଳରେ ଆବିର୍ଭୂତ ହୋଇଥିଲେ ବଙ୍ଗର ମହାଭାରତକାର ସେହି ପଞ୍ଚଦଶ ଶତାବ୍ଦୀରେ ବଙ୍ଗଳାରେ ଆବିର୍ଭୂତ ହୋଇଥିଲେ । ୧୫୪୯ ଖ୍ରୀଷ୍ଟାବ୍ଦରେ କାଶୀରାମ ଦାସଙ୍କ ଜନ୍ମ । ସେ ବିରାଟ ପର୍ବ ପର୍ଯ୍ୟନ୍ତ ଲେଖି ମୃତ ହୋଇଥିଲେ । ତାଙ୍କ ମହାଭାରତରେ ସାରଳା ଦାସଙ୍କ ମହାଭାରତର ବହୁ ପ୍ରଭାବ ପଡ଼ିଥିବା କଥା ଭାରତ ଦର୍ପଣକାର ପଣ୍ଡିତ ଶ୍ରୀ ଗୋପୀନାଥ ନନ୍ଦ ଶର୍ମା ଲେଖିଛନ୍ତି— ବଙ୍ଗର

ପ୍ରସିଦ୍ଧ ସାହିତ୍ୟିକ ଶ୍ରୀ ଦୀନେଶ ଚନ୍ଦ୍ର ସେନ (ଡି ଲିଟ୍) ନିମ୍ନୋକ୍ତ କଥା କାଶୀରାମ ଦାସଙ୍କ ମହାଭାରତ ମୁଖବନ୍ଧରେ ଲେଖିଛନ୍ତି । କାଶୀରାମ ଦାସ ଏବଂ ତାଙ୍କର ପରିବାରବର୍ଗ ମେଦିନୀପୁର ରାଜାଙ୍କର ଅନୁଗୃହୀତ ଥିଲେ । ସେ ଏବଂ ତାଙ୍କର ପରିବାର ଓଡ଼ିଶା ସହିତ ବିଶେଷ ଭାବରେ ସଂପୃକ୍ତ ଥିଲେ । ତାହାର ଅନେକ ପ୍ରମାଣ ମିଳେ । କାରଣ କାଶୀରାମ ଦାସ ମହାଭାରତରେ କବି ଯେଉଁଠିପାରେ ସେଠି ନୀଳାଚଳ ତୀର୍ଥର ପ୍ରଶଂସାସୂଚକ ପଦ ତାଙ୍କ ଗ୍ରନ୍ଥରେ ସନ୍ନିବେଶିତ କରିଅଛନ୍ତି ।

କହେ କାଶୀ ଦାସ ପ୍ରଭୁ ନୀଳ ଶୈଳାରୂଢ଼,
ଦକ୍ଷିଣେ ଅନୁଜାଗ୍ରଜ ସମ୍ମୁଖେ ଗରୁଡ଼

ଏହିପରି ଭାବରେ ପଦ ସେ ଅନେକ ସ୍ଥଳରେ ଲେଖିଛନ୍ତି ।

## ଉପସଂହାର

ମହାଭାରତରେ ସାରଳା ଦାସ ଯେ ନାରୀଚିତ୍ର ଆଙ୍କିଛନ୍ତି, ତାହା ଉପରେ ସେ ଦେଶୀୟ, ସାମାଜିକ ରୀତି ନୀତିର ରଙ୍ଗ ଦେଇଛନ୍ତି । ପଞ୍ଚଦଶ ଶତାବ୍ଦୀର ଅତୀତ ଓଡ଼ିଶାରେ ଊନବିଂଶ ଶତାବ୍ଦୀର ଓଡ଼ିଶାର ନାରୀଚିତ୍ର ମିଳେ । ସେ ଯୁଗରେ ବାଲ୍ୟବିବାହ ଓ ଲୁଚିବା ପ୍ରଥାର ପ୍ରଚଳନ ଥିଲା । ବିଂଶ ଶତାବ୍ଦୀରେ ଯେଉଁଠି ଆଧୁନିକ ପାଶ୍ଚାତ୍ୟ ଶିକ୍ଷାର ଆଲୋକପାତ ନ ହୋଇଛି, ସେଠାରେ ଅଦ୍ୟାପି ମଧ ପଞ୍ଚଦଶ ଶତାବ୍ଦୀର ରୀତି ବଞ୍ଚି ରହିଛି । ଗୁରୁଜନ ସମୀପରେ ସ୍ତ୍ରୀ ସ୍ୱାମୀ ସହିତ ଆଳାପ ନ କରିବା, ଭ୍ରାତୃଜାୟା ବୟସ୍କ ଦେବର, ଦେଢ଼ଶୁର ପ୍ରଭୃତିଙ୍କୁ ଲୁଚିବା ଓ କଥା ନ କହିବା ପ୍ରଥା ରହିଥିଲା । ଏହାର ଚିହ୍ନ ମନୁସଂହିତାରେ ମଧ ନିର୍ଦ୍ଦିଷ୍ଟ ଅଛି । ଅବିବାହିତା କନ୍ୟା ବୟସ୍କା ହୋଇଗଲେ ପିତାର ନିକଟ ସାନ୍ନିଧ୍ୟକୁ ମଧ ସଂହିତାକାର ବାଧା ଦେଇଛନ୍ତି । ଏହାର କାରଣ ଖୋଜିଲେ ଅନୁମିତ ହୁଏ ଯେ, ସେ ଯୁଗରେ ନରନାରୀ ସମ୍ବନ୍ଧ ସହଜ ଏବଂ ଶୁଭ୍ର ନ ଥିଲା । ମନୁଷ୍ୟ ଭିତରେ ଯେଉଁ ବର୍ବରତା ରହିଛି, ସେହି ବର୍ବର ଭାବକୁ ସଂଯମ କରିବା ନିମନ୍ତେ ଯେ ମନୁଷ୍ୟର ଶିକ୍ଷା ଓ ମାର୍ଜିତ ବୁଦ୍ଧି ରହିଥିଲା, ହୁଏ ତ ତାହା ପର୍ଯ୍ୟାପ୍ତ ନ ଥିଲା । ତେଣୁ ପାରିବାରିକ ଶୃଙ୍ଖଳା ଏବଂ ଗୁରୁ ଲଘୁ ସମ୍ପର୍କ ଯୁକ୍ତ ପାରମ୍ପରିକ ସଭ୍ୟତା କ୍ଷୁଣ୍ଣ ହେବା ଆଶଙ୍କାରେ ଉକ୍ତ ନିୟମ ବା ନୀତି ସମାଜରେ ପ୍ରଚଳିତ ଥିଲା । ଆଧୁନିକ ମନସ୍ତତ୍ତ୍ୱବିଦ୍ ବୈଜ୍ଞାନିକଗଣ ଏହି ମାନବିକ ବୃତ୍ତିର ମୌଳିକ ତଥ୍ୟମାନ ଉଦ୍‌ଘାଟନ କରି ଯାହା ଆବିଷ୍କାର କରିଛନ୍ତି, ତହିଁରୁ ଜଣାପଡ଼େ, ସାମାଜିକ ନରନାରୀ ସମ୍ପର୍କୀୟ ବିଧିନିଷେଧ ଗୁଡ଼ିକ ନିହାତି ଅସାର ମସ୍ତିଷ୍କପ୍ରସୂତ ଅଳୀକ କଳ୍ପନା ରୂପେ ପର୍ଯ୍ୟବସିତ ହୋଇ ନ ଥିଲା । ଏହି ନିୟମାନୁବର୍ତ୍ତିତା ଯୋଗୁଁ ସାମାଜିକ ନୀତି ଏବଂ ପାରିବାରିକ ସୌଷ୍ଠବ ବୃଦ୍ଧି ହୋଇ ହିନ୍ଦୁ ସମାଜକୁ ସଭ୍ୟତାର ଉଚ୍ଚତମ କୋଟିକୁ ନେଇ ଯାଇଥିଲା । ପାରିବାରିକ ମମତା, ଭକ୍ତି, ଶ୍ରଦ୍ଧା, ସ୍ନେହ, ସହାନୁଭୂତି ପ୍ରଭୃତି

ମହତ୍‌ଗୁଣ ଗୁଡ଼ିକ ନରନାରୀ ସମ୍ପର୍କରେ ବିନିଯୋଗ ହେଉଥିଲା । ତେଣୁ ବୟୋଜ୍ୟେଷ୍ଠ କନିଷ୍ଠକୁ ଶ୍ରଦ୍ଧା ସ୍ନେହ କରୁଥିଲେ ଓ କନିଷ୍ଠମାନେ ବୟୋଜ୍ୟେଷ୍ଠ ସମ୍ପର୍କରେ ବ୍ୟବଧାନ ସୀମା ଭିତରେ ରହିଥିବାରୁ ସେମାନଙ୍କୁ ଭକ୍ତି ଓ ସମ୍ମାନ କରୁଥିଲେ । କିନ୍ତୁ ଏ ଯୁଗରେ ତାହା ସଚରାଚର ଦେଖା ନ ଯିବାରୁ ଓ ଅର୍ଥନୀତି ପ୍ରଭୃତି ଆନୁଷଙ୍ଗିକ ବହୁ କାରଣ ସତ୍ତ୍ୱେ ବ୍ୟବଧାନ ନ ଥିବାରୁ ନରନାରୀ, ଗୁରୁ ଲଘୁ ସମ୍ପର୍କରେ ମାନସିକ ସମ୍ପଦର ଯଥେଷ୍ଟ ହାନି ଘଟିଅଛି ବୋଲି ଦେଖାଯାଏ ।

ସାରଳା ଦାସ ପୂର୍ବାପର ଘଟଣା ସଙ୍ଗତି ରଖି କାବ୍ୟ ରଚନା କରିଛନ୍ତି । ସେ ପ୍ରକ୍ଷିପ୍ତ ବିଷୟକୁ ମଧ୍ୟ ସଙ୍ଗତିକୁ ଆଣିଛନ୍ତି । ତହିଁରେ ଗୃହିଣୀ, ମାତା, କନ୍ୟା, ପିତା, ସପତ୍ନୀ, ବଧୂ, ରାଜା, ରାଣୀ ସମସ୍ତଙ୍କ କର୍ତ୍ତବ୍ୟ ଲିଖିତ । ଗୃହିଣୀଧର୍ମରେ ସାରଳା ଦାସ ଗୋଟିଏ ଭଲ ଚିତ୍ର ଦେଇଛନ୍ତି । ସ୍ୱାମୀ ଭିକ୍ଷାଶୀ । ସ୍ତ୍ରୀ ଦୁଃଖିନୀ ନାରୀ । ସ୍ୱାମୀ ରୁଗ୍‌ଣ ହୋଇ ଯିବାରୁ ସ୍ତ୍ରୀକୁ ଭିକ୍ଷାମାଗି ଯିବାକୁ ମନା କଲା । କିନ୍ତୁ ଘରେ କିଛି ନ ଥିବାରୁ ବ୍ରାହ୍ମଣୀ ମନେ ମନେ ଭାବୁଛି :—

''ବ୍ରାହ୍ମଣୀ ଭାବଇ ଯେବେ ପଠାଇବି ବଳେ
ଘରଣୀପଣ ଦୂଷଣ ହେବ କାଳେ କାଳେ ।
ବୋଲିବେ ଏ ନ ପାରିଲା ଦିନକ ଚଳାଇ
ଆଳସ୍ୟ ହୋଇଲା ରକ୍ତ ମାଂସ ଦେହ ବହି ।
ଏମନ୍ତେ ଘରଣୀପଣ ହୋଇବ ଦୂଷିତ
ନ ଯାଉ ଏ ଦ୍ୱିଜବର ଆଜ ହେଉ ସୁସ୍ଥ ।''

ପୂର୍ବେ ଲୋକନିନ୍ଦା ଅପବାଦ ଭୀତିରେ ନାରୀମାନେ କର୍ତ୍ତବ୍ୟ ଅବଧାରଣା କରୁଥିବାର ଉପରିଉକ୍ତ ପଦରୁ ଜଣାପଡ଼େ ।

ସାରଳା ଦାସ ମହାଭାରତରେ କେତେ ମନଗଢ଼ା ଗଳ୍ପ ଲେଖିଛନ୍ତି । ଯଥା— ସ୍ୱର୍ଗାରୋହଣ ପର୍ବରେ ହରିସାହୁ ବୈଶ୍ୟ ଝିଅ ହାରାବତୀ ସହିତ କେବଳ କନ୍ୟାଦାୟରୁ କନ୍ୟାପିତାକୁ ରକ୍ଷା କରିବାକୁ ଯୁଧିଷ୍ଠିରଙ୍କୁ ସ୍ୱର୍ଗକୁ ଯିବା ପଥରେ ବିବାହ କରାଉଛନ୍ତି । ଏତଦ୍ୱାରା କନ୍ୟା ଦାୟରେ ପିତାର ଦାୟିତ୍ୱ କେତେ ତାହା ଦେଖାଇଛନ୍ତି । ସନ୍ଥ ଜନମାନେ କନ୍ୟାଦାୟଗ୍ରସ୍ତ ପିତାକୁ ରକ୍ଷା କରି ସାହାଯ୍ୟ କରୁଥିବାର ଜଣାଯାଏ । ବାଳିକାମାନଙ୍କର ଖେଳଘର, ଶିବଙ୍କୁ ବାଳିକାମାନେ ଧୂଳି ଭାତ ଦେବା ଓ ଶିବଙ୍କଠାରୁ ବରପ୍ରାପ୍ତି କଥା ଲେଖିଛନ୍ତି । ସାରଳା ଦାସ ମହାଭାରତରେ ତାଙ୍କର ରାମାୟଣ ମଧ୍ୟ ସଂକ୍ଷିପ୍ତ ବର୍ଣ୍ଣନା କରି ସମ୍ପୂର୍ଣ୍ଣ ରାମାୟଣ କଥା ଲେଖିଛନ୍ତି । ତହିଁରେ ଲକ୍ଷ୍ମଣ ସୀତାଙ୍କ କଥା ମାନି ରାମଚନ୍ଦ୍ରଙ୍କୁ ଖୋଜିବାକୁ ନ ଯିବାରୁ ସୀତାଙ୍କ କଟୁକ୍ତି ଦେଖିବା କଥା । ସୀତା କହୁଛନ୍ତି—

"ସୀତା ବୋଇଲେକ ମୁହିଁ ଜାଣେ ତୋର ମାୟା,
ରାମଙ୍କୁ ମରାଇ ତୁହି ହେବୁ ମୋର ନାହା ।
ଅନେକ ଝିଙ୍ଗାସି କଟୁବାକ୍ୟ ସେ ବୋଇଲେ,
ଏଥିପାଇଁ ଅଇଲୁ ତୁ ଶ୍ରୀରାମଙ୍କ ତୁଲେ ।
ରାମଙ୍କ ଚିତ୍ତେ ତୋଠାରେ ଟିକେ ଛନ୍ଦ ନାହିଁ,
ଏଡ଼େ କପଟୀ ହେଲୁ ତୁ ତାଙ୍କ ଭାଇ ହୋଇ ।"

ଏ ଶଙ୍କା ସବୁ କାଳରେ ସବୁ ଯୁଗରେ ନାରୀମନରେ ରହିଛି । ଆମ ସମାଜରେ ଯେ ଦ୍ୱିତୀୟ ପ୍ରଥା ଥିଲା, ପୂର୍ବୋକ୍ତ ଉକ୍ତିରୁ ତହିଁର ପ୍ରମାଣ ମିଳେ । ନାରୀ ବିଧବା ହେଲେ ସେ କାଳରେ ଦେବରର ପତ୍ନୀ ହେଉଥିଲେ । ତାରା, ମନ୍ଦୋଦରୀ ଆଖ୍ୟାନରୁ ଏହାର ପ୍ରମାଣ ମିଳେ । ତେଣୁ ସୀତାଙ୍କ ମାନସିକ ଶଙ୍କା ନାରୀମନର ଗୋଟିଏ ଶାଶ୍ୱତ ମନୋବୃତ୍ତି । ହିନ୍ଦୁ ସମାଜରେ ଏହି ପ୍ରଥା ଏପର୍ଯ୍ୟନ୍ତ ନାନା ସମାଜରେ ବଞ୍ଚିଛି ।

ସାରଳା ଦାସ ଚଣ୍ଡୀପୁରାଣ ଓ ବିଲଙ୍କା ରାମାୟଣ ଲେଖିଛନ୍ତି । ଦୁଇଖଣ୍ଡି ପୁରାଣରେ ବୀରରସର ପ୍ରାବଲ୍ୟ ଦେଖାଯାଏ । ସୀତାଙ୍କ ପ୍ରେରଣାରେ ରାମ ବିଲଙ୍କା ରାବଣକୁ ମାରିଲେ । ନିଜେ ସୀତା ଯୁଦ୍ଧକ୍ଷେତ୍ରକୁ ଯାଇଥିଲେ । ଏହି ରାମାୟଣଟିରେ ସୀତାହିଁ ପ୍ରଧାନ ନାୟିକା । ମୂଳ ରାମାୟଣରେ ବାଲ୍ମୀକି ଏହି ତଥ୍ୟ ଲେଖି ନାହାଁନ୍ତି । ସୀତା ଚରିତ୍ରରେ ସାରଳା ଦାସ ବୀରରସର ଆରୋପ କରିଛନ୍ତି, ଯାହା କି ମୂଳ ରାମାୟଣରେ ନାହିଁ । ସୀତା ରାମଙ୍କୁ କହୁଛନ୍ତି– ତୁମେ ରାବଣବଧ ପାଇଁ ଗର୍ବ କାହିଁକି କରୁଛ ?

"ତୁମ୍ଭେ କିବା କଷ୍ଟ ପାଇଅଛ ରଘୁରାଣ,
ଘୋର କଷ୍ଟ ପାଇଲି ମୁଁ ମାଇଲି ରାବଣ ।
ଏମନ୍ତ ପ୍ରତିଜ୍ଞା ଯେବେ ଅଛି ରଘୁସାଇଁ
ବିଲଙ୍କାରେ ରାବଣକୁ ବଧ କର ଯାଇଁ ।

ବୈଦେହୀ ଝିଙ୍ଗାସି କରି ପୁଣି କହିଲେ –

କାର୍ଯ୍ୟ ନ କରିଣ କିପାଁ ପ୍ରଶଂସି ହେଉଛ
କେଉଁ ଦିନ ରାବଣ ତୁମ୍ଭେ ମାରିଅଛ ?

ଏହି ବୀରାଙ୍ଗନା ସୀତା ବନବାସରୁ ଫେରିଲା ବେଳେ ଯେପରି ବଧୂଭାବ ଦେଖାଇଛନ୍ତି, ତାହା ସାରଳା ଦାସ ବଡ଼ ସୁନ୍ଦର ଭାବରେ ଚିତ୍ରଣ କରିଛନ୍ତି –

"ଦେଖୁଥିଲେ ଉଭା ହୋଇ କରି ଦେବୀ ସୀତା,
ଦେଖି ଶାଶୁମାନଙ୍କୁ ସେ ନୁଆଁଇଲେ ମଥା ।
ଅଞ୍ଚଳ ଉହାଡ଼ି ଦେବୀ ବସିଲେ ଝଟତି

ବୋଇଲେ ରାମଙ୍କୁ ତୁମ୍ଭ ମାତା ଆସୁଛନ୍ତି ।
ଶୁଣିକରି ସଙ୍କୁଚିତ ହୋଇଲେ ଶ୍ରୀରାମ
ସୀତାଙ୍କୁ ବୋଇଲେ ତୁମ୍ଭେ କର ଯା ପ୍ରଣାମ ।''

ବୀରାଙ୍ଗନା ସୀତାଙ୍କର ପତିଙ୍କୁ ରାବଣ ମାରିବାକୁ ପ୍ରେରଣା ଦେବା ଓ ନିଜେ ଯୁଦ୍ଧଭୂମିକୁ ଯିବା, ପୁଣି ଶାଶୁମାନଙ୍କୁ ପାଛୋଟି ନେବା ପାଇଁ ଆସିବାର ଦେଖି ବଧୂଭାବ ଦିଓଟି ପାଖାପାଖି ରଖିଲେ ନାରୀ ଚରିତ୍ରର ଅଭିନବତ୍ୱ ଫୁଟିଉଠେ । ଏହି ସାମଞ୍ଜସ୍ୟ ବିଧାନ କେବଳ ସୀତାଙ୍କ ଭଳି ନାରୀଚରିତ୍ରରେ ଚିତ୍ରିବା ସାରଳା ଦାସଙ୍କ ପକ୍ଷେ ସମ୍ଭବ ହୋଇଛି, ଅନ୍ୟନାରୀର ଏହି ଚରିତ୍ର ଚିତ୍ର ଅଙ୍କନ ସମ୍ଭବ ହୋଇ ନ ଥାନ୍ତା । ବୀରତ୍ୱ ସାଥିରେ କମନୀୟତାର ଭାବ ସୀତାଚରିତ୍ର ଚିତ୍ରିବାକୁ ଯାଇଁ କବି ସଙ୍ଗତ କରି ଥୋଇ ପାରିଛନ୍ତି ।

## କବିଙ୍କ ନାରୀଚିତ୍ରଣର ବୈଶିଷ୍ଟ୍ୟ

ପ୍ରାଚୀନ ସଂସ୍କୃତ କାବ୍ୟ ଲେଖକମାନେ ବହୁ ଅଂଶରେ ନାରୀକୁ ଏକ ସୌନ୍ଦର୍ଯ୍ୟମୟୀ ପ୍ରତିମାରୂପେ ଚିତ୍ରଣ କରି ତାର ଦାମ୍ପତ୍ୟ ଜୀବନର ଭୋଗବିଳାସ ବିଭବକୁ କେବଳ ପ୍ରାଧାନ୍ୟ ଦେଇଥିଲେ । ପାରିବାରିକ ଜୀବନରେ ନାରୀର ସୁଖ ଦୁଃଖ, ମାନ ଅପମାନ, ଅଭାବ ଅଭିଯୋଗ, ଅସୁବିଧା ପ୍ରତି ଆଦୌ ଦୃଷ୍ଟି ଦେଉ ନ ଥିଲେ । କାବ୍ୟର ବିଷୟବସ୍ତୁର ବିଚାରଶୈଳୀ ବା ରୀତିର ଲୌହଛାଞ୍ଚହିଁ ଏହାର ପ୍ରଧାନ କାରଣ । କବିମାନେ ଯେ ଏହି ବିଷୟରେ ଅଜ୍ଞ ଥିଲେ ଏହା କହି ନ ପାରୁଁ । ସାରଳା ଦାସ ତାଙ୍କ ମହାକାବ୍ୟରେ ନାରୀଜୀବନର ବହୁ ବିଭବ ଓ ବିଭାଗ ପ୍ରତି ଲକ୍ଷ୍ୟରଖି ତାର ବିଶ୍ଳେଷଣ କରିଛନ୍ତି । ମନସ୍ତତ୍ତ୍ୱ ଦିଗରୁ ଏହି ନାରୀଚରିତ୍ର ବଡ଼ ଉଚ୍ଚାଙ୍ଗର ହୋଇଅଛି, ସନ୍ଦେହ ନାହିଁ । ସଂସ୍କୃତ ମହାଭାରତ ଓ ସଂସ୍କୃତ ପୁରାଣମାନଙ୍କରେ ନାରୀଚରିତ୍ରର ବିଭିନ୍ନ ଦିଗର ଚିତ୍ର ଦେଖିବାକୁ ମିଳେ । କିନ୍ତୁ ସାରଳା ଦାସଙ୍କ ମନସ୍ତତ୍ତ୍ୱ ବିଚାର ଅନନ୍ୟସାଧାରଣ କହିଲେ ଚଳେ । ପ୍ରକୃତି ଓ ସ୍ୱଭାବକୁ ଏହି ଚିତ୍ର ଅତିକ୍ରମ କରିନାହିଁ ।

ସାରଳା ଦାସ ମହାଭାରତରେ ଯେତେଗୁଡ଼ିଏ ନାରୀ ସୃଷ୍ଟି କରିଛନ୍ତି, ସେମାନେ ସକ୍ରିୟ, ସାବଲୀଳ, ଜୀବନ୍ତ । ରାମାୟଣର ନାୟିକା ସୀତାଙ୍କ ପରି ମହାଭାରତର ନାୟିକାମାନେ ନିଷ୍ପନ୍ଦ, ନିଷ୍କ୍ରିୟ, ଦୈବାଧୀନା ନୁହନ୍ତି । ସୀତାଙ୍କ ପ୍ରକୃତିଠାରୁ ଦ୍ରୌପଦୀଙ୍କ ପ୍ରକୃତି ଭିନ୍ନ । ସୀତା ସତୀ ଥିଲେ । ସତୀତ୍ୱର ପରୀକ୍ଷା ଦେଇ ତାଙ୍କର ଜୀବନଦୀପ୍ତି ପାତାଳରେ ନିର୍ବାଣ ଲଭିଥିଲା । ମାତ୍ର ମହାଭାରତୀୟ ନାରୀମାନଙ୍କୁ ଏପରି କଷଟିରେ ପରୀକ୍ଷା ଦେବାକୁ ପଡ଼ିନାହିଁ । ମହାଭାରତ ନାରୀର ପତନ ଉତ୍‌ଥାନ ଅଛି । ମହାଭାରତ ଯୁଗରେ ସତୀତ୍ୱର ମହିମା ନାରୀଜୀବନକୁ ଦୀପ୍ତ କରିଛି, କିନ୍ତୁ ସତୀତ୍ୱ ସହିତରେ

ବ୍ୟାବହାରିକ ଗୁଣଗୁଡ଼ିକର ସାଦୃଶ୍ୟ ରଚନା କରାଯାଇଛି– ବିଭିନ୍ନ ସମ୍ପର୍କ ମଧ୍ୟରେ । କିନ୍ତୁ ରାମାୟଣ ମହାଭାରତ ନାରୀମାନଙ୍କର ସାମଞ୍ଜସ୍ୟ ଅଛି । ସୀତାଙ୍କ ଚରିତ୍ରଠାରୁ ଦ୍ରୌପଦୀଙ୍କ ଚରିତ୍ର ହୀନ ନୁହେଁ । ଯୁଗ ବିଭିନ୍ନ ହେଲେହେଁ ନାରୀଜୀବନର ଏକ ଆଦର୍ଶ କେନ୍ଦ୍ର ସୃଷ୍ଟି କରି ତାଙ୍କୁ ନେଇ ପରିଣତି ଦେଇଅଛି । ଭାରତୀୟ ସଂସ୍କୃତିର ଛାଞ୍ଚ ଭିତରେ କି ରାମାୟଣ, କି ମହାଭାରତ ସବୁ ଯୁଗର ନାରୀ ଢଳେଇ ହୋଇ ରୂପ ପାଇଛନ୍ତି । ଏହି କୈନ୍ଦ୍ରିକ ଏକତ୍ୱରେ ନାରୀର ସନାତନ ବିକାଶ ଓ ପୁଷ୍ଟି । ମୂଳ ସ୍ୱର ଏକା ପରି । ଦୁଇ ଯୁଗର ନାରୀ ଏକା ଢଙ୍ଗର । ସୀତାଙ୍କ ପରି ଦ୍ରୌପଦୀ, ଗାନ୍ଧାରୀ ଓ କୁନ୍ତୀ ମଧ୍ୟ ଏକନିଷ୍ଠ ପତିବ୍ରତା ଥିଲେ । ସାଂସାରିକ ଦୃଷ୍ଟିରେ ଆମ୍ଭେମାନେ କୁନ୍ତୀ ଦ୍ରୌପଦୀଙ୍କ ଚରିତ୍ର ସହିତ ସୀତାଚରିତ୍ର ବିଚାରି ପାରିବା ନାହିଁ । ଏଥିପାଇଁ ସସାର ନିରପେକ୍ଷ ଭାବମୟ ଋଷିଦୃଷ୍ଟିର ପ୍ରୟୋଜନ । ସେହି ଋଷିଦୃଷ୍ଟିରେ ବ୍ୟାସ, ସାରଳା ଦାସ ନାରୀ ଚରିତ୍ର ଚିତ୍ର କରିଛନ୍ତି । ସେହି ଆତ୍ମନିଷ୍ଠ ନାରୀମାନଙ୍କ ଚରିତ୍ର ବୁଝିବାକୁ ସାଧାରଣଙ୍କର ସଂସ୍କାର ଶୁଦ୍ଧ ହେବା ଦରକାର । କୁନ୍ତୀ ଚାରୋଟି ଦେବତାଙ୍କ ଔରସଜାତ ପୁତ୍ରମାନଙ୍କର ମାତା ହୋଇ, ଅପାପବିଦ୍ଧା ଥିବାରୁ ସମାଜ ଓ ରାଜ୍ୟ ତାଙ୍କୁ ଅଙ୍ଗୀକାର କରିଥିଲା । ଗୁରୁ ଆଜ୍ଞା, ସ୍ୱାମୀ ଆଜ୍ଞା ପାଇ ବଂଶଧାରା ରକ୍ଷା କରିବା ପାଇଁକି ସେ ପୁତ୍ରୋତ୍ପାଦନ କରିଥିଲେ । ଶାଶୁଙ୍କ ଆଜ୍ଞାରେ ଦ୍ରୌପଦୀଙ୍କ ଭାଗ୍ୟରେ ମଧ୍ୟ ସେହି ଦଶା ଘଟିଥିଲା । କୁନ୍ତୀ ଯେପରି ପାଣ୍ଡୁଙ୍କ ସହଧର୍ମିଣୀ ଓ ଅନୁଗାମିନୀ ଥିଲେ, ଦ୍ରୌପଦୀ ମଧ୍ୟ ସେହିପରି ପଞ୍ଚପତିଙ୍କର ସହଧର୍ମିଣୀ, ଅନୁଗାମିନୀ ଓ ନିଷ୍ଠାପର ସେବିକା ପୁଣି ମନ୍ତ୍ରିଣୀ ଥିଲେ । ଉଭୟେ ମହିୟସୀ ପୁଣ୍ୟବତୀ ସତୀ ନାରୀ । ମହାଭାରତ ନାରୀ ଲୀଳାମୟୀ, ରାମାୟଣ-ନାରୀ ତପସ୍ୱିନୀ । ରାମାୟଣ ନାରୀଙ୍କର ଜୀବନରେ ବେଦନା ଅଛି, ହର୍ଷ ନାହିଁ । ମହାଭାରତ ନାରୀ ଆନନ୍ଦ ବେଦନାରେ ଚଞ୍ଚଳା, ଜୀବନର ଗତିଛନ୍ଦରେ ଆକୁଳା ।

× × × ×

ସାରଳା ଦାସ ଗାନ୍ଧାରୀ ଧୃତରାଷ୍ଟ୍ର ବିବାହ ଯେପରି ବର୍ଣ୍ଣିଛନ୍ତି, ତହିଁରେ ଅଦ୍ୟାପି ଆମ ଦେଶରେ କହନ୍ତି– ଧୃତରାଷ୍ଟ୍ରଙ୍କୁ କନ୍ୟା ନାହିଁ, ଗାନ୍ଧାରୀକୁ ବର ନାହିଁ । ପଲ୍ଲୀରେ ବହୁ ବିବାହକାରୀକୁ କହନ୍ତି, "ଅମୁକ ତିନିଟା ବିଭା ହେଲା, ସାହାଡ଼ା ଗଛକୁ ପୂରାଇ ଚାରିଟା ହେଲା ।" ସାରଳା ଦାସ ବହୁ ସାମାଜିକ ରୀତି, ପ୍ରବାଦ, ପଦ୍ଧତିକୁ ତାଙ୍କ କନ୍ୟା ସ୍ୱୟମ୍ବର ଓ ବିବାହ ପ୍ରଣାଳୀଟିରେ ଭର୍ତ୍ତି କରିଛନ୍ତି ଦେଖି ଆଶ୍ଚର୍ଯ୍ୟ ଲାଗେ ।

ସେ ଯୁଗର ନାରୀମାନେ ପ୍ରସାଧନ ପ୍ରିୟା, ଅଳଙ୍କାର-ବସନ-ପ୍ରିୟା, ସ୍ୱାଚ୍ଛନ୍ଦ୍ୟ ଆଶାୟୀ, ପ୍ରେମପ୍ରବଣା ଥିବାର ସାରଳା ଦାସ ଲେଖିଛନ୍ତି । ସପତ୍ନୀ-ଈର୍ଷା ଓ ଭେଦଭାବ ମଧ୍ୟ ସେମାନଙ୍କ ପ୍ରକୃତିରେ ଥିଲା । ନାଗକନ୍ୟା ବିନ୍ଧ୍ୟବାଳୀ, ହିଡ଼ିମ୍ବିକୀ ପ୍ରଭୃତି ସହଜ

ସୁନ୍ଦରୀ ନାରୀମାନେ ସାଧାରଣ ଶ୍ରେଣୀର ନାରୀ ଥିଲେ ଓ ରହସ୍ୟବିଦ୍ୟାପାରଙ୍ଗମା ଥିଲେ । ଏହି ଶ୍ରେଣୀର ନାରୀଚରିତ୍ର ସାରଳା ଦାସଙ୍କ ମହାକାବ୍ୟରେ ବିଶେଷ ଭାବରେ ଦୃଷ୍ଟ ହୁଏ । ସେମାନଙ୍କ ଚରିତ୍ରରେ ବିଶେଷତ୍ୱ ଓ ଶିକ୍ଷଣୀୟ ବିଷୟ କିଛି ନ ଥିବାରୁ ସେମାନଙ୍କ ଚିତ୍ର ଉଲ୍ଲେଖ କରାଗଲା ନାହିଁ ।

ମହାଭାରତ ଆମ ଦେଶରେ ଚର୍ଚ୍ଚା ହେବା ଉଚିତ । ଯାଗ ଯଜ୍ଞ, ହୋମ ବ୍ରତ, ପୂଜା ଅନୁଷ୍ଠାନ, ବବାହ, ଶ୍ରାଦ୍ଧ ଅନୁକୂଳ ସମ୍ବନ୍ଧରେ ଯାହା ସବୁ ଲିଖିତ ଅଛି ସେ ସମ୍ବନ୍ଧରେ ଆଧୁନିକ ନାରୀମାନଙ୍କର ଜାଣିବାର ରହିଛି । ତାହା ଜାଣିବା ଅର୍ଥ ନିଜର ଜାତୀୟତା, ନିଜର ଐତିହ୍ୟ ଓ ପରମ୍ପରାକୁ ଜାଣିବା । ଫଳତଃ ଏହା ଦ୍ୱାରା ଜାତୀୟ ଆତ୍ମାକୁ ଚିହ୍ନିବା ସମ୍ଭବ ହୁଏ । ମୁଁ କେବଳ ନାରୀଚିତ୍ର ଲେଖିଲି । କିନ୍ତୁ ଏହି ମହାକାବ୍ୟ ଏଡ଼େ ବିରାଟ ଏବଂ ମନୁଷ୍ୟ ଜୀବନର ଏତେ ଗୁଡ଼ିଏ ଦିଗର ଦର୍ଶନ ଏହି ପୁସ୍ତକରେ ରହିଛି ଯେ, ତାହା ଆମର ଶିକ୍ଷିତା ଝିଅ ବୋହୂମାନଙ୍କର ପ୍ରଣିଧାନର ବିଷୟ । ରାଜନୀତି, ଶାନ୍ତି, ଯୁଦ୍ଧନୀତି, ଅର୍ଥ, ନୀତିଶାସ୍ତ୍ର ସବୁ ଦିଗରେ ମହାଭାରତ ଶାଖା ମେଲିଛି । ସାରଳା ଦାସ ଯେପରି କବି ଥିଲେ, ସେହିପରି ଜଣେ ଶ୍ରେଷ୍ଠ ସମାଜତତ୍ତ୍ୱବିଦ୍ ପଣ୍ଡିତ ବ୍ୟକ୍ତି ଥିଲେ । ତାହାଙ୍କ ସ୍ମୃତିକୁ ନମସ୍କାର କରି ଏହି ଗ୍ରନ୍ଥ ଶେଷ କରୁଛି । ଭ୍ରମ ପ୍ରମାଦ ଏଥିରେ ଥିବ– ତଥାପି ମୋର ଆତ୍ମତୃପ୍ତି ।



# ତୁଳସୀଦାସ

## ପ୍ରଥମ ଅଙ୍କ

### ପ୍ରଥମଦୃଶ୍ୟ

### (ପ୍ରସ୍ତାବନା)

ମହାଦେବ—ରାମ ରାମ ରାମ ରାମ ରାମ ରାମ ରାମ ରାମ
ରାମ ରାମ ରାମ ରାମ ରାମ ରାମ ରାମ ରାମ
ରାମ ରାମ ରାମ ରାମ ରାମ ରାମ ରାମ ରାମ
ରାମ ରାମ ରାମ ରାମ ରାମ ରାମ ରାମ ରାମ
ରାମ ରାମ ରାମ ରାମ ରାମ ରାମ ରାମ ରାମ
ବୋମ ବୋମ ବୋମ ବୋମ ବୋମ ବୋମ ବୋମ ବୋମ
ବୋମ ବୋମ ବୋମ ବୋମ ବୋମ ବୋମ ବୋମ ବୋମ
ଜୟରାମ ଜୟରାମ ଜୟରାମ ଜୟରାମ
ଜୟରାମ ଜୟରାମ ଜୟରାମ ଜୟରାମ

(ଦୁର୍ଗାଙ୍କ ପ୍ରବେଶ)

ଦୁର୍ଗା— ହେ ଆନନ୍ଦମୟ !
ଏତେ ଆନନ୍ଦର ଆଜି ଆବିର୍ଭାବ କିପାଁ ?
ମହାତାଣ୍ଡବରେ ତବ
କମ୍ପୁଛି କୈଳାସ ଥରହର ହୋଇ ?

ଶିବ— କହ, କେବେ ନରାନନ୍ଦ ତୁମର ଶଙ୍କର ?
କ୍ଷେପା ଭୋଳାହର
ଚିରଦିନ ପାଗଳ ସେ ରାମନାମ ଗାନେ
ଶ୍ମଶାନେ ମଶାଣେ ରହେ
ଭୂତଗଣ ସଙ୍ଗେ ନାଚେ
ଗାଏ ରାତିଦିନ ରାମ ନାମ ମୋଦେ ।

୧ମ ପ୍ରମଥ— ବାବା ! ପୁଣି ନାଚିବି

ଦୁର୍ଗା— ଆଜିର ଏ ନୃତ୍ୟଗୀତେ କିଛି ବିଶେଷତ୍ୱ ଦେଖେଁ

ହେଉଅଛି ମନେ— ଅବଶ୍ୟହିଁ ଏହା ନୁହେଁ ନିଷ୍କାରଣେ

ଶିବ— ଭବାନି ! ଅନ୍ତର୍ଯ୍ୟାମିନୀ ତୁମେ
କିଛି ନାହିଁ ଅବିଦିତ ତବ
ସତରେ ମୋ ପ୍ରାଣ ଆଜି ଆନନ୍ଦେ ଉଦ୍‌ବେଳ
ଏକ ଶୁଭ ସଂଘଟନେ ।

ଦୁର୍ଗା— ଶ୍ରୀ ମୁଖରୁ ତବ
ଶୁଣିବାକୁ ଚାହେଁ ସେହି ଆନନ୍ଦ ବାରତା ।

ଶିବ— ପ୍ରିୟେ ! ଶୁଣ ପ୍ରିୟେ ତେବେ—
ମହର୍ଷି ବାଲ୍ମିକୀ ପୁଣି ରାମ ରାମ ପ୍ରଚାରଣେ
ହୋଇଛନ୍ତି ଅବତୀର୍ଣ୍ଣ ଏହି ଧରାଧାମେ
ରାମନାମେ, ରାମଗୁଣ ଗାନେ
ମରତେ ଆସିବ ପୁଣି ଆନନ୍ଦର
ମହତୀ ପ୍ଲାବନ ।
ଆଦିକାବ୍ୟ ରାମାୟଣ
ବୁଝିବା ସାମର୍ଥ୍ୟ ନାହିଁ କଳିହତ ଜୀବେ ।
ତେଣୁ ଭାଷା ରାମାୟଣ କରି ପ୍ରଣୟନ
ରାମଗୁଣ-ସୁଧା
ମୂର୍ଖ ବିଦ୍ୱାନ ବ୍ରାହ୍ମଣ ଚଣ୍ଡାଳ ନରନାରୀଗଣେ
କରାଇବେ ପାନ ।
ଏକ ଗ୍ରନ୍ଥ ଶ୍ରବଣେ ମନନେ ନରନାରୀକୁଳ
ହେବେ ପରିତ୍ରାଣ । ରାମ ରାମ ରାମରବେ
ପୂର୍ଣ୍ଣ ହେବ ଧରାଧାମ ଯେତେଦିନ
ଚନ୍ଦ୍ରସୂର୍ଯ୍ୟ ରହିବେ ଗଗନେ ।
ଖାଲି ଏହା ନୁହେଁ, ଆନନ୍ଦର ଅପରକାରଣ
ହୋଇଅଛି ଉପସ୍ଥିତ ।

ଦୁର୍ଗା— କିବା ସେ କାରଣ ?

ଶିବ — ମୋର ନାଥ ବଙ୍ଗଦେଶେ ଧରି ନରକାୟ
ନାମର ବନ୍ୟାରେ
ଭସାଇଣ ବଙ୍ଗଳା ଉତ୍କଳ

ନିତ୍ୟ ବୃନ୍ଦାବନ, ଶେଷେ ନୀଳାଚଳେ
ଗମ୍ଭୀରାୟ ବ୍ରଜରସ ଆସ୍ୱାଦନ କରି
ସେ ମଧୁର ବ୍ରଜରସ ଅନ୍ତରଙ୍ଗଗଣେ
କରିଣ ପ୍ରଦାନ ଏବେ ସ୍ୱଧାମକୁ
କରୁଛନ୍ତି ଆଗମନ । ସେହି ମଧୁର
ରସର ତରଙ୍ଗ ଶୁଷ୍କ ମରୁଭୂମି ସମ
ରାଜସ୍ଥାନେ ଚିତ୍ରିବା ପାଇଁକି
ଏକ ବ୍ରଜାଙ୍ଗନା ପେଷିଛନ୍ତି ତହିଁ ।
ମୀରା ନାମେ ସେହି ଗୋପୀ;
କରିଅଛି ଦେହ ପରିଗ୍ରହ ।
ଅଚିରେ ମୀରା ମଧୁର ରସର ହିଲ୍ଲୋଳେ,
ରାଜସ୍ଥାନ ପରିଣତ ହେବ ଗୋଲୋକରେ ।
ଗୋଲୋକବିହାରୀ ହରି, ମେବାରର ମହାରାଣୀ
ମୀରାବାଈ ସଙ୍ଗେ ଖେଳିବେ ପ୍ରେମର ଖେଳା ।
କଣ୍ଠେ କଣ୍ଠେ ମୀରାର ଭଜନ ଗୀତ
ହୋଇବ ଧ୍ୱନିତ, ଦାସ୍ୟ ମଧୁର ରସର
ତରଙ୍ଗେ ଭାଷିବ ଅବନୀ । ସେହି ହେତୁ
ଆନନ୍ଦରେ ହୋଇ ଆତ୍ମହରା
କରୁଅଛି ରାମ ନାମ ଗାନ ।

ଦୁର୍ଗା— ବଡ଼ ସୁସମ୍ବାଦ । କଳିର ପୀଡ଼ନେ
ଆକୁଳ ତନୟଗଣ ମୋର
କାନ୍ଦେ ପ୍ରାଣ ସେମାନଙ୍କ ପାଇଁ
ପାଇବେ ଉପାୟ ରାମନାମ ଗାନେ
ପୁଣି କୃଷ୍ଣନାମେ । ରାମ ଓ କୃଷ୍ଣର ଲୀଳା ଗୁଣଗାନେ
ବୈକୁଣ୍ଠେ ପରିଣତ କରି ଏ ଅବନୀ
ଆନନ୍ଦିତ ମନେ ଦିନ କରିବେ ଯାପନ ।

ଶିବ— ମେବାରର କୁଳଦେବୀ ହେବ ତୁମେ
ଉପେକ୍ଷିତା ମୀରା ନିକଟରେ,
ନ ପୂଜିବ ନ ନମିବ ତୁମର ପୟରେ
ସେହି ଶ୍ୟାମସୁହାଗିନୀ ।

ଦୁର୍ଗା— ମୋର ରାମେ, ମୋର ଶ୍ୟାମେ
ଯେହୁ କରେ ଆତ୍ମଦାନ
ସେ ତ ମୋର ନାଥ, ତାଙ୍କ ସେବା ପୂଜନରେ
କୋଟିଗୁଣ ତୃପ୍ତିପାଏ ମୁହିଁ
ମୋର ପୂଜାଠାରୁ ।

(ନାରାୟଣଙ୍କ ପ୍ରବେଶ)

ନାରାୟଣ— ମୁଁ ବି କୋଟିଗୁଣେ ଲଭଇ ଆନନ୍ଦ
ମୋ ମାଆର, ମୋ ଶିବର ପୂଜାରେ
ଶିବ ଦୁର୍ଗାଭକ୍ତ-ପ୍ରାଣାପେକ୍ଷା ପ୍ରିୟ ମୋର । (ପରସ୍ପର ପ୍ରଣାମ ଓ ଆଲିଙ୍ଗନ)

ଶିବ— ଏ କି ଦୟାମୟ !
ତବ ଆଗମନ ଆଶାର ଅତୀତ ।

ଦୁର୍ଗା— ଅହେତୁକୀ କୃପା ତବ ହେ ମୁକୁନ୍ଦ
ଦେଖିଣ ନୟନେ ସେ ରୂପ ମାଧୁରୀ,
ଆନନ୍ଦରେ ପୂର୍ଣ୍ଣହେଲା ପ୍ରାଣ ।
କେଉଁଠାରେ କମଳା ମୋହର ?

ନାରାୟଣ— ଜଗତର ପିତା ଆଉ ମାତାଙ୍କୁ ମୁଁ
କରିଣ ଦର୍ଶନ ହୋଇଲି କୃତାର୍ଥ
ଜନନି ! ଶଙ୍କରଙ୍କ ଆହ୍ୱାନରେ ଆସିଛି ଦଉଡ଼ି
କମଳାଙ୍କୁ ସମ୍ବାଦ ଦେବାର
ପାଇନାହିଁ ଅବକାଶ ।

ଶିବ— ତୁଳସୀ ଦାସ ଭକତ
ତୁମ ନାମ ଲୀଳା ଗୁଣ ପ୍ରଚାରଣେ
ହୋଇଛନ୍ତି ଅବତୀର୍ଣ୍ଣ ଧରାଧାମେ ।
ଆନନ୍ଦେ ଆକୁଳ ହୋଇ
ଭୂତଗଣ ସଙ୍ଗେ କରୁଥିଲି ରାମ ନାମ ଗାନ ।

ନାରାୟଣ— ତବ ସୁଧା ନାମ ଗାନ
କରି ଆକର୍ଷଣ ଆଣିଅଛି ଏଥେ ।
ତୁଳସୀ ଦାସ ତବ କୃପାବଳେ
ମୋର ଦରଶନ ପାଇ—

ମହାବୀର ରୂପେ ତାକୁ
ସତତ ମୁଁ ଦେବି ଉପଦେଶ ।

ଶିବ— ପରମ ସୌଭାଗ୍ୟ ମୋର
ଭକ୍ତ ସଙ୍ଗେ କରି ଅବସ୍ଥାନ
ଶୁଣିବଇଁ ଭକ୍ତ ମୁଖେ ରାମ ନାମ ।
ଆସରେ ପ୍ରମଥଗଣ, ଆସ
ସର୍ବେ ମିଳି ହରର ଆରାଧ୍ୟ ନିଧି,
ସାଧାନାର ଧନ, ଭକ୍ତିମୁକତି ଦାତା
ଭଗବାନେ କର ପ୍ରଦକ୍ଷିଣ
କର ନାମ ଗାନ ।
(ନାରାୟଣଙ୍କୁ ପ୍ରଦକ୍ଷିଣ କରି ସମସ୍ତଙ୍କର ନୃତ୍ୟଗୀତ)

## ଦ୍ୱିତୀୟ ଦୃଶ୍ୟ

(ତୁଳସୀ ଦାସଙ୍କ ଘର ନିକଟ ପଥ । ନାଗରିକ ଦ୍ୱୟଙ୍କର ପ୍ରବେଶ)

୧ମ— ଏ ଘରଟି କାହାର, ଭାଇ ?

୨ୟ— ତା ବି ଜାଣ ନା ? ତୁଳସୀଦାସ ଦୁବେଜୀଙ୍କର ପରା ?

୧ମ— ମୁଁ ତ ଏଠି ନଥାଏ—କିମିତି ଜାଣିବି ଭାଇ କହ ? ଏ କିଏ ସେ ।

୨ୟ— ଆତ୍ମାରାମ ଦୁବେ ବୋଲି ଜଣେ ସତ୍‌ଲୋକ ରଜାଙ୍କ ପୁରୋହିତ ଥିଲେ । ଇଏ ତାଙ୍କ ପୁଅ । ୟାଙ୍କ କଥା ବଡ଼ ବିଚିତ୍ର ?

୧ମ— କି କଥା ଭାଇ ?

୨ୟ— ଇଏ ମା ପେଟରୁ ଜନ୍ମହେଲାବେଳେ ରାମ ରାମ କହୁ କହୁ ଭୂମିଷ୍ଠ ହେଲେ ।

୧ମ— କଣ କହୁଚ ? ଏମିତି କଥା ତ କେଉଁଠୁ ଶୁଣାନାଇଁ— ତା'ପରେ—ତା'ପରେ ।

୨ୟ— ଦିପାଟି ଦାନ୍ତ ଥିବା ଛୁଆର 'ରାମନାମ' ଶୁଣି ଅନ୍ତୁଡ଼ିଶାଳ ଧାଇ ପାଟିକଲା ।

୧ମ— ପାଟି କରିବା କଥା ତ । ପାଟିଏ ଦାନ୍ତ ଥିବା ଛୁଆ ରାମ ନାମ କହିଲା—ଖାଲି ରାମ ନାମ କରୁଥିଲା ?

୨ୟ- ରାମନାମର ବିରାମ ନଥିଲା । ସମସ୍ତେ ଆତ୍ମାରାମଙ୍କୁ ଏ ବିଚିତ୍ର ପିଲା କାହାଣୀ କହିଲେ । ବାପ ନାହାକ ଡାକି ପଚାରିଲେ । ସେମାନେ ତିନିଦିନ ପରେ ଏସବୁ କଥାର ଅର୍ଥ କହିବେ ବୋଲି କହିଲେ ।

୧ମ— ତା ପରେ ?

୨ୟ— ଏହାର ମା ମରିବା ନିକଟ ହେବା ଜାଣି ଦାସୀକୁ ନିଜ ଗହଣାତକ ଦେଇ କହିଲେ, ମୁଁ ମଲାପରେ ଏ ପିଲାକୁ ନେଇ ତୁ ଚାଲିଯିବୁ, ଏ ପିଲା ତୋର । ମାଆ ମରିଯିବାରୁ ପିଲାକୁ ନେଇ ଦାସୀ ଚାଲିଗଲା ।

୧ମ— ବାପ ପିଲାକୁ ଖୋଜିଲା ନାହିଁ ?

୨ୟ— ସେ ସ୍ତ୍ରୀ ମରିବା ଦେଖି ଅଲକ୍ଷଣା ଛୁଆର ଖବର ନେବା ଦରକାର ମନେକଲେ ନାହିଁ ।

୧ମ— ତା'ପରେ ?

୨ୟ— ଦାସୀଟି ପିଲାକୁ ପାଞ୍ଚ ବର୍ଷ ପାଳିଲା ପରେ ମରିଗଲା ।

୧ମ— ହାୟ କପାଳ ! ତାପରେ—ତାପରେ—ତାପରେ ?

୨ୟ— ପିଲାଟି ରାସ୍ତାରେ ଗଛ ତଳେ ପଡ଼ିଥାଏ । ଅଲକ୍ଷଣା ବୋଲି କେହି କତିକି ଡାକନ୍ତି ନାହିଁ । ଖାଇବାକୁ ଦିଅନ୍ତି ନାହିଁ । ସମସ୍ତେ କହନ୍ତି, ଏ ଯାହା ଘର ମାଡ଼ିବ ତା ବଂଶ ନାଶ ହେବ ।

୧ମ— ଆହା ! ହତଭାଗା ମା ଛେଉଣ୍ଡଟି ନଖାଇ କେମିତି ବଞ୍ଚିଲା ?

୨ୟ— ପ୍ରବାଦ ଅଛି, ଦୁର୍ଗା ଠାକୁରାଣୀ ଏ ପିଲାକୁ ନିତି ଖୁଆଇ ଦେଇ ଯାଆନ୍ତି ।

୧ମ— ଭାଇ, ଯାହାର କେହି ନାହିଁ—ବିଶ୍ୱମାତା ତାକୁ ବଞ୍ଚାନ୍ତି । ତାର ଆଉ ଗତି କଣ ? ଅପୂର୍ବ କଥା ଏ ?

୨ୟ— ଜଣେ ସାଧୁପିଲାଟିକୁ ଦେଖି ଗାଁବାଲାଙ୍କୁ କହିଲେ ମୁଁ ୟାକୁ ନେଇଯିବି ? ଗାଁ ଲୋକେ କହିଲେ ଏ ଅଲକ୍ଷଣାକୁ ନେଲେ ଗାଁର ମଙ୍ଗଳ— ଏଇନେ ନେଇଯାଅ ।

୧ମ— ସେଇ ଗାଁବାଲା କଣ ମଣିଷ ନା ପଶୁ ?

୨ୟ— ମଣିଷ ସେମାନେ—ସବୁ ମୂଳରେ ଭଗବାନ । ତାଙ୍କ ଇଚ୍ଛା ।

୧ମ— ତା'ପରେ କଣ ହେଲା ?

୨ୟ— ସେ କଥା ଠିକ୍ କହି ପାରିବିନି—ମନେ ନାଇଁ । ଗାଁବାଲା ୟାଙ୍କୁ ଦେଖି ଖୁସି ହେଲେ । ଯେତେ ପଣ୍ଡିତ—ସେତେ ରାମଭକ୍ତ । ରାମ ନାମ ୟାଙ୍କ ପାଟିରେ ଲାଗିଥାଏ । ୟାଙ୍କୁ ଦେଖି ଗାଁବାଲା ଘରଦ୍ୱାର କରିଦେଇ ରଖିଲେ । ଏ ବିଭା ହେଲେ ନାହିଁ । ଗାଁ ବାଲା କହି କହି ବିଭାକଲେ ବହୁକଷ୍ଟରେ ।

୧ମ— ଏଇନେ ମନ ଉଡୁନାହିଁ ତ ? ଆନନ୍ଦରେ ଘର କରୁଛନ୍ତି ତ ?

୨ୟ— ହଁ, କେହି କେହି କହନ୍ତି ଏ ଖୁବ୍ ସ୍ତ୍ରୀବଶ ।

୧ମ— ହଉ ଆଉଦିନେ ଆସି ଦୁବେଙ୍କ ସଙ୍ଗେ କଥା କହିବା । (ଉଭୟଙ୍କ ପ୍ରସ୍ଥାନ)

(ଦ୍ୱାର ଖୋଲି ରତ୍ନମାଳା ଅଇଲେ– ଭିତରେ ତୁଳସୀ ଦାସ)

ତୁଳସୀଦାସ—ରତ୍ନମାଳା, ରତ୍ନମାଳା !

ରତ୍ନମାଳା— (ସ୍ୱଗତ) ଉତ୍ତର ଦେବିନି, ଦେଖେଁ କଣ କରିବେ ।

ତୁଳସୀଦାସ—(ଭିତରୁ) ରତ୍ନମାଳା – ହୋ ରତ୍ନମାଳା – ଶବ୍ଦନାହିଁ – ଜବାବ ନାହିଁ –ରତ୍ନ, କୋଉଠିକୁ ଗଲ ?

(ରତ୍ନମାଳାଙ୍କର ନୀରବରେ ଅବସ୍ଥାନ – ତୁଳସୀଦାସଙ୍କ ପ୍ରବେଶ)

ଏଇଠି ବସି ଜବାବ ଦଉନ ତୁମେ ?

ରତ୍ନ — ତମ ପାଖରୁ ତ ଏଇନେ ଆସିଲି – କିଆଁ ପୁଣି ଡାକୁଛ ?

ତୁଳସୀ— ବହୁତ ବେଳ ହେଲାଣି—ତୁମକୁ ଦେଖିନାହିଁ, ସେଇଥିପାଇଁ ଡାକୁଛି ।

ରତ୍ନ — ୟାରି ନାଁ ବହୁତ ବେଳ ?

ତୁଳସୀ— ଦେଖ ରତ୍ନମାଳା, ତୁମକୁ ନ ଦେଖିଲେ ମୋର ଆଖି ଫୁଟିଯାଏ, ପଲକ ପଡ଼େ ନାହିଁ ।

ରତ୍ନ — ଆଛା କୁହ ତ, ତୁମେ ସଦାବେଳେ ମୋ ପଛେ ପଛେ ଗଲେ ତମକୁ ଟିକେ ଲାଜ ମାଡ଼େ ନାହିଁ ?

ତୁଳସୀ— ନା, ଲାଜ ମାଡ଼େ ନାହିଁ । ତମକୁ ଦଣ୍ଡେ ନଦେଖିଲେ ସବୁ ହଜିଗଲା ପରି ମନେହୁଏ ।

ରତ୍ନ — ବିଭାହେବା ଆଗରୁ ଶୁଣିଛି ତୁମେ ସବୁବେଳେ ରାମନାମ କରୁଥିଲ- ବଡ଼ଭକ୍ତ— କୁଆଡ଼େ ପୋଡ଼ିଗଲା ସେ ଭକ୍ତି ?

‥ - ସତରେ ରାମନାମ କରୁଥିଲି, ତାଙ୍କୁ ଭଲ ପାଉଥିଲି, ବିଭାପରେ ତୁମକୁ ଦେଖି ସେ ରାମନାମ ଭୂତ ଛାଡ଼ିଗଲା । ମୋ ହୃଦୟରେ ତୁମେ ବସିଲ ।

ରତ୍ନ — ଦେଖ, ମୋତେ ତୁମେ ଏତେ ଭଲପାଅ, ଏ ମୋର ଭାଗ୍ୟ । ଲୋକାଚାର ପୁଣି ଅଛିତ ? ସବୁବେଳେ ତୁମେ ମୋ ପାଖେ ପାଖେ ଥିବାରୁ ପଡ଼ିଶାଘର, ଗାଁ ବାଲୀ ମୋ ପାଖକୁ ଆସନ୍ତି ନାହିଁ । ବାଟରେ ମୋତେ ଦେଖି ଟାପରା କରି ହସନ୍ତି । ଏଗୁରା କଣ ଭଲ ?

ତୁଳସୀ— ବାହାରେ କଣ ଦେଖୁଛ ? ଭିତର କଥା ଶୁଣିବ ? ସନ୍ଧ୍ୟା କରି ବସି ବିଷ୍ଣୁନାମ କଲେ ରତ୍ନମାଳା ନାମ ତୁଣ୍ଡରେ ଆସେ । ସକାଳେ ଗାୟତ୍ରୀ କଲେ ଗାୟତ୍ରୀକୁ ମୋରି କହି ଧ୍ୟାନ କଲାବେଳେ ତୁମରି ରୂପ ଦେଖେ । ରାମଚନ୍ଦ୍ରଙ୍କୁ ଧ୍ୟାନ

କଲାବେଳେ ତୁମରି ବସିବା ରୂପ ଦେଖେ—ନିଦରେ ରତ୍ନମାଳା ସ୍ୱପ୍ନ ଦେଖେ—ମୋର ଜପମନ୍ତ୍ର ରତ୍ନମାଳା, ଧ୍ୟାନର ଦେବୀ ରତ୍ନମାଳା ।

ରତ୍ନମାଳା— (ବେକରେ କାନିଦେଇ ପ୍ରଣାମ କରି) ତମର ଏପରି ସ୍ନେହରେ ମୋ ମାଇପି ଜୀବନ ସାର୍ଥକ – ମୁଁ ଭାଗ୍ୟବତୀ ସନ୍ଦେହ ନାହିଁ; ତେବେ ଏତେ ଗୁରାଏ ଭଲକଥା ନୁହଁ । ଲୋକେ ତୁମକୁ ମାଇଚିଆ କହନ୍ତି, ଜାଣତ ?

ତୁଳସୀ ଦାସ— ତୁଳସୀ କତିରେ ଜଗତ ନାହିଁ, ଲୋକ ନାହିଁ, ଅଛଇ କେବଳ ରତ୍ନମାଳା ।

ରତ୍ନ – ମୁଁ ଯଦି ମରିଯାଏ ?

ତୁଳସୀ— ମୁଁ ବି ମରିବି !

(ଶିବରାମ ଆସି ଦୁହିଙ୍କୁ ପ୍ରଣାମ କଲା)

ତୁଳସୀ— କି ଶିବରାମ, ଭଲ ଅଛ ?

ଶିବ— ହଁ ।

ରତ୍ନ – ହଇରେ ବାପା ବୋଉ ଘରେ ଭଲ ଅଛନ୍ତି ତ ?

ଶିବ— ହଁ ଅପା ।

ତୁଳସୀ— ହଠାତ୍ କଣ ଭାବି ଆସିଲୁ ?

ଶିବ— ମା ବାପା ବଡ଼ ବ୍ୟସ୍ତ, ଅପା ୪/୫ ବର୍ଷହେବ ଆମ ଘରକୁ ଯାଇନାହିଁ । ତାକୁ ମୋ ସଙ୍ଗେ ପଠାଇବାକୁ ଖବର ଦେଇଛନ୍ତି ।

ତୁଳସୀ— ବଡ଼ ବିଷମ କଥା କହିଲୁ, ଶିବ ! ତୋ ଅପାକୁ ପଠାଇଲେ ମୁଁ ଯେ ଦଣ୍ଡେ ବଞ୍ଚି ପାରିବି ନାହିଁ ।

ଶିବ— ମୋତେ ୪/୫ ଦିନ ରହି ପଛକେ ଆସିବ । ମୁଁ ଛାଡ଼ି ଦେଇଯିବି ତମ ପାଖେ ।

ତୁଳସୀ- ତୋର ତ ଭାରିଯା ନାହିଁ, ତୁ କଣ ବୁଝିବୁ ? ୪/୫ ଦିନ ଦୂରକଥା, ବେଳାଏ ଛାଡ଼ିଲେ ମୁଁ ବଞ୍ଚିପାରିବି ନାହିଁ ।

ରତ୍ନ – ମୋ ବାପା ବୋଉଙ୍କୁ ୪/୫ ବର୍ଷହେବ ଦେଖିନାଇଁ । ତିନିଦିନ ପାଇଁ ମୋତେ ଛାଡ଼ । ମୋର ମନ ଖରାପ ହେଉଛି, ଯାଇ ସମସ୍ତଙ୍କୁ ଦେଖିଆସେ । ତମର ବାପ ମା ନାହାନ୍ତି ବୋଲି ତମେ ନିଶ୍ଚିନ୍ତ ରହିଛ ।

ତୁଳସୀ— ତିନିଦିନ କଣ କହୁଛ, ମୁଁ ଘଣ୍ଟାକ ପାଇଁ ବି ତୁମକୁ ଛାଡ଼ି ନପାରେ । ଆଖି ଆଢୁଆଳରେ ମୋର ତୁମେ ରହି ପାରିବ ନାହିଁ ।

ରତ୍ନ— ଯେତେଥର ମା ଲୋକ ପଠାଇଛନ୍ତି, ତୁମେ ମୋତେ ବାପଘର ପଠାଇନାହଁ । ତୁମ ଗୋଡ଼ ଧରୁଛି ଅନୁମତି ଦିଅ ।

ତୁଳସୀ— ରତ୍ନମାଳା, ଏ କଥା ଛାଡ଼ି ତୁମେ ଆଉ ଯେଉଁକଥା କହିବ, ତା ମାନିବି । (ଶିବ ଦୁହିଙ୍କୁ ପ୍ରଣାମ କଲା)

ଶିବ— ତେବେ ଭାଇନା, ମୁଁ ଯାଉଛି ।

ତୁଳସୀ— ଖିଆପିଆ ସାରି ପଛକୁ ଯିବୁ ସିନା, ଏଇକ୍ଷିଣା କେମିତି ଯିବୁ ?

ଶିବ— ନା, ମୁଁ ରହିପାରିବି ନାହିଁ ।

ତୁଳସୀ— ରାଗ ନାହିଁ, ତୁମ ଭାଇ ଚାଲିଯାଉଛି ଯେ, ତାକୁ ଡାକି ଘରକୁ ଆଣ । (ତୁଳସୀ ଦାସ ଘରେ ପଶିଲେ)

ରତ୍ନ— ଦେଖ ଶିବ, ତୁ ପରଦିନ ସକାଳେ ଅଇଲେ ମୁଁ ଲୁଚିକରି ତୋ ସାଙ୍ଗରେ ଚାଲିଯିବି । ଘରେ ସେତେବେଳେ ଏ ନଥିବେ । କୁହାବୋଲାରେ ଫଳ ହେବ ନାହିଁ, କହିଲେ ବୋଇଲେ ସେ ପଠାଇବେ ନାହିଁ । ଆ, ଜଳଖିଆ ଖାଇବୁ । (ପ୍ରସ୍ଥାନ)

## ତୃତୀୟ-ଦୃଶ୍ୟ

(ତୁଳସୀ ଦାସଙ୍କ ଶ୍ୱଶୁରଘର- ଅନ୍ତଃପୁରରେ ରତ୍ନମାଳା ଓ ଚପଳା)

ଚପଳା— ଦେଖ ରତ୍ନ, ଏତେଦିନ ପରେ ତୁମକୁ ଦେଖି ମୁଁ ବଡ଼ ସୁଖୀ । ତୁମେ ସ୍ୱାମୀଘରେ ଏତେକାଳ ରହିଲ, ମୁଁ ତମ ମନେ ପଡୁନଥିଲି ?

ରତ୍ନ— ମନେ ପଡ଼ିଲେ କଣ ହେବ, ସେତ ଦଣ୍ଡେ ନଦେଖିଲେ ଘଡ଼ିକେ ବଣା— ଆଖି ଆଢୁଆଳରେ ମୋତେ ରଖିବେ ନାହିଁବୋଲି ମାଆ ଯେତେଥର ଖବର ଦିଅନ୍ତି, ମୋତେ ପଠାନ୍ତି ନାଇଁ ।

ଚପଳା— ଯାହା କହ ତୁମ ଭାଗ୍ୟ ଭଲ । ମିଣିପିଙ୍କ ମନ ଭାରି ଚଞ୍ଚଳ, ସେମାନେ ଭାରିଯାକୁ ସବୁଦିନ ସ୍ନେହରେ ରଖି ଚଳନ୍ତି ନାହିଁ । ଘଡ଼ିକେ ମନ ସେମାନଙ୍କର ଆନ ହୋଇଯାଏ ।

ରତ୍ନ— ମୁଁ ଯେ ଭାଗ୍ୟବତୀ, ତହିଁରେ ସନ୍ଦେହ ନାହିଁ; କିନ୍ତୁ ଏ ଭାଗ୍ୟ ସୀମା ଟପି ଯାଉଛି । ସବୁବେଳେ ମୋ ପଛେ ପଛେ ସେ ଚାଲୁଥାନ୍ତି, ସେଥିପାଇଁ ମୋ ଘରକୁ କୋଉ ମାଇପେ ଆସନ୍ତି ନାହିଁ । ମୁଁ ନଈକୁ ଗାଧୋଇ ଗଲେ, ସେ ମୋ ପଛେ ପଛେ ଆସି ଜଗନ୍ତି । ମୁଁ ଲୁଚିକରି ପଳେଇଅଇଲି । ଜାଣିଥିଲେ ମତେ ସେ ଛାଡ଼ିନଥାନ୍ତେ । କୋଉଠିକି କାମରେ ଗଲେ ରାତିରେ ଫେରିବେ କହି । ସେହି ସୁଯୋଗ ଦେଖି ମୁଁ ଶିବ ସଙ୍ଗେ ପଳେଇ ଅଇଲି ।

ଚପଳା— ଘରକୁ ଆସି ତୁମକୁ ନ ଦେଖି ସେ କଣ କହିବେ ?

ରତ୍ନ— କୌଣସି ପ୍ରକାରେ ରାତିଟି କଟାଇ ସକାଳେ ଏଠି ଆସି ହାଜର ହେବେ ।

ଚପଳା— ତୁମେ କିନ୍ତୁ ତାଙ୍କ ମତ ନନେଇ ଚାଲି ଆସି ଭଲ କରିନା । ଘରେ ତୁମକୁ ନଦେଖି ତାଙ୍କ ମନ କଷ୍ଟ ହେବ ନାଇଁ ନା ?

ରତ୍ନ— ଯା ହେଲେ ହଉ । ଚାରି ପାଞ୍ଚବର୍ଷ ଜନମ ଥାନକୁ ଆସି ପାରିନଥିଲି, ବାପା ମା କେତେଦିନ ଆଉ ବଞ୍ଚିବେ ? ମୁଁ ରହି ପାରିଲି ନାହିଁ । ସ୍ୱାମୀ ହେଉ ଯେ ହେଉ, ଯୋଉଟା ରହି ସହି ସୀମା ଭିତରେ ଚଳେ, ତା ସବୁଆଡୁ ଭଲ । ତାଙ୍କର ଅତି ପ୍ରେମରେ ମୁଁ ଅସ୍ଥିର ହୋଇ ପଡୁଛି । ଅତି ଲେମ୍ବୁ ଚିପୁଡ଼ିଲେ ପୀତା ଲାଗେ (ଦୂର-ଦାଣ୍ଡଦ୍ୱାରୁ) ଶିବରାମ—ଶିବରାମ—

ଚପଳା— କିଏ ଡାକୁଛି ?

ରତ୍ନ— ହେଇଟି ଦେଖ—ମୋ କଥା ନସରୁଣୁ ସେ ପରା ପଳାଇ ଅଇଲେଣି ? (ପଛରୁ କବାଟ ଖୋଲି)

ଶିବ— ଆସନ୍ତୁ, ଆସନ୍ତୁ ଭାଇନା । (ଶିବରାମ ସଙ୍ଗେ ତୁଳସୀଙ୍କ ପ୍ରବେଶ) ଅପା, ଭାଇନା ଆସିଛନ୍ତି ।

ରତ୍ନ— ତାତ ଦେଖୁଛି । (ପ୍ରଣାମ କରଣ)

ଚପଳା— ଚିହ୍ନୁଛନ୍ତି ମତେ ତ ? ତୁମ ବିଭାପରେ ଆଉ ତ ଦେଖାହୋଇନାହିଁ—

ତୁଳସୀ— ଭାବୁଛି, ତୁମେ ବଡ଼ ନୁଆବୋଉ ।
(ପ୍ରଣାମ କରିବାକୁ ଉଦ୍ୟତ)

ଚପଳା— ଥାଉ ଥାଉ, ଆପଣ ସାଧୁ ବ୍ରାହ୍ମଣ—ମତେ ପ୍ରଣାମ କଣ କରୁଛନ୍ତି ?

ରତ୍ନ— ଖିଆ ପିଆ ହୋଇ ନାହିଁତ ?

ତୁଳସୀ— ଖାଇବା—ହୁଁଃ !

ରତ୍ନ— ତାଙ୍କ ମୁହଁ ଦେଖି ବୁଝୁନ ? ଦିନଯାକ ଉପାସିଆ ପଡ଼ିଛନ୍ତି । ଯାଅ ଚଞ୍ଚଳ ଜଳଖିଆ ଆଣ, ଶିବ, ଭାଇଙ୍କୁ ଗୋଡ଼ ହାତ ଧୋଇବାକୁ ପାଣିଦେ— ମାଙ୍କୁ କହିଦେ । (ଚପଳା ଓ ଶିବରାମଙ୍କ ପ୍ରସ୍ଥାନ)

ତୁଳସୀ— ଭଲ ପିଲାଟିଏ ତ ତୁମେ ?

ରତ୍ନ— ମୁଁ ଭଲ ପିଲା ନା ତୁମେ ଭଲ ପିଲା ?

ତୁଳସୀ— ତମକୁ ଛାଡ଼ି ଦଣ୍ଡେ ନରହିବା କଥା ଜାଣ— ପୁଣି ମତେ ନକହି ଚାଲିଅଇଲ ?

ରତ୍ନ— ତୁମେ ରାଜାପୁରେ ପହଞ୍ଚିଲ କେତେବେଳେ ?

ତୁଳସୀ— ସନ୍ଧ୍ୟା ବେଳେ ଘରକୁ ଆସି ଦେଖେ, ଘର କିଟି କିଟି ଅନ୍ଧାର—ମଶାଣୀ ଭଳି ଘରଟା ହାଁ ହାଁ ଖାଁ ଖାଁ କରୁଛି । ତମକୁ ଚାରିଆଡ଼େ ଖୋଜିବା ଦେଖି ଗେହ୍ଲି

ଚାକରାଣୀ କହିଲା, ଭାଇ ସଙ୍ଗେ ତମେ ବାପ ଘରକୁ ଗଲଣି ଚାଲି । ଶୁଣି ମୋ ମୁଣ୍ଡରେ ବଜ୍ର ପଡ଼ିଲା—ଛାତି ଫାଟିଗଲା ଭଳି ଲାଗିଲା— ମୁଣ୍ଡ ବୁଲାଇଲା । ଦୁଇ ହାତରେ ଛାତି ଚିପି ବସିଗଲି—ସବୁ ଶୂନ୍ୟ, ଅନ୍ଧାର । ଦାସୀ କହିଲା ମାଆ ତୁମ ପାଇଁ ରନ୍ଧାବଢ଼ା କରି ରଖି ଯାଇଛନ୍ତି । ହାତପାଦ ଧୋଇ ବସି ଖାଇଦିଅ । ଖାଇବ କିଏ ? ତୁଳସୀ ଦେହ ସେଠି ମାଟି ପିଣ୍ଡ—ଆତ୍ମା ନଥିଲା । ମୁଁ ସେଇ ଧୂଳି ଧୂସର ଗୋଡ଼ରେ ତୁମ ପାଖକୁ ଦୌଡ଼ି ଦୌଡ଼ି ଅଇଲି । ଗେହ୍ଲି ଯେତେ କହିଲା, ଶୁଣୁଚି କିଏ ? ରାଜାପୁରଠୁଁ ଏତେ ବାଟ ମୁଁ ରତ୍ନମାଳା ରତ୍ନମାଳା ଜପ କରି କରି ଧାଇଁଛି । କି ନିଷ୍ଠୁର ତୁମେ, କି କଠିନ ହୃଦୟ ତୁମର ! ତୁମକୁ ନଦେଖି ମୁଁ କି ଅବସ୍ଥାରେ (ତଣ୍ଟିରୁନ୍ଧି ହୋଇଗଲା) ପଡ଼ିବି ଭାବିଲି ନାହିଁ ? ଅନୁଗତ ଲୋକପ୍ରତି ଇମିତି ବେଦରଦୀ ଭାବ । (ତୁଳସୀ କାନ୍ଦିବା)

ରତ୍ନ— ତୁମେ ମୋର ସ୍ୱାମୀ— ପରମଗୁରୁ । ତମକୁ ଲୁଚାଇବାର କିଛି ନାଇଁ, କିନ୍ତୁ ଆଜି ନ କହି ରହିପାରୁନାହିଁ । ଏଇ ହାଡ଼ମାଉଁସ ପଞ୍ଜରା ପଚାସଢ଼ା ଦୁର୍ଗନ୍ଧ ନାରୀଦେହ—ଏ ଦେହପ୍ରତି ତୁମର ଏତେ ଅନୁରାଗ । ଏକାବେଳେ କାଣ୍ଡଜ୍ଞାନ ଶୂନ୍ୟ ପାଗଳ ହୋଇଗଲ ତୁମେ ? ମରିବ କି ବଞ୍ଚିବ ତୁମର ଜ୍ଞାନ ନାଇଁ— ପଛେ ପଛେ ଦୌଡ଼ି ଆସିଲ ? ଇମିତି ଅନୁରାଗ ମୋଠି ତୁମର ? ଏଭଳି ମମତା, ଅନୁରାଗର ଶହେ ଭାଗରୁ ଭାଗେ ଯଦି ରଘୁନାଥଙ୍କ ପ୍ରତି ତୁମର ହୁଅନ୍ତା, ତାହାହେଲେ ଇହଲୋକ ପରଲୋକରେ କୃତାର୍ଥ ହୋଇଯାଆନ୍ତ । ଧିକ୍ ତୁମକୁ, ଛି ଛି ।

(ତୁଳସୀ ବାହୁରେ ଛାତି ବାନ୍ଧି କିଛିକ୍ଷଣ ଠିଆହେଲେ)

ତୁଳସୀ— ସତେ ତ !
ଏକି ପ୍ରହେଳିକା !
ଏକି ମାୟାନିଦ ଘୋର !
କେଣେ ଛୁଟିଅଛି ମୁହିଁ ଉନ୍ମାଦ ପରାୟ ?
ରାମ ରାମ, କୃପାମୟ
ଅପାର କରୁଣା ତବ ।
କଲ ଅପସୃତ ଅନ୍ଧ ଯବନିକା
ନୟନରୁ ମୋର । କାହିଁ, କାହିଁ ତୁମେ,
କିପରି ପାଇବି ଦର୍ଶନ ତୁମର !
ଦେବି, ଗୁରୁ ଦେଖାଇଲ ପଥ ମୋତେ
ଘୁଞ୍ଚାଇଲ ଅଜ୍ଞାନ ଅନ୍ଧାର ।
ଉନ୍ମିଳୀତ କରିଦେଲ ଲୋଚନ ଯୁଗଳ ।

ତବ ମହାଦାନେ ଋଣୀ ମୁହିଁ—
ପ୍ରତିଦାନ କରିବାର ନାହିଁ କିଛି ମୋର ।
ନିଅ ଦେବୀ, ନିଅ ଗୁରୁ, ପ୍ରଣାମ ମୋହର ।
(ତୁଳସୀ ରତ୍ନମାଳାକୁ ପ୍ରଣାମ କରିବାକୁ ଉଦ୍ୟତ ।)

ରତ୍ନ— (ଘୁଞ୍ଚିଯାଇ) ଏ କଣ— ଏ କଣ ? ମୁଁ ଯେ ତମ ସ୍ତ୍ରୀ ! ମୋତେ ପ୍ରଣାମ କରିବାକୁ ଆସୁଛ କାହିଁକି ?

ତୁଳସୀ— ନୁହେଁ ଦେବି ପତ୍ନୀ ମୋର ଆଜି,
ଯେଉଁ ପଥ ଦେଖାଇଲ ମୋତେ,
ସେହି ପଥ ପ୍ରଦର୍ଶକ ଦୁର୍ଲ୍ଲଭ ଜଗତେ ।
ଗୁରୁ, ଗୁରୁ ତମେ, ନିଅ ନମସ୍କାର ।
କାହିଁ ରାମ—କେଣେ ରାମ—
କିପରି ସେ ରାମକୁ ମୁଁ ପାଇବି ଦର୍ଶନ ?

(ବେଗେ ପ୍ରସ୍ଥାନ)

ରତ୍ନ— ଇଗୋ— କୁଆଡ଼େ ପଳାଉଛ ? ଆରେ ଶିବ ରାମ, ତୋ ଭାଇନା କୁଆଡ଼େ ପଳାଉଛନ୍ତି ଦେଖ । ଆଗୋ ନୂଆବୋଉ, କି ସର୍ବନାଶ କରିଦେଲି— ନିଜ ହାତରେ ଜିହ୍ବା ନିଜେ ଛେଦିଲି-କାହିଁକି ମରିବାକୁ ଏ ସବୁ କଥା କହିଲି— ଦେଖେଁ—ଦେଖେଁ—କେତେଦୂର ଗଲେ—କୁଆଡ଼େ ଗଲେ ଚାଲି । (ପ୍ରସ୍ଥାନ)

## ଚତୁର୍ଥ ଦୃଶ୍ୟ

(କାଶୀଧାମ— ଅସୀର ତୀର)

(ତୁଳସୀ ଦାସ ତାଳ ନେଇ ପ୍ରଭାତୀ ଗାଉଛନ୍ତି)

ଜାଗିୟେ କୃପାନିଧାନ ପଞ୍ଛୀଗଣ ବୋଲେ ।
ଶଶୀକି କିରଣ ମନ୍ଦଭୟୀ-ଚକଇ ପିୟା ମିଲାନଗୟୀ
ତ୍ରିବିଧ ମନ୍ଦ ଚଲତ ପବନ ପଲ୍ଲବ ଦ୍ରୁମ ଡାଲେ
ପ୍ରାତର୍ଭାନୁ ପ୍ରଗଟ ଭୟୋର ଜନୀକେ ତିମିରେ ଗୟୋ,
ଭୃଙ୍ଗକରତ ଗୁଞ୍ଜଗାନ କମଲମ ଦଲ ଖୋଲେ ।
ତୁଳସୀଦାସ ଅତି ଆନନ୍ଦ ନିରଖିୟେ ମୁଖାରବିନ୍ଦ,
ଦୀନନକୋ ଦେତ ଦାନଭୂଷଣ ବାହୁ ମୋଲେ ।

(ଗୀତାନ୍ତେ ପ୍ରସ୍ଥାନ)

(ନାଗରିକ ଦ୍ୱୟ ପ୍ରବେଶ)

୧ମ— ଏ କିଏ ଭାଇ ?

୨ୟ— ୟାଙ୍କ ନାଁ ତୁଳସୀ ଦାସ, ଖୁବ୍ ରାମଭକ୍ତ, କେବଳ ରାମ ରାମ କହନ୍ତି । ପ୍ରକୃତି ବି ବଡ଼ ଶାନ୍ତ ।

୧ମ— ୟାଙ୍କ ଘର କୋଉଠି ?

୨ୟ— ସାଧୁମାନଙ୍କ ଘରେ । ତାଙ୍କ ସାଙ୍ଗରେ ରହିଥାଏ ।

୧ମ— କେତେଦିନ ହେଲା କାଶୀରେ ଅଛନ୍ତି ?

୨ୟ— ପ୍ରାୟ ବର୍ଷେ ବିତିଲା । ମୁଁ ତାଙ୍କଭଳି ଏମିତି ଲୋକ ଆଉ ଦେଖିନାହିଁ । କାହାକୁ ରାଗନ୍ତି ନାହିଁ—ଚିଡ଼ଚିଡ଼ ହୁଅନ୍ତି ନାହିଁ—ଅନ୍ୟ ବାବାଜୀଙ୍କ ଭଳି । ସଭିଙ୍କ ସାଙ୍ଗରେ ମିଠାକଥା କହନ୍ତି । କାଶୀର ବହୁତ ବଡ଼ ପଣ୍ଡିତ, ଆଉ ଭକ୍ତମାନେ ୟାଙ୍କୁ ମାନନ୍ତି, ଭକ୍ତି ଖୁବ୍ କରନ୍ତି ।

୧ମ— ଆଚ୍ଛା, ଏଇନେ କାଶୀରେ ସବୁଠୁଁ ବଡ଼ ପଣ୍ଡିତ ଆଉ ବଡ଼ ସାଧୁ କିଏ ଅଛନ୍ତି କହିଲ ?

୨ୟ— ଶ୍ରୀମଦ୍ ମଧୁସୂଦନ ସରସ୍ୱତୀ—ଯେଡ଼େ ବଡ଼ ପଣ୍ଡିତ ତେଡ଼େ ବଡ଼ ସାଧୁ— ଅଦ୍ୱୈତବାଦୀ ସାଧୁ ।

୧ମ— ଅଦ୍ୱୈତବାଦ କାହାକୁ କହନ୍ତି ଭାଇ ?

୨ୟ— ବ୍ରହ୍ମ ସତ୍ୟ, ଜଗତ ମିଥ୍ୟାକୁ । ଅନ୍ଧାରରେ ଯେପରି ଦଉଡ଼ିକୁ ସାପ ଭ୍ରମ ହୁଏ, ସେପରି ବ୍ରହ୍ମରେ ଜଗତ ଭ୍ରମ ହୁଏ । ଶାସ୍ତ୍ର ମନନ କଲେ ଓ ଶୁଣିଲେ ଆତ୍ମଜ୍ଞାନ ହୁଏ । ବ୍ରହ୍ମୋସ୍ମି— ମୁଁ ବ୍ରହ୍ମ । ଏହି ଭାବରେ ସ୍ଥିତି ଲଭିଲେ ସେ ଅବସ୍ଥାକୁ ଜୀବନ୍ମୁକ୍ତ ଅବସ୍ଥା କହନ୍ତି । ଅଦ୍ୱୈତବାଦୀ ଜୀବିତ କାଳରେ ଜୀବନ୍ମୁକ୍ତ ଓ ମରଣପରେ ସଦ୍ୟ ମୁକ୍ତି ଲଭନ୍ତି ।

୧ମ— ଏ ସବୁ ମୋ ମୁଣ୍ଡରେ ପଶିବ ନାହିଁ । ଏହାଙ୍କ କଥା କଣ ?

୨ୟ— କେହି ୟାଙ୍କ ସଙ୍ଗେ ବିଚାରରେ ପାରନ୍ତି ନାହିଁ । ୟାଙ୍କ ନିକଟକୁ ଯେ କେହି ଆସିଲେ ଯୁକ୍ତି ତର୍କରେ ପରାସ୍ତ ହୁଅନ୍ତି । ଏପରି ଶହ ଶହ ପଣ୍ଡିତ ୟାଙ୍କ ଦ୍ୱାରା ଅପମାନିତ ଓ ଦୁଃଖିତ ହୋଇ ଫେରନ୍ତି । ଦିନେ ଜଣେ ଲଙ୍ଗୁଳୀ ବାବାଜୀ ପରମହଂସ ସ୍ୱାମିଜୀଙ୍କ କତିକି ଅଇଲେ । ଏ ତାଙ୍କୁ ସ୍ୱାଗତ ସତ୍କାର କଲାପରେ ସେ ୟାଙ୍କୁ କହିଲେ— ସ୍ୱାମିଜୀ ! ଆପଣ ତ ଅସଙ୍ଗ ହୋଇଛନ୍ତି । ଆଚ୍ଛା ! ଆପଣ ଛାତିରେ ହାତ ରଖି କହନ୍ତୁ ଭଲା ଏ ସବୁ ପଣ୍ଡିତ ବିଦ୍ୱାନମାନଙ୍କୁ ଜୟକରି ଆପଣଙ୍କ ମନରେ ଅଭିମାନ ହୁଏ କି ନା ?

୧ମ— (ଇତସ୍ତତଃ ଦୃଷ୍ଟି ପକାଇ)

୨ୟ— ତୁମେ ଏମିତି ହେଉଚ କିଆଁ ?

୧ମ— କିଜାଣି । ଏଠି ମୋ ଦିହ ଝିମ୍ ଝିମ୍ ହେଇ ଯାଉଚି ।

୨ୟ— ଏଇ ଗଛଟାରେ ଭୂତ ଥିବା କଥା ଅନେକଙ୍କଠୁଁ ଶୁଣିଛି— ବହୁତ ଲୋକ ଭୂତ ଦେଖିଛନ୍ତି ବି ।

୧ମ— ସତେ ନା ? ମୁକ୍ତିକ୍ଷେତ୍ର କାଶୀରେ ପୁଣି ଭୂତ କାହିଁକି କିପରି ରହିଲା ?

୨ୟ— ଏପାଖ ହେଲା କାଶୀର ଦକ୍ଷିଣ ତୀର—ଭୂତଟା ମହାପାପୀ ପୁଣି ମହା ପୁଣ୍ୟବାନ ।

୧ମ— ଦି ପ୍ରକାର କେମିତି ହେଲା ?

୨ୟ— ମହାପାପ ଫଳରେ ଭୂତ ହୋଇଛି ଓ ମହା ପୁଣ୍ୟ ଫଳରୁ କାଶୀଧାମ କତିରେ ଅଛି ।

୧ମ— ଆଚ୍ଛା, ତା' ପରେ ତୁମେ କହ ।

୨ୟ— ଯଦି କହେ, ତେବେ ସେମାନଙ୍କୁ ଦୁଃଖ ଦେବା ପାପ ତୁମକୁ ଲାଗିବ । ଯଦି ଅନ୍ୟ କେହି ଏ କଥା କହିଥାନ୍ତି— ସ୍ୱାମିଜୀ ହସି ଉଡ଼ାଇ ଦେଇଥାନ୍ତେ । କିନ୍ତୁ ପରମହଂସଙ୍କ କଥାରେ ସେ ପ୍ରଭାବିତ ହୋଇଗଲେ—ମୁହଁଟା ଝାଉଁଳିଗଲା । ସେଉଠୁ ସେ ପରମହଂସ କହିଲେ—ଭାଇ, ପୁସ୍ତକ ପାଣ୍ଡିତ୍ୟ ଆଉ ଯୁକ୍ତିର ପ୍ରାବଲ୍ୟ ବଡ଼ ବିକ୍ଷେପ । ଭଗବତ ଉପାସନା କରି ଏମାନଙ୍କୁ ନଷ୍ଟ କରି ନଦେଲେ ଭଗବତ ରସାନୁଭୂତି ହୁଏନା । ସେଉଠୁ ସ୍ୱାମିଜୀ ତାଙ୍କ ପାଦତଳେ ପଡ଼ି ମନ୍ତ୍ର ପ୍ରାର୍ଥନା କଲେ । ସେ ତାଙ୍କୁ କୃଷ୍ଣ ମନ୍ତ୍ରଦେଇ ଉପାସନା ପ୍ରଣାଳୀ କହିଦେଲେ । ଉପଦେଶ ଦେଲେ, ତୁମେ ଯଦି ଶ୍ରଦ୍ଧା, ବିଶ୍ୱାସରେ କୃଷ୍ଣମନ୍ତ୍ର ଉପାସନା କର, ତେବେ ତିନିମାସ ଭିତରେ ଭଗବାନ ଶ୍ରୀକୃଷ୍ଣଙ୍କ ଦର୍ଶନ ଲାଭ କରିବ । ସ୍ୱାମିଜୀ ପରମହଂସଙ୍କ ନିର୍ଦ୍ଦେଶରେ ଉପାସନା କରି ସଫଳ ନହେବାରୁ କାଶୀ ଛାଡ଼ି ଚାଲିଗଲେ ।

୧ମ— ପରମହଂସ ଅସାଧାରଣ ଲୋକ । ନହେଲେ ଏତେ ବଡ଼ ପଣ୍ଡିତକୁ ଏକା କଥାକେ କାବୁ କରି ପାରିଥାନ୍ତେ କି ? ତାପରେ କଣ କହ ।

୨ୟ— ସ୍ୱାମିଜୀ କାଶୀରୁ କପିଳଧାରା ପାଖରେ ଯାଇ ରହିଲେ । ଦିନେ ଗୋଟାଏ ନୀଚ ଲୋକକୁ ଦେଖିଲେ । ସେ କହିଲା— ସ୍ୱାମିଜୀ, ଲୋକେ ଭଗବାନଙ୍କୁ ପାଇବା ପାଇଁ ଜନ୍ମ ଜନ୍ମ ଧରି ଉଗ୍ର ତପ କରି ପାଉନାହାନ୍ତି । ଆଉ ଆପଣ ତିନିମାସରେ ଘବଡ଼ାଇ ଗଲେ ?

୧ମ— ଆରେ ସେ କିମିତି ଜାଣିଲେ ? ବଡ଼ ଆଶ୍ଚର୍ଯ୍ୟ କଥା ତ !

୨ୟ— ସ୍ୱାମିଜୀ ଭାବିଲେ ନୀଚ ଲୋକ ମୋ ସାଧନା କଥା କିମିତି ଜାଣିଲା ? ସେ ତାଙ୍କ ପାଦତଳେ ପଡ଼ି ଉଠି ଦେଖିଲେ ତାଙ୍କ ଗୁରୁ ପରମହଂସ । ସେ କହିଲେ ଏଥର ପ୍ରେମ ସହିତ ତାଙ୍କର ସେବା ଉପାସନା ଜପ ପୂଜା ଧ୍ୟାନ କର । ନିଶ୍ଚୟ ତାଙ୍କ ଦର୍ଶନ ପାଇବ । ସେ ଫେରିଆସି ସାଧନା କରି ଭଗବାନ ଶ୍ରୀକୃଷ୍ଣ ଚନ୍ଦ୍ରଙ୍କ ଦର୍ଶନ ପାଇଲେ । ସେ ଏ ପଣ୍ଡିତକୁ ଗୀତାର ଟୀକା ଲେଖିବାକୁ ଆଦେଶ ଦେଲେ ।

୧ମ— ସେ କେଉଁଠି ଥାନ୍ତି ? ଚାଲ ଭାଇ ତାଙ୍କୁ ଦେଖି ଆସିବା । (ଉଭୟଙ୍କ ପ୍ରସ୍ଥାନ)

(ରାମ ରାମ ରାମ ରାମ କହି ଢାଳ ହାତରେ ତୁଳସୀଦାସଙ୍କ ପ୍ରବେଶ ଗଛମୂଳେ ପାଣିଦେବା— ଗୋଟିଏ ଭୂତର ଆବିର୍ଭାବ)

ଭୂତ— ଭକ୍ତବର, ନିତି ତୁମ ଦବା ପାଣି ପିଇ ମୁଁ ତୁଷ୍ଟ ହୋଇଛି— ବର ପ୍ରାର୍ଥନା କର ।

ତୁଳସୀ— କିଏ ତୁମେ ? କଣ ପାଇଁ ପ୍ରେତଯୋନି ପାଇଛ ? ରାମ ରାମ ରାମ ।

ଭୂତ— ହେ ଭକ୍ତ ! ମୋ କଥା ଶୁଣ । ପୂର୍ବେ ମୁଁ ବିନ୍ଧ୍ୟଦେଶ ରାଜାଙ୍କ ପୁରୋହିତ ଥିଲି । ଲୋଭୀ ସଦ୍‌କର୍ମହୀନ ସାଧୁଦ୍ୱେଷୀ ପରନିନ୍ଦୁକ ମୋ ପରି କେହି ଜଣେ ନଥିଲେ । ରାଜା ବ୍ରାହ୍ମଣମାନଙ୍କୁ ଧନ ଦାନ କରନ୍ତି । ମୁଁ ସେମାନଙ୍କୁ ଅଳ୍ପ ଦେଇ ସବୁ ଖାଇଯାଏ । ମୋ ଦ୍ୱାରକୁ କେହି ପାଣି ମୁନ୍ଦିଏ ମାଗି ଆସିଲେ ମୁଁ ସେମାନଙ୍କୁ ଦୂର୍ ଦୂର୍ ମାର ମାର କରି ତଡ଼ିଦିଏ । ସେଥିପାଇଁ ମୁଁ ସବୁବେଳେ ଶୋଷୀ ହୋଇ ରହେ । ଆପଣଙ୍କ ପାଣି ମୋର ଶୋଷ ମାରିଛି ।

ତୁଳସୀ— ତୁମ୍ଭେ ଏଠିକି କିମିତି ଅଇଲ ?

ଭୂତ— ଦିନେ ରାଜା କାଶୀ ଯାଉଥିଲେ, ମୁଁ ତାଙ୍କ ସଙ୍ଗରେ ଥିଲି । ମନଥିଲା ରାଜା କାଶୀରେ ଦାନ ଦେଲେ, ମୁଁ ପାଇବି— ସେଥିପାଇଁ କାଶୀ ଆସିଥିଲି ।

ତୁଳସୀ— ତା ପରେ ?

ଭୂତ— ବାଟରେ ମୋତେ ସାପ ମାରିବାରୁ ମରିଗଲି । ମତେ ନବାକୁ ଯମଦୂତମାନେ ଅଇଲେ । ତାଙ୍କୁ ଭୀମବିନାୟକ କହିଲେ, ଏ ଲୋକ ଯେଡ଼େ ପାପୀ ହେଲେ ବି ଯେତେବେଳେ କାଶୀ ଯିବ ଭାବି ଘର ଛାଡ଼ିଛି, ସେତେବେଳେ ତାକୁ ନରକକୁ କେହି ନେଇପାରିବେ ନାହିଁ । ତା ଉପରେ ତୁମର ଅଧିକାର ନାହିଁ । ଏ ମହାପାପୀ ଭୋକ ଶୋଷରେ କାତର ହୋଇ କାଶୀ ବାହାରେ ରହି କାଳଭୈରବ ଦେଉଥିବା ଦଣ୍ଡ ଭୋଗକରୁ । ଏ ରାମଭକ୍ତ ବ୍ରାହ୍ମଣର ଶୌଚରୁ ବଞ୍ଚିଥିବା ପାଣି ପିଇ ମୁକ୍ତ ହୋଇ କାଶୀପ୍ରାପ୍ତ ହେବ । ମୋର ସେହି ମୁକ୍ତି ଲାଭ ପାଇଁ ଶୁଭ କ୍ଷଣ ଆସିଲା । ଆପଣଙ୍କୁ ଅଭୀଷ୍ଟ ବର ଦେଲେ ମୁଁ ସ୍ୱର୍ଗକୁ ଯିବି ।

ତୁଳସୀ— ହେ ବ୍ରହ୍ମନ ! ମୋତେ ରାମଚନ୍ଦ୍ର ଦର୍ଶନ କରାନ୍ତୁ ।

ଭୂତ— ଭଗବାନ ରାମଙ୍କୁ ଦର୍ଶନ କରାଇବା ଶକ୍ତି ମୋର ନାହିଁ । ତାର ଉପାୟ କହିବି । ହେଇ ଯେ ଉଆଁ ଦେଉଳ ଦିଶୁଛି, ସେଠି ନିତି ରାମାୟଣ ପଢ଼ା ହୁଏ । ଗୋଟିଏ କୁଷ୍ଠ ରୋଗୀ ବେଶରେ ହନୁମାନ ସମସ୍ତଙ୍କ ଆଗରୁ ଆସି ସମସ୍ତଙ୍କ ପଛରେ ଯାଆନ୍ତି । ତାଙ୍କୁ ଧରିଲେ ସେ ଆପଣଙ୍କୁ ରାମ ଦର୍ଶନ କରାଇ ଦେବେ । ମୁଁ ଉର୍ଦ୍ଧ୍ୱ ଗମନ କରିବି, ଅନୁମତି ଦିଅନ୍ତୁ ।

ତୁଳସୀ— ଭଗବାନ ଶଙ୍କରଙ୍କ କୃପାରେ ଆପଣ ଉର୍ଦ୍ଧ୍ୱ ଗମନ କରନ୍ତୁ ।

ଭୂତ— (ସହର୍ଷରେ) ଜୟ ଭକ୍ତରାଜ ତୁଳସୀ ଦାସ କି ଜୟ, ଜୟ ଭକ୍ତରାଜ ତୁଳସୀ ଦାସ କି ଜୟ, ଜୟ ଭକ୍ତରାଜ ତୁଳସୀ ଦାସ କି ଜୟ ।

## ପଞ୍ଚମ ଦୃଶ୍ୟ

(ବାଡ଼ି ଧରି କୁଷ୍ଠ ବ୍ରାହ୍ମଣ ପ୍ରବେଶ କରି ଏଣେ ତେଣେ ଦୃଷ୍ଟିନିକ୍ଷେପ—ତୁଳସୀ ଦାସ ତରବରରେ ଆସି ତାଙ୍କ ଚରଣ ତଳେ ପଡ଼ି ପାଦ ଧରିଲେ)

କୁଷ୍ଠ— ଆରେ ଛାଡ଼—ଛାଡ଼, କିଏରେ ତୁ—କିଏସେ ତୁ ? ଶ୍ରୀଘ୍ର ଛାଡ଼୍ ଛାଡ଼୍, ଯା ଯା ।

ତୁଳସୀ— ମତେ ଦୟା କରିବାକୁଇ ହବ । (ପାଦଧରିଥାନ୍ତି)

କୁଷ୍ଠ— ମୁଁ କୋଢ଼ିଆ ବ୍ରାହ୍ମଣ, ମୋର ତତେ ଦୟା କରିବାର ଶକ୍ତି କାହିଁ ?

ତୁଳସୀ— ଆପଣ କିଏସେ ମୁଁ ଜାଣେ ।

କୁଷ୍ଠ— ମୁଁ କିଏ ?

ତୁଳସୀ— ଆପଣ ଭକ୍ତରାଜ ମହାବୀର ।

କୁଷ୍ଠ— ଦୁର୍—କୋଢ଼ୀ କେବେ ମହାବୀର ହୁଏ ?

ତୁଳସୀ— ମତେ ଦୟା ନକଲେ ପାଦ ଛାଡ଼ିବି ନାହିଁ—ଦେଖିବି ମତେ କିମିତି ଫିଙ୍ଗିଦେବ ।

କୁଷ୍ଠ— ଜୟରାମ (ଡେଇଁ ପଡ଼ି ମହାବୀର ରୂପ ଧରି) କିଏ ତୁମେ ? କଣ ଚାହଁ ?

ତୁଳସୀ— (ଉଠି, କୃତାଞ୍ଜଳି ହୋଇ) ମୁଁ ରାମଚନ୍ଦ୍ରଙ୍କୁ ଦେଖିବାକୁ ଚାହେଁ, ମତେ ଦେଖାନ୍ତୁ ।

ମହାବୀର— ଭକ୍ତବର !

ତୁଳସୀ— ମୁଁ ଭକ୍ତ ନୁହେଁ, ଦୁରାଚାର ।

ମହାବୀର— ଭକ୍ତବର, ତୁମେ ଯେ କିଏ ତା ମତେ ଜଣା । ପୁଣି କଣ ପାଇଁ ଜନ୍ମହୋଇଚ ତା ବି ଜାଣିଛି । ଆଚ୍ଛା, ଚିତ୍ରକୂଟକୁ ଯାଅ— ସେଠି ଦେଖାପାଇବ । ଜୟରାମ, ଜୟରାମ, ଜୟରାମ !

ତୁଳସୀ— ଆପଣଙ୍କ ଦେଖା କୋଉଠି ପାଇବି ?

ମହାବୀର— ମୁଁ ତମ ସାଙ୍ଗରେ ରହିଛି । (ରାମ ରାମ କରି ତୁଳସୀ ଦାସଙ୍କ ଗମନ)

ମହାବୀର— ପୁନଃ ପ୍ରଚାରଣେ ଧରାଧାମେ ରାମ ନାମ—

ରାମଗୁଣ ଗାନ ।
ତୁଳସୀଦାସ ରୂପ କରି ପରିଗ୍ରହ ।
ଆସିଛନ୍ତି ବାଲମୀକି ମୁନି ।
ଅଜସ୍ର ରାମ ନାମ ଶୁଣି ହୋଇବି କୃତାର୍ଥ ମୁହିଁ ।

## ଷଷ୍ଠ ଦୃଶ୍ୟ

(ଚିତ୍ରକୂଟ କାନନ ଗିରି)

ତୁଳସୀ— କାହିଁ ମୋର ଅନ୍ତର ଦେବତା ?
ଟିକିନିଖି କରି ଖୋଜୁଅଛି ଚିତ୍ରକୂଟ ଗିରି ।
ବ୍ୟର୍ଥ ହେଲା ମୋହର ପ୍ରୟାସ ।
କେତେଥର ଗିରିଶିରେ କରି ଆରୋହଣ
ଦେଖିଅଛି ଚତୁର୍ଦ୍ଦିଗ ।
ସ୍ଫଟିକ ଶିଳାରେ ଶତବାର କରିଛି ଗମନ ।
ଗୁପ୍ତ ଗୋଦାବରୀ, ତନ୍ନତନ୍ନ କରି ଦେଖିଅଛି ବହୁବାର ।
ତୁମରି ଦର୍ଶନ ନ ପାଇଲି ମୁହିଁ ।
ହନୁମାନଧାରୀ ସୀତାରସୁଇ ।
କେଉଁ ସ୍ଥାନେ ନ ମେଣ୍ଟିଲା ଆଶା ମୋର ।
ତେବେ କି ମିଥ୍ୟା ହୋଇବ ପବନ ନନ୍ଦନ ?
ତେବେ କି ଭାଷିଲେ ମୋତେ ବୃଥା ସ୍ତୋକବାଣୀ ?
ନୁହେଁ ତା ସମ୍ଭବ କେବେ ।
ହୋଇପାରେ କେବେ ଅବା
ପଶ୍ଚିମ ଗଗନେ ଯେବେ ଭାନୁର ଉଦୟ ।
କିନ୍ତୁ ଭକ୍ତ ମାରୁତିର କଥା ନୋହିବ ଅନ୍ୟଥା ।
ନିଃସନ୍ଦେହ ମଣେ—
ରାମ ରାମ ଦିଅ ଦରଶନ ଦାସେ ।
ତବ ଦରଶନ ଆଶେ ବ୍ୟାକୁଳିତ ପ୍ରାଣ
ଦିଅ ଦେଖା— ଦିଅ ଦେଖା ।
ଧନଜନ ସୁଖଶାନ୍ତି ନାହିଁ ପ୍ରୟୋଜନ, ଖାଲି ଚାହେଁ ତୁମ ଦରଶନ
ନବ ଦୁର୍ବାଦଳ ଶ୍ୟାମକାନ୍ତି କନ୍ଦର୍ପର
ଗର୍ବ ଖର୍ବକାରୀ ହେ ରାମ ଆ-ରାମ,

ଆସ ବାରେ ଦିଅ ଦରଶନ
ନାହିଁ ମୋର ସାଧନ ଭଜନ,
ନାହିଁ ଭକ୍ତି ଲେଶ ।
ନାହିଁ ମୋର ଆକୁଳ କାମନା—
ଆସ ଆସ ଦୟାମୟ କରୁଣା ବାରିଧି ।
ଆସ ମୋତେ ଦିଅ ଦରଶନ ।
ଆସ ଆସ ଆସ ମୋର ପ୍ରିୟତମ ।
ହାୟରେ ଦୁରାଶା ।
କାହିଁ ସେହି ଅନନ୍ତ ବ୍ରହ୍ମାଣ୍ଡ ପତି—
ପରଂବ୍ରହ୍ମ ରାମ ?
କାହିଁ ମହାପାପୀ—ଦୁରାଚାରୀ—କାମିନୀକିଙ୍କର—
ଅଧମରୁ ଅଧମ ଯେ ମୁହିଁ ।
କାହିଁକି ପୋଷିଛି ମୁହିଁ ଏ ଦୁରାଶା ପ୍ରାଣେ !
କିପାଁ ଜଗାଇଲ ମନେ ଦରଶ ପିପାଶା !
ଯଦି ନ ଦେଖିବି, ତେବେ ବିଅର୍ଥ ନୟନ ।
ଯଦି ଦେଖା ନ ପାଇବି,—
ତେଜିବି ପରାଣ ମୁହିଁ ଗିରିଶିରୁ ପତିତ ହୋଇଣ ।
ଏକଣ ?
କାହାର ଏ ପଦଶବ୍ଦ ପଶୁଛି ଶ୍ରବଣେ ମୋର ?
ଯାଏଁ ଯାଏଁ, ଧାଇଁ ଯାଏଁ—ହୃଦରତ୍ନ ପାଇଁ ।
ନା ନା, କେହି ନାହିଁ ।
ଧୁ-ଧୁ—ଜଳୁଅଛି ନିର୍ମମ ପ୍ରାନ୍ତର
ହା-ହା କରୁଅଛି ଶୂନ୍ୟ କାମଗିରି ।
(ଧନୁଶର ହାତରେ ବେଗେ ରାମ ଲକ୍ଷ୍ମଣ ପ୍ରବେଶ)

ରାମ— ଆରେ ହରିଣଟା କୁଆଡ଼େ ପଳାଇଲା ?

ଲକ୍ଷ୍ମଣ— ଏ ଆଡ଼େ ।

(ଉଭୟଙ୍କର ବେଗେ ପ୍ରସ୍ଥାନ)

ତୁଳସୀ— ଅତି ରମଣୀୟ ରାଜପୁତ୍ର ଦ୍ୱୟ,
ଦେଖିଲେ ରାମ ଲକ୍ଷ୍ମଣ ପରି ଭ୍ରମ ହୁଏ ।

ମଧୁର ସଙ୍ଗୀତ ରବ ପଶୁଛି ଶ୍ରବଣେ ମୋର;—
ଦେଖେଁ ଦେଖେଁ କିଏ ଏ ଗାୟକ ।

## ସପ୍ତମ ଦୃଶ୍ୟ

ତୁଳସୀ— ସୁନ୍ଦର ରାମଲୀଳା ଯାତ୍ରା ହେଉଛି ରାମନବମୀରେ । ଆଃ କି ସୁନ୍ଦର ! ଯେମିତି ରାମ ସେମିତି ସୀତା, ସେମିତି ସୁଗ୍ରୀବ ଓ ହନୁମାନ । ଦେଖିଲେ ମନେହୁଏ ସତରେ ଯେମିତି ରାମଲୀଳା ।

(ଜନୈକ ସାଧୁ ପ୍ରବେଶ)

ତୁଳସୀ— ଆପଣ ରାମଲୀଳା ଦେଖିଯାଇଥିଲେ ?

ସାଧୁ— କୋଉଠିକୁ ?

ତୁଳସୀ— ଏ ପାହାଡ଼ ଉପରେ ?

ସାଧୁ— ଅଶିଣ ମାସରେ ପୁଣି ରାମଲୀଳା ହେଉଛି ନା ? ଆପଣ ପାଗଳ ନା କଣ ?

ତୁଳସୀ— ମୁଁ ଏଇନେ ଯାଇ ଦେଖି ଅଇଲି—ପାଗଳ ହେବି କାହିଁକି ?

ସାଧୁ— ଚାଲନ୍ତୁ ମତେ ନେଇ ଦେଖାଇ ଦେବେ କେଉଁଠି ଯାତ ହେଉଚି ।

(ଉଭୟଙ୍କ ଗମନ—ମହାବୀର ଛଦ୍ମବେଶେ ପ୍ରବେଶ)

ମହାବୀର— ତୁଳସୀ ଦାସ ଦିଥର ଦର୍ଶନ ପାଇ ବି ବୁଝିପାରୁନାହିଁ ।

(ଉଭୟଙ୍କର ପୁନଃ ପ୍ରବେଶ)

ତୁଳସୀ— ମୁଁ ତ କିଛି ବୁଝିପାରୁନାହିଁ ।

ସାଧୁ— ବୁଝିବେ ତୁଳିଟା—ଯାଅ ମୁଣ୍ଡ ବିକୃତ ହେଲାଣି—ବଇଦ ଦେଖାଇ ଭଲକର ।

ତୁଳସୀ— କୋଉଠି ଅଛ ମହାବୀର, ମୁଁ ବିପନ୍ନ; ଦେଖାଦିଅ ।

ମହାବୀର— ଜୟରାମ (ଡେଇଁ ପଡ଼ି ନିଜ ରୂପ ଦେଖାଇ) କଣପାଇଁ ସନ୍ଦେହ ?

ତୁଳସୀ— ପ୍ରଣାମ ମହାବୀର । ମୁଁ କଣ ଭୁଲ୍ ଦେଖିଲି ? ମୁଁ କଣ ଦେଖିଲି ? କୁହନ୍ତୁ ତ ?

ମହାବୀର— ରାଜପୁତ୍ର ବେଶରେ ରାମ ଲକ୍ଷ୍ମଣଙ୍କୁ ଦେଖିଲ । ପୁଣି ସପରିବାରରେ ରାମଲୀଳାରେ ରାମଙ୍କୁ ଦେଖିଲ ।

ତୁଳସୀ— ଏଁ ଏଁ – କଣ କହୁଛନ୍ତି ? ମୁଁ ରାଜା ପୁଅ ଦିଓଟିଙ୍କୁ ବାଳକ ଦିଓଟି ବୋଲି ଭାବି ସେମାନଙ୍କ ଅଭିନୟ ଦେଖିଲି । ମୋର କି ଦୁର୍ଭାଗ୍ୟ— ଦେଖିକରି ଜାଣିପାରିଲି ନାହିଁ । ଭକ୍ତରାଜ ! ଆପଣଙ୍କ ଦୟାରେ ଦେଖିଲି କିନ୍ତୁ ଆଶା ମେଣ୍ଟିଲା ନାହିଁ— ଶ୍ରୀଅଙ୍ଗ ସ୍ପର୍ଶ କରିପାରିଲି ନାହିଁ ।

ମହାବୀର— ଭକ୍ତବର ! ଯଥେଷ୍ଟ ସୌଭାଗ୍ୟ ତୁମର । ଥରେ ନୁହଁ ଦିଥର ଦେଖିଲ ତାଙ୍କୁ । ସ୍ପର୍ଶ କଥା କହୁଛ— ଆଚ୍ଛା, ତା ବି କରିବ । ଚିତ୍ରକୁଟରେ ରାମଘାଟକୁ ଯାଇ

ନିତି ଚନ୍ଦନ ଘୋରି ବସିଥିବ । ଯିଏ ଗାଧୋଇ କରି ଆସିବେ, ତାଙ୍କୁ ଚନ୍ଦନ ଲଗାଇଦେବ । ରାମ ଲକ୍ଷ୍ମଣ ଆସି ତମ ହାତରୁ ତିଳକ ଲଗାଇ ଯିବେ ।

ତୁଳସୀ— ଏ ସୌଭାଗ୍ୟ କଣ ହେବ ?

ମହାବୀର— ନିଶ୍ଚୟ ହେବ । ତମ ସଙ୍ଗେ ମୋର ଭାରି ଦରକାରୀ କଥା ଅଛି— ଆସ ମୋ ସାଙ୍ଗରେ ।

ତୁଳସୀ— ଯେ ଆଜ୍ଞା, ଚାଲନ୍ତୁ ।

(ଉଭୟଙ୍କ ଗମନ—ଶିବ ଦୁର୍ଗାଙ୍କ ପ୍ରବେଶ)

ତୁଳସୀ— ଏ କଣ— ଏ କଣ ? ମୁଁ ଚେଇଁଛି ନା ଶୋଇଛି ? ଜଗତମାତା ଜଗତପିତା ଆସିଛନ୍ତି । (ପାଦତଳେ ପଡ଼ିଲେ)

ଶିବ— ଭକ୍ତ ତୁଳସୀ— ତୁମ ଭକ୍ତି ଟାଣରେ ମୁଁ ଆସିଛି । ତୁମ ମୁହଁରୁ ରାମ ନାମ ଶୁଣିବା ପାଇଁ ମୁଁ ଓ ଦୁର୍ଗା ଆସିଛୁଁ । ଏଠି ରାମ ଦର୍ଶନ କରି ଅଯୋଧ୍ୟା ଯାଇ ଭାଷାରେ ରାମାୟଣ ରଚନା କର ।

ତୁଳସୀ— ପ୍ରଭୋ ! ମୁଁ ଯେ ମହାମୂର୍ଖ ।

ଶିବ— ମୁଁ ଆଶୀର୍ବାଦ କରୁଛି, ତୁମର କବିତ୍ୱ ଶକ୍ତି ହେବ । ମୋ ଆଶୀର୍ବାଦରେ ତୁମ ଭାଷା ରାମାୟଣ ସୂର୍ଯ୍ୟ ଚନ୍ଦ୍ର ଥିବାଯାଏ ସାମବେଦ ଭଳି ଜଗତରେ ପୂଜାପାଇବ, ଆଉ ତାକୁ ଘରେ ଘରେ ସମସ୍ତେ ପଢ଼ି ମୁଗ୍ଧ ହେବେ । ତୁମ ରାମାୟଣ ପଢ଼ି କୋଟି କୋଟି ନରନାରୀ ଭବବନ୍ଧନରୁ ମୁକ୍ତି ପାଇବେ ।

ତୁଳସୀ— ଏ ଅହେତୁକୀ କୃପାର ପ୍ରତିଦାନ ଦେବା ପାଇଁ ମୋର ଯେ କିଛି ସମ୍ବଳ ନାହିଁ, ପ୍ରଭୁ । (ଚରଣରେ ପଡ଼ିଲେ)

ଶିବ— ପୁଅ, ଉଠ । (ତୁଳସୀ ଉଠିଲେ)

ଦୁର୍ଗା— ତୁଳସୀଦାସ, ମତେ ଚିହ୍ନୁଛ ?

ତୁଳସୀ— ମା, ତୁମେଇ ତ ମତେ ଆଦର କରି ପିଲାଦିନେ ଖୁଆଇ ବଞ୍ଚାଇଥିଲ । ଜୟ ଗୌରୀଶଙ୍କରଙ୍କର ଜୟ, ଜୟ ଗୌରୀଶଙ୍କର ଜୟ ।

## ଅଷ୍ଟମ ଦୃଶ୍ୟ

(କାଶୀରେ ତୁଳସୀ ଦାସଙ୍କ ଆଶ୍ରମ)

ତୁଳସୀ— ରାମ ରାମ, ସବୁ ହନୁମାନଙ୍କ କୃପା । ରାମ ଦର୍ଶନ ଥରେ ନୁହେଁ, ତିନିଥର କଲି । ଶେଷରେ ରାମଘାଟରେ ଚନ୍ଦନ ନେଇ ବସିଲାବେଳେ ଠାକୁରେ ଦୁଇ ଭାଇ ଆସି ଚନ୍ଦନ ଚନ୍ଦନ କହି ମାଗିଲେ । କପାଳରେ ଯେମିତି ଚନ୍ଦନ ପିନ୍ଧାଇ

ଦେଲି, ମୂର୍ଚ୍ଛା ହୋଇ ପଡ଼ିଗଲି । ମହାବୀର ଆସି ଚେତା କଲେ । ତାପରେ ଗୌରୀଶଙ୍କର ଦର୍ଶନ ଦେଇ ରାମାୟଣ ଲେଖିବାକୁ କହିଲେ । ତାଙ୍କ ଆଜ୍ଞାରେ ହିନ୍ଦି ଭାଷାରେ ରାମାୟଣ ଲେଖି ଦୁଇବର୍ଷ ସାତମାସ ଛବିଶଦିନରେ ଲେଖା ଶେଷ କଲି । ମହାବୀର ଶୁଣି ଖୁସି ହେଲେ ।

(ମହାବୀରଙ୍କ ପ୍ରବେଶ–ତୁଳସୀ ପ୍ରଣାମ କଲେ)

ମହାବୀର– ତୁମ ରାମାୟଣ କାହିଁ ତୁଳସୀ ?

ତୁଳସୀ– ହେଇଟି, ପ୍ରଭୁ ।

ମହାବୀର– ତୁମ ରାମାୟଣରୁ କିଛି ରାମନାମ ଶୁଣାଅ ।

ତୁଳସୀ– (ରାମାୟଣ ପାଠ କଲେ)

ବର୍ଣ୍ଣାନାମର୍ଥ ସଂଘାନାଂ ରସାନାଂ ଛନ୍ଦସାମପି ।
ମଂଗଳାନାଂ ଚ କର୍ତାଁରୌ–
– ବନ୍ଦେ ବାଣୀବିନାୟ କୌ ॥
ବନ୍ଦୌ ରାମନାମ ରଘୁବରକେ ।
ହେତୁ କୃଶାନୁ ଭାନୁ ହିମକରକେ ।
ବିଧି ହରି ହର ମୟ ବେଦ ପ୍ରାଣ ସୋ ।
ଅଗୁଣ ଅନୁପମ ଗୁଣ ନିଧାନ ସୋ ।
ଅଗ୍ନି ସୂର୍ଯ୍ୟ ଶଶଧର
ଏ ତିନିର ହେତୁକର
ପରାତ୍ପର ସାର ରାମ ନାମ ।
ବିଧି ହରି ହରମୟ,
ସଦାଯହିଁ ବେଦାଶ୍ରୟ,
ତାକୁ ମୋର ସତତ ପ୍ରଣାମ ।
ପ୍ରଣବେ ତ୍ରିବର୍ଣ୍ଣମୟ
ବିଧି ବିଷ୍ଣୁ ଶିବମୟ
ଏକାକ୍ଷରେ ବେଦର ପରାଣୀ ।
ଅଗୁଣ ସେ ରାମ ନାମ
ଅନୁପମ ଗୁଣଧାମ
ଅଭେଦ ସେ ରଘୁବରେ ନମି ।

ମହାବୀର– ଭାରିସୁନ୍ଦର–ଅତିସୁନ୍ଦର–ଆଉରି ବୋଲ ।

ତୁଳସୀ– ରାମନାମ ମଣିଦୀପ ଧରୁ ଜୀହା ଦେହରି ଦ୍ୱାର
ତୁଳସୀ ଭିତର ବାହାରୌ ଯୋ ଚାହସି ଉଜିୟାର ।

ରସନାର ଦୀପାଧାରେ
ବସାଇଣ ଯତ୍ନଭରେ
ରାମନାମ ମଣିଦୀପ ଧୀର ।
ଭିତର ବାହାର ଘର
ପ୍ରକାଶିଣ ଦ୍ୱାରପର
ଧର ସଦା ବାଣୀ ତୁଳସୀର ।

ମହାବୀର— ଉତ୍ତମ—ଉତ୍ତମ—ଆଉରି ବୋଲ ।

ତୁଳସୀ— ରାମ ବାମ ଦିସି ଲକ୍ଷଣ ଜାନକୀ ଦାହିନୀ ଓର ।
ଧ୍ୟାନ ସକଳ କଲ୍ୟାଣମୟ ସୁରତରୁ ତୁଳସୀ ଥୋର ॥
ରାମନାମକୋ ଅଙ୍କହୈ ସବ ସାଧନ ହୈଁ ସୁନ୍ ।
ଅଙ୍କଗୟେ କଛୁ ହାତ ନାହିଁ ଅଙ୍କ ରହେ ଦଶଗୁଣ୍ ॥
ରାମ ନାମକୋ କଳ୍ପତରୁ କଳି କଲ୍ୟାଣ ନିବାସ ।
ଯୋ ସୁମିରତ ଭୟୋ ଭାଗତେ ତୁଳସୀ ତୁଳସୀ ଦାସ ॥
ରାମନାମ ଜପିଜିହଜନ ଭୟେ ସୁକୃତ ସୁଖଶାଳୀ ।
ତୁଳସୀ ଯାହା ଯୋ ଆଳସୀ ଗୟୋ ଆଜ କି କାଲି ॥
ରାମନାମ ସୁମିରତ ସୁ ଯଶଭାଜନ ଭୟୋ କୁଜାତ ।
କୁତରୁ କୁସୁର ପୁରରାଜମଗ ଲହତ ଭୁବନ ବିଖ୍ୟାତ ॥
ରାମନାମ ଅବଲମ୍ବ ବିନୁ ପରମାର୍ଥକି ଆସ ।
ବରଷତ ବାରିଦ ବୃନ୍ଦ ଗହି ଚାହତ ଚଢ଼ନ ଅବକାଶ ॥
ରାମନାମ ସବଧର୍ମମୟ ଜାନତ ତୁଳସୀ ଦାସ ।
ଯଥାଭୂମି ବସ ବୀଜମେଁ ନଖତ ନିବାସ ଆକାଶ ॥
ରାମ ନାମ ନିତ କହତ ହର ଗାବତ ବେଦ ପୁରାଣ ।
ହରଣ ଅମଙ୍ଗଳ ଅଖିଳ, କରତ ସକଳ କଲ୍ୟାଣ ॥
ରାମନାମ ରତି ରାମନାମ ଗତି ରାମ ନାମ ବିଶ୍ୱାସ ।
ସୁମିରତ ଶୁଭ ମଙ୍ଗଳ କୁଶଳ ଚହୁଦିସି ତୁଳସୀ ଦାସ ॥
ନାମ ଲଳିତ ଲୀଳା ଲଳିତ ଲଳିତ ରୂପ ରଘୁନାଥ ।
ଲଳିତ ବସନ ଭୂଷଣ ଲଳିତ ଲଳିତ ଅନୁଜ ଶିଶୁସାଥ ॥
ରାମ ଭରଥ ଲଛମନ ଲଳିତ ସତୃସମନ ଶୁଭ ନାମ ।
ସୁମିରତ ଦଶରଥ ସୁବନସବ ପୂଜହି ସବମନକାମ ॥

ମହାବୀର— ପ୍ରାଣ ପୂରିଗଲା ଶୁଣି ରାମର ମହିମା
ବହୁକାଳ ଶୁଣିନାହିଁ ରାମଗୁଣ କଥା ।
ବାଲ୍ମିକୀର ଅବତାର ହେ ତୁଳସୀ ଦାସ ।
କଳିହତ ଜୀବକୁଳେ ଆକୁଳ ପୀଡ଼ନେ ।
ସେମାନଙ୍କୁ ଉଦ୍ଧାରିବା ପାଇଁ
ରାମାୟଣ ସୁଧାଧାରା ବହାଇଲ ତୁମେ ।
ଏ ଅମୃତ ପାନେ ଧନ୍ୟ ହେବେ,
କଳିହତ ମାନବ ମାନବୀ
ଧନୀ, ଦରିଦ୍ର, ମୂର୍ଖ, ବିଦ୍ୱାନ ସମସ୍ତେ ।
ଭାଷା ରାମାୟଣ ପାଠେ ହୋଇବେ କୃତାର୍ଥ ।
ସୁରମ୍ୟ ରାଜ ହର୍ମ୍ୟେ ଜୀର୍ଣ୍ଣ ସନ୍ୟାସୀ କୁଟୀରେ—
ସମଭାବେ ପୂଜା ହେବ ରାମର ଚରିତ ।
ଯେତେଦିନ ଚନ୍ଦ୍ରସୂର୍ଯ୍ୟ ରହିବେ ଗଗନେ,
ସେତେଦିନ ତୁମ ଏହି ରାମାୟଣ,
ମହାପୋତ କରି ଆରୋହଣ,
ଗୋଷ୍ପଦ ସଲୀଳ ସମ ଭବପାରାବାର
ହୋଇବେ ଉତ୍ତୀର୍ଣ୍ଣ ଯେତେ ଭକତମଣ୍ଡଳି ।
ତୁମରି କଲ୍ୟାଣେ
ଦିବାନିଶି ଲୋକମୁଖେ ଶୁଣିବି ଶ୍ରବଣେ ରାମ ଗୁଣ ଗାନ ।
ଅତୀବ ସନ୍ତୁଷ୍ଟ ମୁହିଁ ଶୁଣି ରାମାୟଣ ।
ବର ମାଗ ପ୍ରେମିକ ପ୍ରଧାନ ।

ତୁଳସୀ— ପ୍ରଭୋ, ରୁଦ୍ର ଅବତାର !
ତବାଦେଶେ ରଚି ରାମାୟଣ
ଅରପୁଛି ଉପହାର ଆପଣଙ୍କ ପଦେ ।
ଏକମାତ୍ର ପ୍ରାର୍ଥନା ମୋହରି
ଅନନ୍ୟଭକତି ମୋର ଥାଉ ଚିରଦିନ ।
ଜିହ୍ୱା ମୋର ରାତିଦିନ ଜପୁ ରାମନାମ ।

ମହାବୀର— ତଥାସ୍ତୁ ! ରହିଲି ମୁଁ ତୁମ ସଙ୍ଗେ ।
ହୋଇବ ଯେବେ ବାସନା କରିବ ପ୍ରାର୍ଥନା
ଦେବି ଦରଶନ ।

ତୁଳସୀ— ପୁନଃ ରାମ ଦରଶନ ଅଭିଳାଷ ଜାଗିଛି ଅନ୍ତରେ ।

ମହାବୀର— ଚିତ୍ରକୂଟେ ପାଇବ ଦର୍ଶନ, (ଅନ୍ତର୍ହିତ ହେଲେ)

ତୁଳସୀ— ରାମ, ରାମ, ରାମ ।
କେତେ ସୁଧା ଦେଇ ଗଢ଼ିଛନ୍ତି ବିଧି
ନିରଜନେ ବସି ଦିଓଟି ଅକ୍ଷରେ !
ଅମୃତର ମହାଉତ୍ସ ଏ ଦୋ'ଟି ଅକ୍ଷର–
ରାମ ରାମ ଯେତେ ଜପେ,
ସେତେ ବଢ଼େ ବାସନା ମୋହର –
ରାମନାମ ଜପିବା ପାଇଁକି ।
ରାମ ରାମ ରାମ– ଯେତେ କହେ ସେତେ ମିଠା ଲାଗେ ।
ରାମ ରାମ ରାମ– ଆରେ କେ ଅଛ କେଉଁଠି ?
ତାପିତ ତୃଷିତ, ସଂସାର ମରୁ ବକ୍ଷରେ ପିପାସା ଆକୁଳ
ଆସ, ନିଅ, ନିଅ, ଗାଅ, ଗାଅ, ରାମ ରାମ ରାମ
ଅମୃତ ସ୍ୱାଦ ପାଇବ ରସନା ।
ଆଲୋକିତ ହେବ ପ୍ରାଣ ଅନ୍ତର ବାହାର ।
ଦିବାନିଶି ଅଲୌକିକ ମଧୁମୟ ଗାନେ, ହେବ ଆତ୍ମହରା ।
କ୍ଷୁଦ୍ର ଏହି ସଂସାରର ହସ ଆଉ କାନ୍ଦ,
ଦଳିଣ ଚରଣେ ପରମ ଆନନ୍ଦେ, ରହିବଟି ଅନୁକ୍ଷଣେ ।
(ନେପଥ୍ୟେ–ରାମ ରାମ, ମୁଁ ଗୋହତ୍ୟାକାରୀ ମହାପାପୀ)

(ଜନୈକ ବ୍ରାହ୍ମଣର ପ୍ରବେଶ)

ବ୍ରାହ୍ମଣ— ରାମ ରାମ ରାମ– ମୁଁ ଗୋରୁ ମାରି ବହୁ ତୀର୍ଥ ବୁଲି ଆସିଲି, ମୋର ପାପ ଛାଡ଼ିଲା ନାହିଁ । ରାମ ରାମ ରାମ ।

ତୁଳସୀ— ବାପ, ତୁ ଅବିରାମ ରାମ ରାମ କହୁଛୁ, ପୁଣି କହୁଛୁ ତୁ ମହାପାପୀ । ରାମ ନାମ କହିଲେ କଣ ପାପ ଥାଏ ? ତୁ ନିଷ୍ପାପ ।

ବ୍ରାହ୍ମଣ— ରାମ ରାମ ରାମ– ମୁଁ କଣ ସତେ ନିଷ୍ପାପ ବାପା ?

ତୁଳସୀ— ନିଶ୍ଚୟ ତୁ ନିଷ୍ପାପ । ଶାସ୍ତ୍ର କହୁଛି, କୃତୈଶ୍ଚ କ୍ରିୟମାଣୈଶ୍ଚ ଭବିଷ୍ୟଦ୍‌ଭିଶ୍ଚ ପାତକୈଃ । ରାମେତି ଦ୍ୱ୍ୟକ୍ଷରଂ ନାମ ସକୃଜ୍ଜପ୍ତ୍ୱା ବିଶୁଧ୍ୟତି ॥(କାତ୍ୟାୟନ ସ୍ମୃତିଃ)

ବ୍ରାହ୍ମଣ— ୟାର ମାନେ କଣ ?

ତୁଳସୀ— ଯେ ପାପ କରା ହୋଇଛି ଓ ହେଉଛି, ଯେଉଁ ପାପ କରାଯିବ, ସେ ସବୁ ପାପରୁ 'ରାମ' ଏହି ଦିଓଟି ଅକ୍ଷର ଥରେ ଜପ କଲେ ମଣିଷ ପବିତ୍ର ହୁଏ। ତୁ ଅବିରାମ ରାମ ରାମ କହୁଛୁ, ଜପୁଛୁ, ତୋର ପାପ ଥାଇପାରେ ? ଯା, ଗାଧୋଇଆ, ମୋ ସଙ୍ଗେ ପ୍ରସାଦ ପାଇବୁ।

ବ୍ରାହ୍ମଣ— ଜୟ ଜୟ ରାମ ରାମ। ତେବେ ମୁଁ ନିଷ୍ପାପ ?

ତୁଳସୀ— ହଁ, ଯାଅ ଗାଧୋଇ ଆସ। (ବ୍ରାହ୍ମଣର ଗମନ) କି ଭ୍ରମ ! ଥରେ ଅବଶ ଭାବରେ ନାମ କଲେ କୋଟି ଜନ୍ମର ପାପ ନଷ୍ଟ ହୁଏ। ଆଉ ଏ ବ୍ରାହ୍ମଣ ରାମ ରାମ ଜପ କରି ନିଜକୁ ପାପୀ ବୋଲି ଭାବୁଛି।

(କାଶୀବାସୀ ବ୍ରାହ୍ମଣ ଦ୍ୱୟଙ୍କ ପ୍ରବେଶ)

୧ମ— ଗୋସେଇଁ, ଆପଣଙ୍କୁ ଆମେ ଭାରି ମାନୁ, ଶ୍ରଦ୍ଧା କରୁଁ। ଆପଣ ଗୋହତ୍ୟାକାରୀ ଲୋକଟାକୁ କଣ କହିଲେ ?

ତୁଳସୀ— କହିଛି, ତୁମେ ନିଷ୍ପାପ, ଗାଧୋଇ ଆସ, ଏକା ସଙ୍ଗେ ବସି ପ୍ରସାଦ ପାଇବା।

୨ୟ— ସେ କିଛି ପ୍ରାୟଶ୍ଚିତ୍ତ ନ କରି ଶୁଦ୍ଧ ହୋଇଗଲା। ଏପରି ଅବିଧି ଅଶାସ୍ତ୍ରୀୟ ବ୍ୟବସ୍ଥା କରିବା କଣ ଆପଣଙ୍କ ପକ୍ଷରେ ଉଚିତ୍ ହେଲା ?

ତୁଳସୀ— ଆପଣମାନେ ଶାସ୍ତ୍ର ମାନନ୍ତି ଟି ?

ଉଭୟେ— ନିଶ୍ଚୟ ମାନୁ।

ତୁଳସୀ— ଶାସ୍ତ୍ର ବାଣୀ କହେ—

କୋଟିଶଃ ମନୁଜାନାଂ ଯଦ୍‌ଦୁରିତଂ ସମୁପସ୍ଥିତମ୍।
ରାମ ରାମେତି ସଂକୀର୍ତ୍ତ୍ୟ ତନ୍ନାଶୟତି ମାନବଃ। (ବଶିଷ୍ଠ ସ୍ମୃତି)

ମଣିଷମାନେ ଯଦି କୋଟି କୋଟି ପ୍ରକାର ପାପ କରିଥାନ୍ତି, ରାମ ରାମ କୀର୍ତ୍ତନରେ ତାହାର ବିନାଶ ହୁଏ। ପାପୀ ଶ୍ରୀରାମ ରାମ ନାମ ଉଚ୍ଚାରିଲେ କୋଟି ସହସ୍ର ପାପରୁ କ୍ଷଣମାତ୍ରକେ ଉଦ୍ଧାର ହୁଅନ୍ତି।

ନାନ୍ଦୀ ପୁରାଣ କହୁଛି—

''ସର୍ବଦା ସର୍ବକାଳେଷୁ ଯେ ଚ କୁର୍ବନ୍ତି ପାତକମ୍।
ରାମନାମ ଜପଂକୃତ୍ୱା ଯାନ୍ତି ଧାମ ସନାତନମ୍।''

ବ୍ରାହ୍ମଣମାନେ — ଏହାର ଅର୍ଥ ?

ତୁଳସୀ— ସବୁବେଳେ ଯୋଉମାନେ ପାପ କରନ୍ତି, ରାମ ନାମ ଜପିଲେ ସେମାନେ ସନାତନ ଧାମକୁ ଯାନ୍ତି। ଏ ସବୁ କଣ ଶାସ୍ତ୍ରବାଣୀ ନୁହେଁ— ମୋ ବାଣୀ ?

୧ମ— ହଁ, ଶାସ୍ତ୍ରବାଣୀ ସତେ !

ତୁଳସୀ— ଏ ସବୁ ଯଦି ଶାସ୍ତ୍ରବାଣୀ ବୋଲି ମାନନ୍ତି, ମୁଁ ଅଶାସ୍ତ୍ରୀୟ ବ୍ୟବସ୍ଥା ଦେଲି ବୋଲି କିପରି କହିଲେ ? ଥରେ ନାମ କଲେ କୋଟି ଜନ୍ମକୃତ ପାପ ନାଶ ହୁଏ । ଆଉ ଏ ବ୍ରାହ୍ମଣ ଅବିରାମ ରାମ ରାମ କହି ପାପୀ ହୋଇପାରନ୍ତି ?

୨ୟ— ଦେଖନ୍ତୁ ଗୋସେଇଁ, ଆପଣଙ୍କ ସଙ୍ଗେ ଯୁକ୍ତି ତର୍କ କରବାକୁ ଆସେ ଆସିନୁ । କିନ୍ତୁ ମୋଟ କଥା, ଯାଙ୍କର ରାମ ନାମ କରି ପାପ ଯେ କ୍ଷୟ ହେଲା, ଏକଥା ମୁଁ ବିଶ୍ୱାସ କରୁନାହିଁ ।

୧ମ— ଯଦି ବାବା ବିଶ୍ୱନାଥଙ୍କ ନାଆଁ ଦିଆ ଷଣ୍ଢ ଯାଙ୍କ ହାତରୁ ଘାସ ଖାଇବ, ତେବେ ଆମେ ବୁଝିବୁ ଏ ଲୋକ ନିଷ୍ପାପ ।

ତୁଳସୀ— ଭଲ କଥା । (ରାମନାମ କରି ଗୋହତ୍ୟାକାରୀ ବ୍ରାହ୍ମଣର ପ୍ରବେଶ)

ତୁଳସୀ— ବାପ, ତୁ ମୋ ସଙ୍ଗେ ଆସିବୁଟି । (ସମସ୍ତଙ୍କର ଗମନ)

୧ମ— ଆଶ୍ଚର୍ଯ୍ୟ କଥା । ଯଦି ଏ ନିଷ୍ପାପ ହୋଇଥିବେ, ବୃଷରାଜ ତେବେ ତୁମେ ଏ ପ୍ରସାଦ ଓ ଘାସ ଖାଅ । (ଏ କଥା ଗୋସେଇଁ କହିବା ମାତ୍ରେ ପଥର ଷଣ୍ଢ ସବୁ ଘାସ ଖାଇଗଲା)

ଉଭୟେ— ଗୋସେଇଁ, ଆପଣ ଆମକୁ କ୍ଷମା ଦିଅନ୍ତୁ, ପ୍ରଣାମ କରୁଛୁଁ । ଆମେ ଅତି ମୂର୍ଖ ବୋଲି ନାମ ମହିମା ଜାଣି ପାରୁନୁ । ଆମ ଉପରେ କୃପାଦୃଷ୍ଟି ରଖି ନାମରେ ରୁଚି ବଢ଼ାଇ ଦିଅନ୍ତୁ ।

ତୁଳସୀ— ରାମଙ୍କ କୃପାରେ ନାମରେ ଆପଣମାନଙ୍କର ଅନ୍ୟାନ୍ୟ ଅନୁରାଗ ହେଉ— ରାମ ରାମ ।

## ନବମ ଦୃଶ୍ୟ

(କାଶୀରେ ତୁଳସୀ ଦାସ ଆଶ୍ରମ)

୧ମ ଭକ୍ତ— ମୁଁ ଅତି ଅଧମ—ଶ୍ରଦ୍ଧା ଭକ୍ତିହୀନ । ମୋର କି ଗତିହେବ, ବାପା ?

ତୁଳସୀ— କଳିଯୁଗରେ ଗତି ପାଇଁ କିଛି ଚିନ୍ତା ନାହିଁ
ରାମ ରାମ କଳି କାମତରୁ ସକଳ ସୁମଙ୍ଗଳ କନ୍ଦ ।
ସୁମିରତ କରତଳ ସିଦ୍ଧିସବ  ପଗପଗ ପରମାନନ୍ଦ ।
ରାମ ନାମ କଳି କାମତରୁ ରାମ ଭକ୍ତି ସୁରଧେନୁ ।
ସକଳ ସୁମଙ୍ଗଳ ମୂଳ ଜଗ, ଗୁରୁପଦ ପଙ୍କଜ ରେଣୁ ।

୨ୟ— ବାପା, ନାମରେ ରତି, ଗୁରୁ ପଦରେ ଭକ୍ତି— କିଛି ନାହିଁ ସମ୍ବଳ—ମୋର କି ଗତି ହେବ ?

ତୁଳସୀ – ରତି ଥାଉ କି ନ ଥାଉ, କେବଳ ଖାଇଲା ଶୋଇଲା ବେଳେ ବି ନାମ ଜପ, ନାମ କୃପା କରିବେ ।

୩ୟ– ଯେମିତି ସେମିତି ନାମ କଲେ, ପବିତ୍ର ନ ହୋଇ, ଆସନ ନପାରି ନାମ କଲେ କୃପା ପାଇବୁଁ ବାପା ?

ତୁଳସୀ– ପାଇବ–ପାଇବ ଅବଶ୍ୟ । ନାମ କିଛି କଥାର ଅପେକ୍ଷା ରଖେ ନାହିଁ । ଯେ କୌଣସି ପ୍ରକାରେ ନାମ ଶୁଣିଲେ–କହିଲେ ମଣିଷ କୃତାର୍ଥ ହୁଏ । ତମେ ମାନେ ମୋର ରାମାୟଣ ନିତି ପଢ଼ ତ ?

୪ର୍ଥ– ହଁ, ତା ପଢୁଁ ।

ତୁଳସୀ– ବାସ୍ । ସେହି ରାମାୟଣ ଅବଲମ୍ବନ କରି ରହ । ସେଇ ତମକୁ ସଂସାର-ସମୁଦ୍ର ପାରକୁ ନେଇଯିବେ । ନବାହ୍ନିକ ପାଠର ଚେଷ୍ଟା କର ।

୧ମ– ବେଳେ ବେଳେ ନବାହ୍ନିକ ମୁଁ ପଢ଼େ ।

ତୁଳସୀ– ବେଶ୍ ଭଲକଥା ।

ସମସ୍ତେ– ଆମେ ପ୍ରଣାମ କରୁଛୁଁ ।

ତୁଳସୀ– ହଉ ଯାଅ, ପୁଣି ଆସୁଥିବ ।

ସମସ୍ତେ- ନିଶ୍ଚୟ ଆସୁଥିବୁଁ ।

(ସୁଖପାଳ ନାମକ ବ୍ରାହ୍ମଣର ପ୍ରବେଶ)

ତୁଳସୀ– କେଉଁଠୁ ଅଇଲ ବାପ ?

ସୁଖପାଳ– ମେବାରରୁ ।

ତୁଳସୀ– ମେବାରରୁ ? ତୁମ ନାଁ କଣ ?

ସୁଖପାଳ– ସୁଖପାଳ ମିଶ୍ର ।

ତୁଳସୀ– କଣପାଇଁ ଅଇଲ ?

ସୁଖପାଳ– ମେବାରର ମହାରାଣୀ ମୋ ହାତରେ ଆପଣଙ୍କୁ ଚିଠି ଦେଇଛନ୍ତି ।

ତୁଳସୀ– ମେବାରର ମହାରାଣୀ ମୀରାବାଈଙ୍କ ନାଁ ଶୁଣିଛି । ସେ ପରମ ଭକ୍ତିମତୀ । କାହିଁ ତାଙ୍କ ପତ୍ର, ଦିଅ ।(ସୁଖପାଳର ପତ୍ରଦେବା– ତୁଳସୀ ଦାସଙ୍କ ପତ୍ରପାଠ)

ସୁଖପାଳ– ମହାରାଣୀ କଣ ଲେଖିଛନ୍ତି, ମହାଶୟ ?

ତୁଳସୀ– ପଢୁଛି ଶୁଣ– ଶ୍ରୀ ଶ୍ରୀ ଗିରିଧାରୀ ଶରଣମ୍ । ଶ୍ରୀଚରଣ କମଳେଷୁ । ସ୍ୱସ୍ତି ତୁଳସୀ ଦାସ ଗୋସାଇଁଜୀ । ଆପଣ ବହୁଗୁଣ ଭୂଷଣ ଏବଂ ବିବିଧ ଦୋଷର

ହରଣକର୍ତ୍ତା ଅଟନ୍ତି । ମୁଁ ଆପଣଙ୍କୁ ବହୁବାର ପ୍ରଣାମ କରୁଛି । ଆପଣ ମୋର ଦୁଃଖଶୋକ ନଷ୍ଟ କରନ୍ତୁ । ମୋର ସ୍ୱଜନ ଆତ୍ମୀୟ ମୋ ପ୍ରତି ବଡ଼ ଅତ୍ୟାଚାର କରୁଛନ୍ତି । ମୁଁ ଯେ ସାଧୁ ସଙ୍ଗ କରେ ଓ ସାଧନ ଭଜନ କରେ, ଏଥିରେ ସେମାନେ ରାଗି ମୋତେ ପୀଡ଼ା ଦେଉଛନ୍ତି । ଏକା ଗିରିଧାରୀ ଲାଲ ମୋର ମିତ୍ର । ତାଙ୍କ ପାଦପଦ୍ମରେ ମୋର ମତି ସ୍ଥିର ରହିଛି । ଆପଣ ମୋର ପିତୃ ମାତୃ ତୁଲ୍ୟ ଓ ଭକ୍ତ ମାନଙ୍କର ସୁଖଦାୟକ । ଏ ଅବସ୍ଥାରେ ମୋର କର୍ତ୍ତବ୍ୟ କଣ ତାହା ବୁଝାଇ ଲେଖିବେ । ଇତି

ଆପଣଙ୍କର ଚରଣସେବିକା

ମୀରାଦାସୀ

ସୁଖପାଳ— ଆପଣ ଚିଠିର ଉତ୍ତର ଦେଲେ ମୁଁ ଶୀଘ୍ର ମେବାର ଫେରିବି ।

ତୁଳସୀ— ଚିଠିର ଉତ୍ତର ଲେଖୁଛି । ତମେ ଏଇନା ଯିବ କିପରି ? ଗାଧୋଇ ବିଶ୍ୱନାଥଙ୍କୁ ଦର୍ଶନ କରି ଆସ । ପ୍ରସାଦ ପାଇ ଦୁଇଦିନ ବିଶ୍ରାମ ନେଇ ପରେ କ୍ଳାନ୍ତି ଦୂରକରି ଯିବ ।

ସୁଖପାଳ— ମତେ ଆଜି ଫେରିବାକୁଇ ହେବ ।

ତୁଳସୀ— ଆଜିତ ବିଶ୍ରାମ କର, କାଲି ସକାଳୁ ଯିବ ।

(ଜନୈକ ଭକ୍ତ ପ୍ରତି) କାଗଜ କଲମ ଆଣିଲ— (ଭକ୍ତ ଯାଇ କାଗଜ କଲମ ଆଣି ଦେବାରୁ ତୁଳସୀ ଦାସ ମୀରାଙ୍କୁ ପତ୍ର ଲେଖିଲେ ।)

୧ମ ଭକ୍ତ— କଣ ପୁଣି ଲେଖିଲେ ?

ତୁଳସୀ— ପଢ଼େଁ ଶୁଣ— (ପାଠକଲେ) ଶ୍ରୀରାମ ଶରଣଂ ମମ । ସ୍ୱସ୍ତି ଶ୍ରୀମତୀ ମୀରାବାଈ । ତୁମ ପତ୍ର ପାଇଲି । ଯେ ବ୍ୟକ୍ତି ଭଗବତ ବିଦ୍ୱେଷୀ, ସେ ଯେତେ ନିକଟବର୍ତ୍ତୀ ଆତ୍ମୀୟ ସ୍ୱଜନ ହେଲେ ମଧ ଶତ୍ରୁବଦ୍ ସହସ୍ରଥର ପରିତେଜ୍ୟ । ପ୍ରହ୍ଲାଦ ବିଷ୍ଣୁଦ୍ୱେଷୀ ପିତାକୁ, ବିଭୀଷଣ ରାମଦ୍ୱେଷୀ ରାବଣକୁ, ଭରତ ରାମଦ୍ୱେଷୀ କୈକେୟୀକୁ ପରିତ୍ୟାଗ କରିଥିଲେ । ବଳୀରାଜା ବାମନବିଦ୍ୱେଷୀ ଉପଦେଷ୍ଟା ଗୁରୁ ଶୁକ୍ରଙ୍କର ଉପଦେଶ ମାନି ନଥିଲେ କି ଶୁଣି ନଥିଲେ । ଗୋପୀଗଣ ବନ୍ଧୁ ବାନ୍ଧବ ଆତ୍ମୀୟ ସ୍ୱଜନ, ଏପରି କି ସ୍ୱାମୀକୁ ପର୍ଯ୍ୟନ୍ତ ବିଷ୍ଣୁସଙ୍ଗଲାଭ ପାଇଁ ତ୍ୟାଗ କରିଥିଲେ । ସେମାନଙ୍କର ଏହି ବ୍ୟବହାର ଜଗତର ମଙ୍ଗଳକର ହୋଇଥିଲା । ଭଗବାନଙ୍କ ସଙ୍ଗରେ ଯେଉଁ ଜନର ଆତ୍ମୀୟତା ନଥାଏ, ତାହା ସହିତ କୌଣସି ସମ୍ବନ୍ଧ ରଖିବା ଅକର୍ତ୍ତବ୍ୟ । ଯେଉଁ ଅଞ୍ଜନ ଚକ୍ଷୁର ପୀଡ଼ାଦାୟକ ହୁଏ ସେହି ଅଞ୍ଜନକୁ କିଏ ବ୍ୟବହାର କରେ ?

ସେହି ପ୍ରକୃତ ଆତ୍ମୀୟ ଏବଂ ନିଜଠାରୁ ଆହୁରି ପ୍ରିୟ ଓ ଆଦରର ପାତ୍ର, ପୁଣି ବନ୍ଧୁ, ଯେ ଭଗବାନଙ୍କ ସହିତ ଘନିଷ୍ଠ ସମ୍ବନ୍ଧ କରିଦେଇ ପାରନ୍ତି ।

ଇତି

ଶୁଭାର୍ଥୀ ତୁଳସୀ ଦାସ

(ତୁଳସୀ ପତ୍ର ପଢ଼ି ସୁଖପାଳଙ୍କୁ ଦେଲେ)

ତୁଳସୀ— ଯାଅ ସୁଖପାଳ, ଗାଧୋଇ ଆସ ।

(ସୁଖପାଳଙ୍କର ଗମନ । ନେପଥ୍ୟେ— ମା, ଚଞ୍ଚଳ ଆସିବେ, ଆମମାନଙ୍କର ସବୁ ଠିକ୍ ଅଛି । ମୁଁ ପ୍ରଣାମ କରି ଯାଉଛି— ଜଣେ ବ୍ରାହ୍ମଣୀ ଆସି ତୁଳସୀଙ୍କୁ ପ୍ରଣାମ କଲେ ।)

ତୁଳସୀ— ଭାଗ୍ୟବତୀ ହୁଅ ।

ବ୍ରାହ୍ମଣୀ— ମତେ ବାବା କି କଲ୍ୟାଣ କରୁଛନ୍ତି ? ମୋର ସ୍ୱାମୀ ମରି ଯାଇଛନ୍ତି । ଚିତା ପ୍ରସ୍ତୁତ, ମୁଁ ସହମୃତା ହେବାକୁ ଯାଉଛି ।

ତୁଳସୀ— ସହମୃତା କାହିଁକି ହେବୁ, ମା ?

ବ୍ରାହ୍ମଣ— ସ୍ୱାମୀ ଚାଲିଗଲେ, ଆଉ ଏ ଜୀବନ ରଖି ଲାଭ କଣ— ଦରକାର ବା କଣ ଅଛି ? ସହମୃତା ହେଲେ ତାଙ୍କ ସଙ୍ଗେ ସ୍ୱର୍ଗ ଭୋଗ କରିବି ।

ତୁଳସୀ— ସ୍ୱର୍ଗଭୋଗର ତ କ୍ଷୟ ଅଛି ମା ! ପୁଣି ସଂସାରକୁ ଆସି ଦୁଃଖ ଭୋଗିବାକୁ ହେବ । ଯେଉଁ ଉପାୟରେ ଏହିପରି ଯିବା ଆସିବା ଚିରଦିନ ପାଇଁ ବନ୍ଦ ହୋଇଯାଏ, ତାହା କରିବା ଉଚିତ୍ ନୁହେଁ କି ?

ବ୍ରାହ୍ମଣୀ— ତେବେ, ମୁଁ କଣ କରିବି ବାବା ?

ତୁଳସୀ— ଭଗବାନଙ୍କ ଶରଣ ନେଇ କେବଳ ରାମ ନାମ ଜପ କର ।

ବ୍ରାହ୍ମଣୀ— ରାମ ରାମ ରାମ । ଆହ କି ମିଠା ନାଁ । (ତୁଳସୀ ଦାସଙ୍କ ପାଦଧରି ପଡ଼ି) ବାବା ଆପଣ ଈଶ୍ୱର ଦ୍ରଷ୍ଟା ମହାପୁରୁଷ, ମହାଭକ୍ତ । ଆପଣଙ୍କ ଆଶୀର୍ବାଦ କଦାପି ମିଥ୍ୟା ହେବନାହିଁ । ଯମ ସତ୍ୟବାନଙ୍କୁ ବଞ୍ଚାଇଲା ପରି ଆପଣ ମୋର ମୃତ ସ୍ୱାମୀଙ୍କୁ ବଞ୍ଚାଇ ଦେବାକୁ ପଡ଼ିବ ।

ତୁଳସୀ— ବଞ୍ଚିବା ମରିବାରେ ସୀତାରାମଙ୍କର ହାତ ରହିଛି ।

ବ୍ରାହ୍ମଣୀ— ସୀତା ରାମଙ୍କ ଶକ୍ତିରେ ସୀତା ରାମଙ୍କ ଦାସମାନେ ଶକ୍ତିମାନ । ଆପଣ ଆସନ୍ତୁ ବାବା !

ତୁଳସୀ— ମତେ ଯିବାକୁ ହେବ ? ହଉ ଚାଲ । (ଭକ୍ତମାନଙ୍କ ପ୍ରତି) ତମେମାନେ ମୋ ସାଙ୍ଗେ ଆସ ।

## ଦଶମ ଦୃଶ୍ୟ

(ଦିଲ୍ଲୀ ରାଜସଭାରେ ଜହାଁପନା ବାଦଶାହ ଆକବର, ତାନସେନ, ଉଜୀର ଓ ଜଣେ ଓମରାହ)

ଆକବର– ସେଦିନ ମେବାରର ମନ୍ଦିରରେ ମାଆ ମୀରାବାଈଙ୍କ ଭଜନ ଏ ପର୍ଯ୍ୟନ୍ତ ବି ମୋ କାନରେ ଲାଗିଯାଇଛି । କି ଚମତ୍‌କାର ତାଙ୍କର କଣ୍ଠସ୍ୱର ! ଗାଉଥିଲେ– ଗୀତ ବି ମନେ ଅଛି ମୋର ।

"ଜବସେ ମୋହି ନନ୍ଦନନ୍ଦନ ଦୃଷ୍ଟି ପଡ଼୍ୟୋମାଇ ।

ତବସେ ପରଲୋକ ଲୋକ କଛୁ ନାସୋହାଇ ।"

ପ୍ରତି କଥାଟି ଯେମିତି ସୁଧାରେ ତିଆରି । କି ମଧୁର ପଦାବଳୀ । ତାଠୁଁ ବଳି ଅପୂର୍ବ ଭଜନ । ଆକୁଳ ସ୍ୱରରେ ପ୍ରେମରାଗ ଯେମିତି ଏକ ହୋଇ ମିଶିଯାଇ ଅନିର୍ବଚନୀୟ ଭାବ ସୃଷ୍ଟି କରୁଥିଲା ।

ତାନ୍‌ସେନ–ଜହାଁପନା ! ମାନବୀ ନୁହନ୍ତି ସେ ।

ଆକବର– ସତରେ ସେ ମାନବୀ ନୁହଁନ୍ତି । କେଉଁ ବ୍ରଜବାଳୀ ଶାପଭ୍ରଷ୍ଟା ହୋଇ ମେବାର ମହାରାଣୀ ମୀରାବାଈ ରୂପେ ଅବତୀର୍ଣ୍ଣ ହୋଇଛନ୍ତି ।

ତାନ୍‌ସେନ୍–ଅନେକେ ଏଇ କଥା କହନ୍ତି ।

ଆକବର– ଆପଣଙ୍କ ଗୁରୁଜୀଙ୍କ ଗୀତର ବି ତୁଳନା ହୁଏନା ।

ତାନ୍‌ସେନ୍–ମୀରାବାଈ ବା ମୋ ଗୁରୁଜୀ ଗୀତ ମଣିଷମାନଙ୍କୁ ଶୁଣାନ୍ତି ନାହିଁ । ସେମାନଙ୍କ ଶ୍ରୋତା ସ୍ୱୟଂ ଭଗବାନ । ସେଥିପାଇଁ ସେମାନଙ୍କ ଗୀତ ସାଙ୍ଗରେ ଆମମାନଙ୍କ ଭଳି ରାଜଦରବାର ଗାୟକମାନଙ୍କ ତୁଳନା ହୁଏ ନାହିଁ ।

ଆକବର– ଉଜୀର, କାଶୀକୁ ଲୋକ ପଠାଇଛ ?

ଉଜୀର– ହଁ, ହଜୁର ।

ଆକବର– (ତାନ୍‌ସେନଙ୍କ ପ୍ରତି) ଗୋଟିଏ ଅପୂର୍ବ ସମ୍ବାଦ ଶୁଣିଲି । ତୁଳସୀଦାସ ଗୋସ୍ୱାମୀ ଗୋଟିଏ ମୃତଲୋକକୁ ଜୀବନ ଦାନ କରି ବଞ୍ଚାଇ ଅଛନ୍ତି– ଏଭଳି କଥା ତ କେଉଁଠି ଶୁଣିନାହିଁ । ତାଙ୍କୁ ଆଣିବାକୁ ଲୋକ ପଠାଇଛି ।

ତାନ୍‌ସେନ–ସେ କଣ ଆସିବେ ?

ଆକବର– ମୁଁ ଉପଯୁକ୍ତ ଲୋକ ପଠାଇଛି– ଆସିବାର ସମ୍ଭାବନା ଅଛି ବେଶି (ନେପଥ୍ୟେ ତୁଳସୀ ଦାସ– ରାମ ରାମ ରାମ– ତୁଳସୀ ଦାସଙ୍କ ପ୍ରବେଶ । ସମସ୍ତଙ୍କ ଅନୁଗମନ ଓ ନମସ୍କାର । ତୁଳସୀଦାସ ପ୍ରତି ନମସ୍କାର କଲେ ।)

ଆକବର— ଆସନ୍ତୁ ଆସନ୍ତୁ, ମୋର ଆଜି ଭାଗ୍ୟ ବୋଲି ମହାତ୍ମା ପୁରୁଷଙ୍କ ଦର୍ଶନ ପାଇଲି ।

ତୁଳସୀ— ରାମ ରାମ ରାମ । ଏ ଦୀନ ଅଧମକୁ ମହାପୁରୁଷ କହନ୍ତୁ ନାହିଁ, ଜହାଁପନା !

ଆକବର— ଯେ ମଲା ମଣିଷକୁ ଜୀଆଇଁ ଦିଅନ୍ତି, ତାଙ୍କୁ ମହାପୁରୁଷ ନ କହି କଣ କହିବି ? ଏପରି ଘଟଣା ତ ଶୁଣିନାହିଁ ଜୀବନରେ ।

ତୁଳସୀ— ମତେ କଣ ପାଇଁ ଡକାଇ ଆଣିଲେ ଜହାଁପନା ।

ଆକବର— ଆପଣ ସିଦ୍ଧ ପୁରୁଷ । ଆପଣଙ୍କ କୃପାରେ ମୃତବ୍ୟକ୍ତି ମଧ୍ୟ ଜୀବନ ପାଇଛି । ମତେ କିଛି ବିଚିତ୍ର କଥା ଦେଖାଇବାକୁ ହେବ ।

ତୁଳସୀ— ସମ୍ରାଟ ! ମୋର ଏକମାତ୍ର ରାମନାମ ଛଡ଼ା ଆଉ କିଛି ସିଦ୍ଧି ନାହିଁ । ମୋର ସମ୍ବଳ ରାମ ଓ ରାମ ନାମ ।

ଆକବର— ଭଲକଥା, ଆପଣଙ୍କ ରାମଙ୍କୁ ମୋତେ ଦେଖାନ୍ତୁ ।

ତୁଳସୀ— ମୁଁ ଇଚ୍ଛା କଲେ ତ ଆପଣଙ୍କୁ ଦେଖାଇ ପାରିବି ନାହିଁ; ଦେଖାଦେବା ନଦେବା ତାଙ୍କ କୃପା ।

ଆକବର— ଆପଣ ତ ପରମଭକ୍ତ । ଆପଣ ଇଚ୍ଛା କଲେ ଅବଶ୍ୟ ମତେ ରାମଙ୍କୁ ଦେଖାଇ ପାରିବେ । ଆପଣ ଯେବେ ପ୍ରାର୍ଥନା କରିବେ, ରାମ ମତେ ଦେଖା ନଦେଇ ରହି ପାରିବେ ନାହିଁ ।

ତୁଳସୀ— ରାମଙ୍କୁ ଦେଖାଇବା ଶକ୍ତି ମୋର ନାହିଁ ।

ଆକବର— ମତେ କ୍ଷମା ଦେବେ, ଯେତେବେଳଯାଏ ରାମଙ୍କୁ ଆପଣ ମୋତେ ନଦେଖାଇ ପାରିବେ, ଆପଣ ଏଠି ବନ୍ଦୀ ରହିଲେ ।

ତୁଳସୀ— ଯାହା ମୋର ସାଧ୍ୟାତୀତ, ତାହା ଆପଣଙ୍କୁ କିପରି ଦେଖାଇବି କୁହନ୍ତୁ ?

ଆକବର— ପହରାଓ୍ୱାଲା ! (ପ୍ରହରୀ ସଲାମ କରି, ଜହାଁପନା ?) ଏ ଗୋସାଇଁଙ୍କୁ ନେଇ କଇଦୀଖାନାରେ ରଖ, ଯେତେଦିନ ଯାଏ ସେ ରାମଙ୍କୁ ନ ଦେଖାଇବେ, ଏଇପରି ବନ୍ଦୀ ରହିଥିବେ । (ପ୍ରହରୀ ତୁଳସୀଙ୍କୁ ନେଇ ପ୍ରସ୍ଥାନ)

ତାନସେନ—ଏ ଜଣେ ଭକ୍ତ, ବିନା ଅପରାଧରେ ବନ୍ଦୀ କରିବା— ।

ଆକବର— ଓସ୍ତାଦଜୀ—ମୁଁ ଗୋସାଇଁଙ୍କର କିଛି ସମ୍ମାନ ହାନି କରୁନାହିଁ । ସେ ଭକ୍ତ—ଭକ୍ତକୁ ଭଗବାନ ଚିରଦିନ ରକ୍ଷାକରନ୍ତି । ନିଶ୍ଚୟ ସେ ଯାଙ୍କୁ ଉଦ୍ଧାର କରିବା ବ୍ୟବସ୍ଥା କରିବେ । ଆମ୍ଭେମାନେ ତାଙ୍କ ମହିମା ଦେଖି ମୁଗ୍ଧ ହେବା । ଆପଣ ଚିନ୍ତା କରିବେ ନାହିଁ । ତାଙ୍କ ଠାକୁର ରାମଚନ୍ଦ୍ର ନୀରବ ରହିବେ ନାହିଁ । ସତ୍ୱର ଯାଙ୍କୁ

ଉଦ୍ଧରିବା ଉପାୟ କରିବେ । ଆପଣ ଗୋଟିଏ ଗୀତ ଗାଆନ୍ତୁ ତ ?
(ତାନସେନ ତାନପୁରା ବାନ୍ଧି ଗୀତ ଗାଇଲେ)

ମାଧବ ମଧୁସୂଦନ ମୁକୁନ୍ଦ ମୁରାରେ
କେଶବ କମଲଲୋଚନ ବ୍ରଜ ବନୋୟାରୀ ।
ଜନାର୍ଦ୍ଦନ ଜଗତ ଗର୍ବ ଖର୍ବକାରୀ ।
ଅସୁର ନାଶନ କଂସାସୁର ହାରୀ ।।
ବିଷ୍ଣୁ ବୈକୁଣ୍ଠେ ବିରାଟ ବାମନ
ବିରଞ୍ଚ୍ ବନ୍ଦନ ବିଶ୍ୱବିହାରୀ ।
କହେ ମିୟାଁ ତୁମ୍ ହୋ ତ୍ରିଗୁଣ ଗୁଣି
ଗୋପାଲ ଗିରିଧର ଗୋବର୍ଦ୍ଧନଧାରୀ ।।

(ବାହାରେ ବହୁ କଣ୍ଠରେ–କୁଆଡ଼େ ଯିବୁ ଗୋ । ବାନର ଦଳ–ଉପ୍ ଉପ୍ ଖ୍ୟାକର୍ ଖ୍ୟାକର୍ ନେପଥ୍ୟେ–ଆରେ ବାପାରେ–ମାରି ପକାଇଲେରେ–ମାରି ପକାଇଲେ ରେ)

ଆକବର– କି ବ୍ୟାପାର ହେଲା ? (ପ୍ରହରୀ ପବେଶ)

ପ୍ରହରୀ– ଜହାଁପନା–ହଜାର ହଜାର ମାଙ୍କଡ଼ ଦଳ ରାଜ ପ୍ରାସାଦରେ ରୁଣ୍ଡ ହେଲେଣି । ବେଗମମାନଙ୍କ ଶାଢ଼ୀ ଲୁଗା ଛିଣ୍ଡାଇ ଏକାକାର କଲେଣି । ମାଙ୍କଡ଼ମାନେ କାହା ହାତ ଧରି ଟାଣୁଛନ୍ତି, କାହା ପାଦ ଟାଣି ଫିଙ୍ଗି ଦେଉଛନ୍ତି । ଛାତରେ, ଘରେ, ଗଛମାନଙ୍କରେ ମାଙ୍କଡ଼ମାନେ ଓହଳି ରହିଛନ୍ତି । ବର୍ଷାକାଳ ବନ୍ୟାଭଳି ମାଙ୍କଡ଼ ଦଳ ଅସୁମାରି ଆସି ଦିଲ୍ଲୀ ସହର ଖେଦିଗଲେଣି । ସମସ୍ତଙ୍କୁ ନଙ୍ଗଳା କରି ଦେଉଛନ୍ତି । (ନେପଥ୍ୟେ– ଉପ୍ ଉପ୍– ଖ୍ୟାକର୍ ଖ୍ୟାକ୍ । ଗଲି ରେ ଗଲି ରେ ଲଙ୍ଗଳା କରିଦେଲେ ରେ)

ଆକବର– ଏସବୁ କି କଥା ?

ତାନସେନ୍–ଗୋସେଇଁଙ୍କୁ ମୁକ୍ତ କରିବାକୁ ହନୁମାନଜୀ ତାଙ୍କ ସେନା ପଠାଇ ଦେଲେଣି । (ଉପ୍ ଉପ୍–ଖ୍ୟାକର ଖ୍ୟାକ୍ କହି ଚାରୋଟି ମାଙ୍କଡ଼ ଆସି ପ୍ରବେଶ– ଉପ୍ ଉପ୍ ଖ୍ୟାକର ଖ୍ୟାକର ଖ୍ୟାକ୍ ଖ୍ୟାକ୍ ଆକବରଙ୍କ ଲୁଗାପଟା ଟାଣିଲେ । ଉଜୀରକୁ ଧକ୍କା ମାରିଲେ । ମାଙ୍କଡ଼ମାନେ ତାନପୁରା ନେଇ ଉପ୍ ଉପ୍ ଖ୍ୟାକର ଖ୍ୟାକର ।)

ଆକବର– (ମାଙ୍କଡ଼ଙ୍କ ପ୍ରତି) ତୁମେମାନେ ଥୟ ହୁଅ– ମୁଁ ପ୍ରହରୀ ପଠାଇ ଏକ୍ଷଣି ଗୋସେଇଁଙ୍କୁ ମୁକ୍ତ କରି ଦେଉଛି । ପ୍ରହରୀ ! ସସମ୍ମାନେ ଗୋସେଇଁଙ୍କୁ ନେଇଆସ । (ମାଙ୍କଡ଼ମାନେ– ଉପ୍ ଉପ୍ ଖ୍ୟାକର ଖ୍ୟାକ୍, ଖ୍ୟାକ୍, ଖ୍ୟାକ୍, ଖ୍ୟାକ୍– ତାନପୁରାକୁ ବିପରୀତ ଭାବରେ ବଜେଇବାକୁ ଚେଷ୍ଟା କଲେ ।)

ତାନ୍‌ସେନ୍—ବାବା ମହାବୀର, ତାନପୁରାଟିକୁ ଭାଙ୍ଗନାହିଁ । ମହାବୀର ବାବା (ଉପ୍ ଖ୍ୟାକର ଖ୍ୟାକ ।)

(ଗୋସେଇଁଙ୍କୁ ନେଇ ପ୍ରହରୀର ପ୍ରବେଶ— ଆକବର ଗୋସେଇଁଙ୍କ ପାଦ ତଳେ ପଡ଼ିଲେ ।

ଆକବର— ଭକ୍ତପ୍ରବର ! ମୋର ଅପରାଧ କ୍ଷମା କରନ୍ତୁ ।

ତୁଳସୀ— (ଆକବରଙ୍କୁ ଉଠାଇ) ମୁଁ ଦୀନ ହୀନ ଭିକାରୀ— ମତେ ଏପରି କହିବା ସାଜୁନାହିଁ ।

ଆକବର— ଆପଣ ଯେ ରାମଚନ୍ଦ୍ରଙ୍କ ପରମଭକ୍ତ ତା ବୁଝିଛି ।

(ବାନର ଦଳ ଉପ୍—ଉପ୍—ଖ୍ୟାକର, ଖ୍ୟାକ୍ ପୁନରାବୃତ୍ତି କଲେ ଓ ଉଜୀରକୁ ଧକ୍‌କା ମାରିଲେ ।)

ତାନସେନ୍—ଭାଙ୍ଗନା ବାବା !

ଆକବର— ଅଗଣ୍ୟ ବାନରସେନା ଦିଲ୍ଲୀ ଆକ୍ରମଣ କରିଛନ୍ତି । ଆପଣ କୃପାକରି ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ଆଜିଠାରୁ ଏ ରାଜପ୍ରାସାଦ ଛାଡ଼ିଦେଲି, ଏ ପ୍ରାସାଦ ଆପଣଙ୍କର ରଘୁନାଥଙ୍କର ହେଲା ।

ତୁଳସୀ— (କୃତାଞ୍ଜଳୀ ହୋଇ)

''ଗୋସ୍ପଦୀ କୃତ ବାରୀଶଂ ମଶକୀକୃତ ରାକ୍ଷଶଂ ।
ରାମାୟଣ ମହାମାଳା ରତ୍ନଂ ବନ୍ଦେହନୀଳାତ୍ମଜମ୍ ।
ଅଞ୍ଜନାନନ୍ଦନଂ ବୀରଂ ଜାନକୀ ଶୋକନାଶନମ୍ ।
କପୀଶମକ୍ଷହନ୍ତାରଂ ବନ୍ଦେ ଲଙ୍କା ଭୟଙ୍କରମ୍ ।''

ହେ ମହାବୀର ! ଆପଣ କୃପା କରି ଦିଲ୍ଲୀ ରକ୍ଷା କରନ୍ତୁ ।

(ନେପଥ୍ୟେ ଭୀଷଣ ହୁଁକାର । ବାନରମାନେ— ଉପ୍ ଉପ୍ ଖ୍ୟାକର ଖ୍ୟାକ— ଉପ୍ ଉପ୍ ଖ୍ୟାକର ଖ୍ୟାକ୍, ଖ୍ୟାକ୍ । ବାନରମାନଙ୍କର ପଳାୟନ ଚେଷ୍ଟା ।)

## ଏକାଦଶ ଦୃଶ୍ୟ

(ଚିତ୍ରକୂଟରେ ତୁଳସୀ ଦାସଙ୍କ କୁଟୀରରେ ଚୋର ପ୍ରବେଶ)

ଚୋର— ଆଜି ଦିନକ କଥା ନୁହେଁ, ତିନିଦିନ ଧରି ଦେଖୁଛି ଧନୁଶରଧରା ଗୋଟିଏ ଶାବନା ରଙ୍ଗ ଟୋକା ପହରା ଦେଉଛି । ରାତିରେ ୪/୫ ଥର ଆସି ଏହା ଦେଖି ଫେରିଗଲି । ସେଦିନ ଗୋସାଇଁଙ୍କୁ ଗୋଟିଏ ରାଜା ସୁନାର ଥାଳି ବାସନ ଦେଇ ଯାଇଛି— ତାକୁ ପାଇବି କିମିତି ଏଇ ମୋର ଚିନ୍ତା । ଥାଳି ନୋଟା ତ ଚୋରାଇ ପାରିଲି ନାହିଁ—ବରଂ ସେ ଶାବନା ଟୋକାଟି ମୋ ମନ

ଚୋରାଇ ନେଲା । ସେ ସିପାଇକୁ ନ ଦେଖିଲେ ତ ମୁଁ ବଞ୍ଚିପାରିବି ନାହିଁ ? ସକାଳୁ ଯାଇଁ ଗୋସେଇଁକି ସିପେଇକୁ ଦେଖାଇବା କଥା କହିବି । (ଗମନ)

(ଧନୁଶର ଧରି ରାମଙ୍କ ପ୍ରବେଶ)

ରାମ— ଯେ ନିଜର ଭାର ନିଜେ ବହେ, ନିଜ ଭାର ନିଜ କାନ୍ଧରେ ଥୁଏ, ତା ପାଇଁ ମୋତେ ଭାବିବାକୁ ହୁଏ ନାଇଁ । ଯେଉଁମାନେ ସେମାନଙ୍କ ସବୁ ଭାର ମୋ ଉପରେ ଲଦିଛନ୍ତି, ସେମାନଙ୍କ ଯୋଗ କ୍ଷେମ ମତେ ବହିବାକୁ ପଡ଼େ । ଯେଉଁମାନେ ଅନନ୍ୟଭାବରେ ମତେ ଚିନ୍ତିବେ, ସେମାନଙ୍କର ଯାହା ନଥିବ ମୁଁ ସେମାନଙ୍କୁ ଆଣିଦିଏ । ଯାହା ସେମାନଙ୍କର ଥାଏ; ତାକୁ ମୁଁ ରକ୍ଷାକରେ । ଦେଖେଁ କେଉଁଠିକୁ ଗଲା (ଗମନ)

ଚୋର— ଗୋସେଇଁ, ହୋ ଗୋସେଇଁ ମହାପ୍ରଭୁ !

ତୁଳସୀ— କଣ ରେ, କାହିଁକି ଡାକୁଛୁ ?

ଚୋର— ତମର ସେଇ ଶାବନା ସିପେଇଟି କୁଆଡ଼େ ଗଲା ?

ତୁଳସୀ— ଶାବନା ସିପେଇ କିଏ ! ମୁଁ ଜାଣିନାଇଁ ବାପ । ତୁ ତାକୁ କେଉଁଠି ଦେଖିଲୁ ?

ଚୋର – ମୁଁ ଗୋଟିଏ ଚୋର— ମୋର ବେଉସା ଚୋରି କରିବା । ମୁଁ ୩/୪ଦିନ ହେଲା ତମ କୁଟୀରକୁ ଆସି ଫେରୁଛି । ରାତିରେ ଆସି ଦେଖେଁ, କଅଁଳ ଦୁବଘାସ ରଙ୍ଗର ଗୋଟିଏ ଟୋକା ହାତରେ ଧନୁର୍ବାଣ ଧରି ତମ ଘରେ ପହରା ଦିଏ । ରାତିରେ ୪/୫ ଥର ଆସି ଦେଖେ ସେ ପହରା ଦେଉଥା । ତିନିଦିନ ତାକୁ ଦେଖି ମୋ ମନଟା କଣ ହେଉଛି, ବୁଝିପାରୁନାଇଁ । ଚୋରାଇବାକୁ ଆଉ ମନ ନାଇଁ—ଖାଲି ତାକୁ ଦେଖିବାକୁ ମୋ ମନହୁଏ । ଗୋସେଇଁ, ତାକୁ ଥରେ ମତେ ଦେଖାଅ— ଗୋଡ଼ତଳେ ପଡୁଛି ।

(ଗୋଡ଼ତଳେ ପଡ଼ିବା)

ତୁଳସୀ – ଆରେ ତୋର କି ସୌଭାଗ୍ୟ ଯେ, ତାଙ୍କୁ ଦେଖିଲୁ । ହେ ପ୍ରଭୁ— ଦୟାମୟ ! ତୁମେ ମୋର ସାମାନ୍ୟ ଥାଳି ତାଟିଆ ଜଗିବାକୁ ରାତିଯାକ ନଶୋଇ ପହରାଦିଅ । (ବେଗରେ ଯାଇ ସୁନା ଥାଳି ତାଟିଆ ଆଣି ପ୍ରବେଶ) ଏଥିପାଇଁ ଆସୁଥିଲୁ ? ନେ ଏ କଂସା ଗିଲାସ ଥାଳି ।

ଚୋର— ଗୋସାଇଁ, ମୋର ଏ ସବୁ କିଛି ଆଉ ଦରକାର ନାହିଁ । ମୋତେ ସେ ଶାବନା ସିପେଇଟିକୁ ଦେଖାଅ ତୁମେ ।

ତୁଳସୀ— ବାପା, ତାଙ୍କୁ ଦେଖାଇବା ଶକ୍ତି ମୋର ନାହିଁ । ତୋର ଜନ୍ମ ଜନ୍ମର ତପସ୍ୟା ଥିବାରୁ ତିନିଦିନ ତାଙ୍କୁ ଦେଖିଲୁ—ସୁନା ଥାଳି କଂସା ନେଇ ଯା—

ଚୋର– ମୋର ଥାଳି ଗିଲାସରେ ଦରକାର ନାହିଁ ଆଉ । ତୁମ ପାଦତଳେ ସ୍ଥାନଦିଅ, ତା ହେଲେ କେବେ ସେହି ଶାବନା ସିପେଇକୁ ଦେଖିବି ।

ତୁଳସୀ– ଆଚ୍ଛା, ପରେ ସେ ବ୍ୟବସ୍ଥା କରାଯିବ ।

ଚୋର– ପରେ ନୁହେଁ, ଏଇନେ ତାର ବ୍ୟବସ୍ଥା କର ।

ତୁଳସୀ– ଯା, ଗାଧୋଇ ସାରି ଆ ଯା । (ଚୋର ଓ ତୁଳସୀଙ୍କ ଗମନ । ରାମଚନ୍ଦ୍ରଙ୍କ ପ୍ରବେଶ ।)

ରାମ– ଏଠିକା କାମ ସରିଲା । ଚୋର ତୁଳସୀ ଦାସ ଆଶ୍ରା ନେଲାଣି । ତାର ବହୁ ଜନ୍ମର ସାଧନା ଥଲା–ମୋତେ ଦେଖିଲା ।

(ମହାବୀର ଦାସ୍ୟ ଓ ମଧୁର ରସକୁ ନେଇ ପ୍ରବେଶ– ରାମଙ୍କ ମୁହଁକୁ ଦୁଇ ରସ ଆକୁଳ ନୟନରେ ଚାହିଁଲେ ।)

ମହାବୀର– ଏଥର ତମେ ପ୍ରଭୁଙ୍କୁ ପଚାର, ମୀମାଂସା ହୋଇଯିବ ।

ରାମ– କି ମୀମାଂସା ?

ମହାବୀର– ଏ ଦୁହେଁ ଦୁଇଟି ରସର ପ୍ରତୀକ । ଦିହେଁ କଳି କରୁଛନ୍ତି– ଦାସ୍ୟ ବଡ଼ କି ମଧୁର ବଡ଼ । ଏମାନେ ମୋ ପାଖକୁ ଆସୁଛନ୍ତି । ମୁଁ କିଛି ସିଦ୍ଧାନ୍ତ କରି ନପାରି ଆପଣଙ୍କ ପାଖକୁ ଆଣିଲି । ରାମଲୀଳାର ଦାସ୍ୟ, କୃଷ୍ଣ ଲୀଳାର ମାଧୁର୍ଯ୍ୟ ନେଇ ଏମାନଙ୍କ ବିବାଦ ।

ରାମ– ଦାସ୍ୟ–ମଧୁର–ମୋ କତିକୁ ଆସ ।

(ଦୁଇଜଣ ରାମଙ୍କ କତିକି ଯିବାରୁ ରାମ ଦୁଇଜଣଙ୍କ ମୁଣ୍ଡ ଆଉଁଷିଲେ) ଆରେ ଦାସ୍ୟ ମଧୁର !

ମୁହିଁ ଏକ ଅଦ୍ୱିତୀୟ ରସଘନ–
ରସମୟ ରସର ଆଧାର, ରସତମ
ଏକ ଭିନ୍ନ ଦୁଇ କିଛି ନାହିଁ ଏ ସଂସାରେ ।
ମୋତେ ମୁହିଁ ଆସ୍ୱାଦିବି ବୋଲି–
ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ, ମଧୁର ରୂପ କରିଛି ଧାରଣ ।
କରୁଅଛି ଲୀଳା ଚିରଦିନ ।
ମୋହରି ମୂରତି ତୁମେ ।
ଏ ବିରାଟ ବ୍ରହ୍ମାଣ୍ଡ ଏକା ମୁହିଁ ।
ସବୁ ସାଜି କରୁଅଛି ଅଭିନୟ
ଶ୍ରେଷ୍ଠ, ଉତ୍କୃଷ୍ଟ, ନିକୃଷ୍ଟ, ଉତ୍ତମ, ଅଧମ,

କିଛି ନାହିଁ ଏଠି
ଅଛି ମୁହିଁ ବହୁ ରୂପେ ।
ଯାହାକୁ ଯେ ଭାବେ ତାହେଁ ମୁହିଁ
ଦିଏ ମୁହିଁ ବାସନା ମୋହର ।
ସେହି ରସ ରୂପେ ତାହାରି ହୃଦୟ କରେଁ ଅଧିକାର
ଆତ୍ମସାତ୍ କରିନିଏ ଚିରଦିନ ପାଇଁ ।
ମୁହିଁ ସର୍ବରସ, ରସର ଆଧାର ଆଉ ରସତମ ମୁହିଁ ।
(ଦାସ୍ୟ ମଧୁର ପ୍ରଣାମ କଲେ)

ତୁଳସୀ– (ନେପଥ୍ୟେ) ମହାବୀର ! ମତେ ଥରେ ରାମଙ୍କୁ ଦେଖାଅ ।

ମହାବୀର– ଆସ ଆସ ଭକତ ପ୍ରଧାନ ।

(ତୁଳସୀ ଦାସ ପ୍ରବେଶ ।)

ତୁଳସୀ– ଏହି ଯେ ସେହି ନବ ଦୁର୍ବାଦଳ ଶ୍ୟାମ, ମରିଯାଏଁ– ଦିଅ ଦେବ ! ଦିଅ ନାଥ ଚରଣେ ଆଶ୍ରୟ ।

(ପାଦତଳେ ପଡ଼ିଲେ)



* ପଞ୍ଚପ୍ରଦୀପ ବହିରୁ କେବଳ 'ତୁଳସୀ ଦାସ' ନାଟକ ଏଠାରେ ଦିଆଯାଇଛି । ବାକି ନାଟକ ଗୁଡ଼ିକ ବହିରେ ଅଛି ।

# କଥା ରାମାୟଣ

## (ଆଦ୍ୟକାଣ୍ଡ)

### ୧ମ ଅଧ୍ୟାୟ

### ରାବଣ ସଭାରେ ଦଶରଥ

(ଚିତ୍ତାକାଶ-ଜୀବାତ୍ମା ଓ ମନ)

ଜୀବାତ୍ମା— ଦେଖ ସଖା—
ଉତ୍ତାଳ ତରଙ୍ଗାକୂଳ ସାଗର ସଲିଳେ—
କାଷ୍ଠ ଖଣ୍ଡ କରିଣ ଆଶ୍ରୟ
ଯାଉଅଛି ଭାସି—
ରାଜା ଦଶରଥ ଆଉ ସୁମନ୍ତ ସାରଥି ।

ମନ— ସେ କିଏ ? ଗୋଟିଏ ପେଟିକା—
ତିମିଙ୍ଗିଳ ମତ୍ସ୍ୟ ମୁଖେ
କରୁଛି ଅର୍ପଣ ?

ଜୀବାତ୍ମା— ନୁହେଁଟି ସାମାନ୍ୟ ସେ ନର
ସ୍ୱର୍ଗମର୍ତ୍ତ୍ୟ ରସାତଳ, ଯା'ର ଭୟେ
ସଦା କମ୍ପମାନ ।
ଇନ୍ଦ୍ର ଚନ୍ଦ୍ର ବାୟୁ ମୃତ୍ୟୁ ଯାହାର କିଙ୍କର
ଏହି ସେହି ଦଶାନନ,
କୋଶଳ ରାଜଦୁହିତା କୌଶଲ୍ୟାଦେବୀଙ୍କୁ
ବନ୍ଦୀକରି ପେଟିକା ମଧ୍ୟରେ
ସମର୍ପିଲା ତିମିଙ୍ଗିଳ ମୁଖେ ।

ମନ— କିମ୍ପା ସଖା ?

ଜୀବାତ୍ମା— ଦେଖ ସ୍ୱର୍ଣ୍ଣଲଙ୍କାପୁରୀ-
ମଧ୍ୟେ ରାବଣର ଗୃହ
ଅଚିରେ ରହସ୍ୟ ସବୁ
ହେବ ସ୍ୱପ୍ରକାଶ ।

× × × × ×

## ଲଙ୍କାପୁରୀ—ରାଜସଭା

(ସିଂହାସନ ଉପରେ ବସି ରାବଣ— ଅନ୍ୟାନ୍ୟ ସଭାସଦ୍‌ଗଣ ଓ ବ୍ରହ୍ମା)

ରାବଣ— (ବ୍ରହ୍ମାଙ୍କ ପ୍ରତି) ଦେବ ! ଆପଣଙ୍କ ବିଧାନ ଅଖଣ୍ଡନୀୟ ଏକଥା ସମସ୍ତେ ଜାଣନ୍ତି କିନ୍ତୁ ମୁଁ ମାନେନାହିଁ । ଏକଥା ଭୁଲ । ପୁରୁଷାର୍ଥ ପ୍ରୟୋଗ କଲେ ଆପଣଙ୍କର ବିଧି ଲଙ୍ଘି ହେବ ।

ବ୍ରହ୍ମା— ବାଜେ କଥା କହ ରାବଣ । ମୋ' ବିଧାନ ଲେଉଟାଇବା ସାଧ ଜଗତରେ କାହାରି ନାହିଁ ।

ରାବଣ— କାହାର ନଥାଉ, ମୋର ନିଶ୍ଚୟ ଅଛି, ରାବଣ ସ୍ୱାଧୀନ ପୁରୁଷ । ତା' କତିରେ ବିଧି ବିଧାନ ଅତିଶୟ ତୁଚ୍ଛ ।

ବ୍ରହ୍ମା— ମୋର କୋଉ ବିଧାନ ଖଣ୍ଡି ପାରିଛ ତୁମେ ?

ରାବଣ— ସେଦିନ ଆପଣଙ୍କୁ ପଚାରିଥିଲି ଦେବ ଦାନବ ଯକ୍ଷ ରକ୍ଷ ଗନ୍ଧର୍ବ କିନ୍ନର କାହା ହାତରେ ମୋର ମୃତ୍ୟୁ ନାହିଁ । ସେତେବେଳେ ମୁଁ ଅମର । ନର ବାନର ତ ମୋର ଖାଦ୍ୟ । କୌଶଳରେ ଆପଣଙ୍କୁ ଠକି ମୁଁ ଅମର ହେଇଚି । ଆପଣ କହିଥିଲେ ମଣିଷ ହାତରେ ମୁଁ ମରିବି । ମୁଁ କହିଲି ସେ କିଏ—କାହାପୁଅ ? ଆପଣ କହିଥିଲେ ଅଯୋଧ୍ୟାରାଜା ଦଶରଥ କୋଶଳ ଜେମା କୌଶଲ୍ୟାକୁ ବିବାହ ହେବେ । ତାଙ୍କଠୁଁ ରାମ ବୋଲି ଗୋଟିଏ ପୁଅ ଜନ୍ମ ହେବ, ସେଇ ମତେ ମାରିବ । ମୁଁ ଆପଣଙ୍କ କଥା ଶୁଣି ଅଯୋଧ୍ୟା ଯାଇ ଦେଖିଲି । ଯୁବା ଦଶରଥ ସରଯୁ ନଈରେ ଡଙ୍ଗାରେ ବସି ବିହାର କରୁଛି । ପାଞ୍ଚଦିନ ପରେ କୋଶଳ ଜେମାକୁ ସେ ବିଭା ହବ । ରାଜ୍ୟସାରା ଉତ୍ସବ ଚାଲିଛି । ମୁଁ ଯୁଦ୍ଧରେ ସମସ୍ତଙ୍କୁ ହଟେଇଲି । ଦଶରଥ ସରଯୁ ନଈରେ ବୁଡ଼ିମରିଛି । ତାକୁ ଦେଖିଲି ନାହିଁ । ତା'ପର କୋଶଳ ଦେଶକୁ ଯାଇ ରାଜା ଝିଅ କୌଶଲ୍ୟାକୁ ଗୋଟିଏ ପେଡ଼ିରେ ବନ୍ଦକରି ତିମି ମାଛକୁ ଖାଇବାକୁ ଦେଲି । ସେଥିପାଇଁ କହୁଛି ହେ ଲୋକ ପିତାମହ ! ଆପଣଙ୍କ ବିଧାନ ମୋର ଉପରେ ପ୍ରଭୂତ୍ୱ କରିବା ଶକ୍ତି ନାଇଁ । ମୁଁ ଆପଣଙ୍କର ବିଧାନର ବି ବିଧାତା ।

ବ୍ରହ୍ମା— ଓଁ ପୁଣ୍ୟାହଂ ଓଁ ପୁଣ୍ୟାହଂ ଓଁ ପୁଣ୍ୟାହଂ ।

ରାବଣ— ଏ କଣ ଆପଣ ପୁଣ୍ୟାହଂ କହୁଛନ୍ତି କାହିଁକି ?

ବ୍ରହ୍ମା— ଗନ୍ଧର୍ବ ବିଧାନରେ ବିଭାଘର ହଉଚି ପରା ?

ରାବଣ— କାହାର ? କୋଉଠି ?

ବ୍ରହ୍ମା— ପେଡ଼ି ଭିତରେ ରହି ଦଶରଥ ରାଜାଙ୍କ ସହିତ କୌଶଲ୍ୟାଙ୍କର ଗାନ୍ଧର୍ବ ବିବାହକୁ ମୁଁ ଆଶୀର୍ବାଦ କରୁଛି ।

ରାବଣ— ସେ କଣ—ଏକି କଥା ? ମୁଁ ରାଜା ଦଶରଥ ଆଉ କୌଶଲ୍ୟାଙ୍କୁ ଯେ ହତ୍ୟା କରିଛି ।

ବ୍ରହ୍ମା— କେହି ନଷ୍ଟହେଇ ନାହାନ୍ତି ରାବଣ । ଦଶରଥ ଓ ସୁମନ୍ତ୍ର ଗୋଟିଏ ବଡ଼ କାଠଘର ଧରି ଭାସି ଭାସି ସମୁଦ୍ରଭିତରେ ଏକ ଦ୍ୱୀପରେ ପହଞ୍ଚିଲେ । ସେଇ ଦ୍ୱୀପରେ ତମର କୌଶଲ୍ୟା ରହିଥିବା ପେଡ଼ି ଦେଖି ତାକୁ ଖାଇବାକୁ ଦିଓଟି ତିମି ମାଛ ଲଢୁଥିଲେ । ଏତିକିବେଳେ ସୁବିଧା ଦେଖି ରାଜା ଦଶରଥ ଓ ସୁମନ୍ତ୍ର ସେ ପେଡ଼ି ଫିଟାଇ କୌଶଲ୍ୟାଙ୍କୁ ଦେଖିଲେ । ସେହି ପେଡ଼ି ଭିତରେ ରାଜା ରାଣୀ ଦିହିଁଙ୍କ ବିଭାଘର ହେଲା— ଗାନ୍ଧର୍ବ ମତରେ । ସେ ଦ୍ୱୀପରେ ଏଇଭଳି ଗାନ୍ଧର୍ବ ମତରେ ବିଭାଘର ସେମାନଙ୍କର ହବ ଏୟା ଥିଲା ମୋର ବିଧାନ । ତୁମେ ରାମଙ୍କ ମା' କୌଶଲ୍ୟା ଦେବୀଙ୍କୁ ବହି ଆଣିବ । ଏ ବି ମୋର ବିଧାନ । ବୁଝିଲ ରାବଣ !

ରାବଣ— କି ଅସମ୍ଭବ କଥା କହୁଛନ୍ତି ଆପଣ !

ବ୍ରହ୍ମା— ମୋ' ବିଧାନରେ ସମ୍ଭବ ଅସମ୍ଭବ ବୋଲି କିଛି କଥା ନାଇଁ— ତା'ର ମାନେ ବି' ନାହିଁ । ସବୁ ସମ୍ଭବ ପୁଣି ସବୁ ଅସମ୍ଭବ । ତୁମେ ଇଚ୍ଛା କଲେ ମୋ' କଥା ପରଖି ପାର ।

ରାବଣ— ଭଲକଥା । ନିକୁମ୍ଭ ! ମୋର ଆଦେଶ ତୁମେ ଯାଇ ଦ୍ୱୀପରୁ ପେଡ଼ି ନେଇଆସ ।

ନିକୁମ୍ଭ— ଯେ ଆଜ୍ଞା ମହାରାଜ ।

ରାବଣ— ପିତାମହ ବ୍ରହ୍ମା— ଆପଣଙ୍କ କଥା ମୁଁ ଯମା ପରତେ ଯାଉନାଇଁ । କୋଉଠି ସରଯୁ ଆଉ କୋଉଠି ସମୁଦ୍ର ? କେମିତି ଏ ଯୋଗାଯୋଗ ସମ୍ଭବିଲା ? ଦେବ ! ଆପଣ ବୁଢ଼ାହେଲେଣି—ବୋଧହୁଏ ଆପଣଙ୍କ ମୁଣ୍ଡ—

ବ୍ରହ୍ମା— ଭୁଲକଥା, ଥୟ ଧର, ତମ ସନ୍ଦେହ ଦୂର ହେବ ଏଇନା ।

ରାବଣ— ଅସମ୍ଭବ—ଅସମ୍ଭବ ।

(ନିକୁମ୍ଭ ପେଡ଼ି ମୁଣ୍ଡାଇ ଆଣି ସଭାରେ ଥୋଇଲା । ପେଡ଼ି ଖୋଲିଲାରୁ ଦଶରଥ କୌଶଲ୍ୟାଙ୍କୁ ଦେଖି ରାବଣ ଚମକିଲା)

ରାବଣ— ଏ କ'ଣ— ଏ କ'ଣ— ସତରେ ତ ଦଶରଥ କୌଶଲ୍ୟା— କି ଆଶ୍ଚର୍ଯ୍ୟ !

(ଦଶରଥ କୌଶଲ୍ୟା ସୁମନ୍ତ୍ର ପ୍ରଭୃତି ବ୍ରହ୍ମାଙ୍କୁ ପ୍ରଣାମ କରି ପେଡ଼ିରୁ ଉଠି ଠିଆହେଲେ)

ରାବଣ— ଦେଖେଁ ଏଇନା ଏମାନଙ୍କୁ କିଏ ରକ୍ଷା କରିବ (ଖଣ୍ଡା କାଢ଼ି ମାରିବାକୁ ଉଦ୍ୟତ)

ବ୍ରହ୍ମା— ସାବଧାନ ରାବଣ ! ସ୍ଥିର ହୋଇ ଠିଆହୁଅ । ତୁମେ ଏମାନଙ୍କ କେଶାଗ୍ର ଛୁଇଁ ପାରିବ ନାହିଁ । ଜଣକୁ ପେଢ଼ିରେ ରଖିଥିଲ— ତିମି ମୁହଁରେ ଦେଇଥିଲ, ତିନିଜଣଙ୍କୁ ଦେଖିଲ । ପୁଣି ଏଇ ପେଢ଼ିରୁ ଶହ ଶହ ସହସ୍ର ସହସ୍ର କୋଟି କୋଟି ଲୋକ ବାହାରିବେ । ଏଇ ମୁହୂର୍ତ୍ତରେ ରାମ ଜନ୍ମି ତୁମକୁ ଧ୍ୱଂସ କରିବେ ।

ରାବଣ— (ମ୍ଳାନ ମୁହଁରେ ବ୍ରହ୍ମାଙ୍କୁ ଚାହିଁ ଖଣ୍ଡା କୋଷରେ ପୂରାଇଲା)

ବ୍ରହ୍ମା— ରାବଣ ! ଏଇନା କିଛିଦିନ ଯଦି ବଞ୍ଚି ରହିବାକୁ ତୁ ଚାହୁଁ ନବଦମ୍ପତିଙ୍କୁ ସମ୍ମାନରେ ଅଯୋଧ୍ୟାକୁ ପଠାଇ ଦେ ।

ରାବଣ— କୁମ୍ଭ ! ପିତାମହଙ୍କ କଥା ମାନି ନେଇଯାଅ ଅଯୋଧ୍ୟାରେ ଏମାନଙ୍କୁ ଛାଡ଼ିଦିଅ ।

କୁମ୍ଭ— ଯେ ଅଜ୍ଞା— (ଦଶରଥଙ୍କ ପ୍ରତି) ଆପଣମାନେ ପେଢ଼ିରେ ବସନ୍ତୁ ମୁଁ ମୁଣ୍ଡାଇ ନେଇ ଅଯୋଧ୍ୟାରେ ଛାଡ଼ିକରି ଆସିବି ।

(ସମସ୍ତେ ବ୍ରହ୍ମାଙ୍କୁ ପ୍ରଣାମ କରି ପେଢ଼ିରେ ବସିଲେ । କୁମ୍ଭ ପେଢ଼ି ମୁଣ୍ଡାଇ ଚାଲିଗଲା)

(ଚିତ୍ତାକାଶ—ଜୀବାତ୍ମା ଓ ମନ)

ଜୀବାତ୍ମା— ଦେଖ ସଖା ମହାମାନୀ ରାବଣ କାନ୍ଦଇ—
ମ୍ଳାନ ମୁଖେ ଦଶାନନ ଅଧୋଦୃଷ୍ଟି କରେ ।
ନୀରବ ସଭା ସଦଗଣ
ମୃଦୁମନ୍ଦ ହସୁଛନ୍ତି ପ୍ରଜାପତି ବସି ।
ଅପମାନ କେବେ
ହୋଇନାହିଁ ଲଙ୍କେଶ୍ୱରେ
ଆଣିଛି ବିସ୍ମୟତାର
ଆକସ୍ମିକ ଆଘାତରେ ।

ମନ— ସଖା ଏ ଅପୂର୍ବ ଘଟଣା—
ଦେଖୁଅଛି ହୋଇଣ ବିବଶ
ଚାଲ ଚାଲ ନେଇଚାଲ ସାକେତ ନଗରେ ।



*ଶ୍ରୀ ଶ୍ରୀ ସୀତାରାମ ଦାସ ଓଁକାରନାଥଙ୍କ ଲିଖିତ, ସରଳାଦେବୀ ଅନୁଦିତ 'କଥା ରାମାୟଣ'ର କେବଳ ପ୍ରଥମ ଅଧ୍ୟାୟଟି ଏଥିରେ ଦିଆଯାଇଛି, ବାକି ଅଧ୍ୟାୟଗୁଡ଼ିକ ବହିରେ ରହିଛି ।

# ବାସନ୍ତୀ

## ଅଷ୍ଟମ ପରିଚ୍ଛେଦ

ଦେବବ୍ରତ ନାନା ରକମ କାର୍ଯ୍ୟ ପରମ୍ପରାରେ, ନାନା ରକମର ସଂଗ୍ରାମରେ ପଡ଼ି, ବାସନ୍ତୀ ପ୍ରତି ତାର ଯେ କର୍ତ୍ତବ୍ୟ– ବାସନ୍ତୀକୁ ସୁଖୀ କରିବା ପାଇଁ, ଯତ୍ନ କରିବା ପାଇଁ ତାର ଯେ କର୍ତ୍ତବ୍ୟବୋଧ, ତାହା ଭୁଲି ନଥିଲା । ଯେଉଁ ବାସନ୍ତୀ ତା ହୃଦୟର ଜ୍ୟୋତ୍ସ୍ନାରୂପିଣୀ, ଯେଉଁ ବାସନ୍ତୀ ପାଇଁ ସେ ତା ଜୀବନର ଯଥାସର୍ବସ୍ୱ ତ୍ୟାଗ କରିବାକୁ, ତାର ଭବିଷ୍ୟତର ଉଜ୍ଜ୍ୱଳ ଆଶାର ସୌଧ ଧୂଳିସାତ୍ କରିବାକୁ କୁଣ୍ଠିତ ହୋଇନାହିଁ, ଅଧିକନ୍ତୁ, ଯାହାପାଇଁ ତ୍ୟାଗକରି ସେ ଆତ୍ମପ୍ରସାଦ ପାଉଛି, ସେହି ବାସନ୍ତୀ ପ୍ରତି ସେ କି ତିଳେ ହେଲେ ତାର କର୍ତ୍ତବ୍ୟ ପାସୋରି ପାରେ ? ତରୁଣ ପ୍ରାଣ ତାର ଯାହାର ମିଳନ ଆଶାରେ କେତେ ବିଚିତ୍ର ଚିତ୍ର କଳ୍ପନା-ରାଜ୍ୟରେ ଆଙ୍କି ଆସନ୍ନ ଭବିଷ୍ୟତକୁ ଗୋଟାଏ ନିଶାନ୍ତ ମାୟାର ସ୍ୱପ୍ନ– କୁହୁକ ଜାଲରେ ଘୋଡ଼ାଇଥିଲା, ସେହି ତାର ହୃଦୟପ୍ରତିମାକୁ ସେ ଆଜି ବାସ୍ତବରେ ପାଇଛି; ସେ ତାର ତପସ୍ୟାର ଫଳକୁ ଏଡ଼େ ଅନାୟାସଲଭ୍ୟ ବୋଲି ତ ଦିନେ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲା ? ସେଇଥିପାଇଁ ଏଡ଼େ ସହଜରେ, ଏଡ଼େ ଅନାୟାସରେ ସେ ଯେତେବେଳେ ତାର ପ୍ରିୟତମାକୁ ବାସ୍ତବ ଜୀବନରେ ଲାଭ କଲା, ସେ ପ୍ରଥମତଃ ଅପ୍ରତିଭ ହୋଇପଡ଼ିଥିଲା– ବିଭୋଳ ହୋଇପଡ଼ିଥିଲା–ତାପରି ସଂସାରାନଭିଜ୍ଞ ଯୁବକ ଏ ରତ୍ନର ବ୍ୟବସ୍ଥା କିପରି କଣ କରିବ ଭାବି । ଏଡ଼େ ବେଗି ସେ ବିଧାତାଙ୍କ କୃପାଲାଭ କରିବ ବୋଲି କେବେ ଆଶା କରିନଥିଲା, ସେହି ହେତୁରୁ ଏ ଅକସ୍ମାତ୍ ଲାଭରେ ସେ ବିଚଳିତ ହୋଇପଡ଼ିଲା– ଭୟରେ, ଚିନ୍ତାରେ; କାହିଁକି ନା, ସେ ତାର ବ୍ୟକ୍ତିତ୍ୱ ଉପରେ ସମ୍ପୂର୍ଣ୍ଣ ଆସ୍ଥା, ସମ୍ପୂର୍ଣ୍ଣ ନିର୍ଭରକରି ପାରି ନଥିଲା, ନିଜର ଶକ୍ତି ପ୍ରତି ସନ୍ଦିହାନ ଥିଲା; ସତେ ତାର ଏତେ ଶକ୍ତି କଣ ଅଛି, ଯହିଁରେ ସେ ଏ ମଧୁର 'ଦାୟିତ୍ୱ'ଟିର ସଦ୍‌ବ୍ୟବହାର କରି ପାରିବ ? ସତେ କଣ ତାର ପ୍ରାଣାଧିକାକୁ ସେ ତାର ହୃଦୟରେ ଚିରକାଳ ବହନ କରିବାକୁ– ତା ପ୍ରତି ସମସ୍ତ କର୍ତ୍ତବ୍ୟ ବିଷୟରେ ଚେତି ରହିବାକୁ ସେ ସମର୍ଥ ? ଏ ଯେ ନିଜ ପ୍ରତି ବିଶ୍ୱାସ, ଏ ବିଶ୍ୱାସଟାରେ ସେ ପୂରା ଆସ୍ଥା ରଖି ପାରୁନଥିଲା । କାରଣ, ମୂଳରୁ ବାସନ୍ତୀ ପରି ବହୁ ଆୟାସଲଭ୍ୟକୁ ଏଡ଼େ ଅନାୟାସରେ ପାଇ ସେ ଭାରି ସନ୍ଦିଗ୍ଧ ଚିତ୍ତ ହୋଇଯାଇଥିଲା ।

କାଳେ ବାସନ୍ତୀ ତା ବୋଉ କଥା ଭାବିବ, କାଳେ ତା ମନରେ ହେବ ଯେ, ସେ ପିତୃମାତୃହୀନା ବୋଲି ତା ପ୍ରତି କେହି କର୍ତ୍ତବ୍ୟବୋଧ କରନ୍ତି ନାହିଁ, ସମସ୍ତଙ୍କର ଅବହେଳା, ନିଷ୍ଠୁର ଉପେକ୍ଷା ତାର ଚିରଜୀବନର ପ୍ରାପ୍ୟ ବୋଲି ବିଧାତୃନିର୍ଦ୍ଦିଷ୍ଟ, କାଳେ ଭୁଲରେ ଏ ଭାବଟି ବାସନ୍ତୀ ମନରେ ଉଦୟ ହେବ, ଦେବବ୍ରତ ଏଠିକି ଆସିବାର ଏ କେତେଦିନ ତାର ପାରୁପର୍ଯ୍ୟନ୍ତ ଯତ୍ନ କରିବାରେ ଲାଗିଥିଲା । ଏ ଚେଷ୍ଟାରେ ସେ କେତେଦୂର କୃତକାର୍ଯ୍ୟ ହୋଇ ପାରିଥିଲା, ତାହା ସେ ନିଜେ ବୁଝିପାରିନଥିଲା ।

ସିମିଳିପୁରକୁ ଆସିବାର ଆଜିକି ହେଲାଣି ୧୫ଦିନ । ଦେବବ୍ରତ ତା ଛାତ ଉପରେ ଖଣ୍ଡେ ବହି ଧରି ବସିଥିଲା; କେତେବେଳେ ସେ ବହିରୁ ମୁହଁ କାଢ଼ି ନେଇ ଆକାଶକୁ ଚାହିଁଛି, ତାର ଖିଆଲ ନାହିଁ । ନିର୍ମଳା ଦେଈଙ୍କ ମୃତ୍ୟୁ ସମୟର ଘଟଣା ଦିନଠାରୁ ଆଜିଯାଏ ଯା ମଧ୍ୟର କେତେଟା ଦିନର ଘଟଣା ସେ ଭାବୁଥିଲା । ସତେ ଯେପରି କେଉଁ ଜୀବନ୍ତ ଥିଏଟରର ଘଟଣାବଳୀ ପରି ଚାହୁଁ ଚାହୁଁ ତା ଜୀବନ ଉପରେ ଅଭାବନୀୟ ପରିବର୍ତ୍ତନ ! ଆଚ୍ଛା, ସେ କଣ ଆଗର ଛାତ୍ର ଦେବବ୍ରତ ଅଛି ? କାହିଁ, ତା ପ୍ରାଣରେ ସେପରି ଉତ୍ସାହର, ଆନନ୍ଦର ଗୋଟାଏ ତୀବ୍ର ମାଦକ ସ୍ରୋତ ତ ଉଜାଣି ବହୁନାହିଁ ? ତା ପ୍ରାଣ ତ ଆନନ୍ଦରେ ଢଳଢଳ ହେଉନାହିଁ ? ତାର ବନ୍ୟାପରି ଭାବରାଶି, କଳ୍ପନାରାଶି କାହିଁ ଆଗ ପରି ତ ହୃଦୟରେ ଜୁଆର ଆଣୁନାହିଁ ? କିନ୍ତୁ ସେହି ତ ସେ ! ତାର କବିପ୍ରାଣ ଏଡ଼େ ମୂକ କାହିଁକି— କାହିଁକି ତାର ଏ ଅବସାଦ ? ନିଶ୍ଚୟ ତାର କିଛି ପରିବର୍ତ୍ତନ ହୋଇଛି । ବାହାରର ଘାତପ୍ରତିଘାତରୁ ତାର ପ୍ରାଣ ଏପରି ଶୁଷ୍କ ହୋଇଯାଇଛି, ଏଇଟା ସେ ନିଜେ ବୁଝି ପାରିଲା । ଖେଦରେ ହୃଦୟରୁ ଗୋଟିଏ ଦୀର୍ଘଶ୍ୱାସ ପକାଇ ସେ ଭାବିଲା, ସେ ତା 'ବାସ' ପ୍ରତି କଣ ଠିକ୍ ବ୍ୟବହାର କରୁଛି ? ଏଇଗୋଟିକ ପ୍ରଶ୍ନରେ ନିଜ ପ୍ରତି ଗୋଟାଏ ତୀବ୍ର ଘୃଣା ଆସିଲା— ନିଜକୁ ସେ ଆଉ କ୍ଷମା କରି ପାରିଲା ନାହିଁ । ସେ ପୁଣି ଭାବିଲା, ହୃଦୟରେ ତାର ବାସନ୍ତୀ ପ୍ରତି ଅତୁଳ ସ୍ନେହରାଶି ସଞ୍ଚିତ ଅଛି, ମମତା ଅଛି, ପ୍ରୀତି ଅଛି, ସହାନୁଭୂତି ଅଛି, ସବୁ ଅଛି; କିନ୍ତୁ ସେ ଠିକ୍ କରୁନାହିଁ କଣ ? ତା ମନରେ ଗୋଟାଏ କିଛି ଅଭାବ ସେ ବୋଧ କରୁଛି, ଯୋଉଁଟାକୁ ସେ ଭାବୁଛି, ବାସନ୍ତୀ ଏଥିରେ ଅସୁଖୀ ହେଉଥିବ, ଦୁଃଖିତା ହେଉଥିବ । ସେ ନିଜ ଭିତରେ ଯାର କିଛି ହେତୁ ଖୋଜି ପାଇଲା ନାହିଁ । ସେ ବୁଝିଲା, ବସ୍ତୁତଃ ତାର ମନର ଅଶାନ୍ତିର କାରଣ ତ କିଛି ନାହିଁ, କେବଳ ବୋଉର ଗୋଟାଏ ନିରପେକ୍ଷ ପରଙ୍କ ପରି ବ୍ୟବହାର, ସମାଜର ସାଇପଡ଼ିଶା, ଭାଇ ଭଗାରୀଙ୍କଠାରୁ ଆରମ୍ଭକରି ନିଜର ବନ୍ଧୁ-ବାନ୍ଧବମାନଙ୍କର ଗୋଟାଏ ଅତି ଘୃଣାପୂର୍ଣ୍ଣ ତାଚ୍ଛଲ୍ୟଭାବ ତା ମନର ଚିରଦିନର ସହଜ ଭାବଟାକୁ ନଷ୍ଟ କରିଦେଇଛି । ସେ ସମସ୍ତଙ୍କଠାରୁ ଯେପରି ଅତି

ଦୂରରେ, ଅତି ପରଙ୍କ ପରି ହୋଇ ଅତି ବାହାରର ଲୋକ ପରି କଣଆଡ଼ିଆ ଜନ୍ତୁଟିପରି ପଡ଼ିଛି । ପୁରୁଷ ସେ, ଶିକ୍ଷିତ ଧନୀ ଯୁବା ସେ; ସାମାଜିକ ସମସ୍ୟା ଛାଡ଼ିଦେଲେ ଏ ପାରିବାରିକ ସୂକ୍ଷ୍ମ ଉପେକ୍ଷାଭାବଟା ତା ପକ୍ଷରେ କଣ ପ୍ରକୃତରେ ମର୍ମନ୍ତୁଦ ନୁହେଁ ? ଶୁକ୍ଳ ଏକାଦଶୀ ଚାନ୍ଦର ରୂପୁଲି କିରଣରେ ଛାତଟି ଗାଧୋଇଛି । ଚାରିପାଖରେ ଧାଡ଼ି ଧାଡ଼ି ହୋଇ ଥୁଆହୋଇଥିବା ଫୁଲ ଟବ୍ ଗୁଡ଼ିକରେ କାକର ବିନ୍ଦୁ ସବୁ ପଡ଼ି ଫୁଲଗୁଡ଼ିକ ତାଜା ରୂପ ଧରି ହସୁଛନ୍ତି । ତାରା ଗୁଡ଼ିକ ଚାନ୍ଦ ଆଲୁଅରେ ନିଷ୍ପ୍ରଭ ଦିଶୁଥିଲେ; ଶାନ୍ତ ସୁନୀଳ ଆକାଶଟି ଗୋଟିଏ ସୁମହତ୍ ବିରାଟ ସ୍ନିଗ୍ଧ ରୁଚିର ଚିତ୍ରୈଶ୍ୱର୍ଯ୍ୟର ମହିମା ଧରି ଦେବବ୍ରତର ହୃଦୟର ଏ ପୀଡ଼ାରେ ସହାନୁଭୂତି ଜଣାଉଥିଲା । ସୁଦୂରର ଉନ୍ମାଦ ପବନର ହାଲପା ଆସି ଦେବବ୍ରତର ରମ୍ୟ କୁଞ୍ଚିତ କେଶଗୁଡ଼ିକର ପାରିପାଟ୍ୟ ଭାଙ୍ଗି ଗୋଳମାଳ କରି ଦେଇଗଲା । ମୁହଁ ଉପରର ବାଳଗୁଡ଼ାକୁ ସଜାଡୁ ସଜାଡୁ ନଜର ପଡ଼ିଲା ତାର ଯାଇଁ ବାଟଘର ଝରକା ଉଢ଼ାଳରେ ଥିବା ଗୋଟିଏ ଅସ୍ପଷ୍ଟ ମୂର୍ତ୍ତି ଉପରେ । ସେ ମୂର୍ତ୍ତି କିଏ, ଦେବବ୍ରତର ଗୋଡ଼ଠୁଁ ମୁଣ୍ଡଯାଏ ଚିହ୍ନି ପକାଇଲା । ସେ ମୂର୍ତ୍ତି ପ୍ରତି ଶିକାରୀର ପ୍ରଲୁବ୍ଧ ଦୃଷ୍ଟି ରଖି ସେ ଚୁପ୍ କରି ଉଠି ଟହଲିବାକୁ ଲାଗିଲା ।

ଖଞ୍ଜାରେ ଜାଣି-ଚତୁର ହୋଇ ବୁଲୁ ବୁଲୁ ଯାଇଁ ସେ ଅସ୍ପଷ୍ଟ ମୂର୍ତ୍ତିର ପଣତକାନିର ଚାବି ଗୋଛାକୁ ଦୃଢ଼ମୁଷ୍ଟିରେ ଧରି ପକାଇଲା । ସିଢ଼ି ଉପରେ ଠିଆ ହୋଇଥିବା ଆଉଗୋଟିଏ ତରୁଣୀ କଣ୍ଠର ସକୌତୁକ ହାସ୍ୟର ଲହରୀ ଦୂର ପବନରେ ଭାସି ମିଳେଇଯିବା ସାଙ୍ଗେ ସାଙ୍ଗେ ସିଢ଼ିରେ ମୃଦୁ ପଦଧ୍ୱନି ଉଭେଇ ଗଲା ।

''ଓଃ, ଇଏ କଣ ମ'' ପଦଟି ସାଙ୍ଗରେ ଏକାନ୍ତ ପରିଚିତ୍ ପ୍ରାଣୀଟିର ମିନତିପୂର୍ଣ୍ଣ ଅନୁରୋଧ– ''ଛାଡ଼ିଦିଅ, ମୁଁ ତଳେ ମାଙ୍କୁ ଘଷିଦବାକୁ ଯିବିଯେ ।'' ଦେବବ୍ରତ କହିଲା, ''କମି ଚଲାଖି କି ମୋସାଙ୍ଗରେ,ଏଠି କାହିଁକି ଲୁଚା ହେଇଥିଲା ? କାହିଁକି, ପାଖକୁ ଯିବାକୁ କଣ ଏଡ଼େ ବାଧୁଥିଲା ?''

ବାସନ୍ତୀ ଅପ୍ରତିଭ ହୋଇ କହିଲା, ''ନାହିଁ ନାହିଁ, ମୋର ଦୋଷ, ଶରଣ ପଶୁଛି, ଆଉ ଦିନେ ଏମିତି ଲୁଚି କରି ଧରା ପଡ଼ିବି ନାହିଁ ।''

ଦେବବ୍ରତ ବେଶ୍ ଭଲ, ଯଦି ନିଜ ମୁହଁରେ ଦୋଷ ମାନିଲଣି, ତେବେ ଦଣ୍ଡପାଇବାକୁ ପ୍ରସ୍ତୁତ ତ ?

ବାସନ୍ତୀ– ଯେ ଆଜ୍ଞା, ଯାହା ଦଣ୍ଡ ଆମର ଶିରୋଧାର୍ଯ୍ୟ ।

ଦେବବ୍ରତ– ଭଲକଥା, ଆସ ବସିବ, ଗପ କରିବା ।

ବାସନ୍ତୀ ସ୍ମିତହାସ୍ୟର ଆଭା ଟିକିଏ ତା ମନ୍ଦାର ଅଧରରେ ପ୍ରକଟାଇ ସପରେ ଯାଇଁ ବସିଲା ।

ଦେବବ୍ରତ– ତମେ ଧରାପଡ଼ିଲାବେଳେ କିଏ ହସି ପଳାଇଲା କି ?

ବାସନ୍ତୀ– ନିଶାମଣି ମୁଁ ସାଙ୍ଗ ହୋଇ ଛାତ ଉପରକୁ ବୁଲି ଆସିଥିଲୁ । ଧନିଆକୁ ତମ କଥା ପଚାରିବାରେ ସେ କହିଲା, ତମେ ସାଇକେଲରେ କୁଆଡ଼େ ଯାଇଛ, ଆମେ ଉପରକୁ ଆସି ଯୋଉଁଠୁ ଦେଖିଲୁ, ତମେ ଏଠିପଡ଼ିଛ, ସେଠୁ ମୁଁ ନିଶାମଣିକୁ କହିଲି, ଚୁପ୍ କରି ଲୁଚି କରି ଠିଆ ହବା, ତମେ କାଚହେରିକା ଝଣ୍ ଝଣ୍ କରନାହିଁ; ମୁଁ ଆଉ ସେ ଠିଆ ହେଇଥିଲୁଁ, ତମେ ବୁଲିଲା ବେଳୁଁ ସେ ବୁଝିପାରିଥିଲା ତମେ ଏମିତି କାଣ୍ଡଟି କରିବ ବୋଲି; କିନ୍ତୁ ସେ ଦୁଷ୍ଟ ମତେ ଜଣାଇଲା ନାହିଁ । ଆଉ ମୁଁ ଯୋଉଁଠୁ ଧରା ପଡ଼ିଲି, ସେ ହସି ହସି ପଳାଇଲା । ମତେ ଆଉ ସେ ରଖିଦବ ନା ? ଚିଡ଼େଇ ଚିଡ଼େଇ ମାରିବ ନାହିଁକି ?

ଦେବବ୍ରତ– ବେଶ୍ ହୋଇଛି,ଏଣେ ମୁଁ, ତେଣେ ମୋ ଭଉଣୀ, ଦିହେଁ ତମକୁ ଅପଦସ୍ଥ କରିବୁ; ଯେମିତି ହେଲ ସେମିତି ପାଇଲ । ମୁଁ ସାଇକେଲ କରି ବୁଲିଯାଇ ଅନେକ ବେଳୁଁ ଆସି ଏଠି ଶୋଇଛି, ଗରମ ଲାଗିଲା ତଳେ । ଆଚ୍ଛା ସେ ତ ଯାହା ହେଲା ହେଲା, ତମେ ଏଠିକି ନିତି କାହିଁକି ଆସନା ? ଦେଖିଲ, କି ଚମତ୍କାର ଜ୍ୟୋତ୍ସ୍ନା– ଆଉ ତା ସାଙ୍ଗରେ କି ଥଣ୍ଡା ପବନ ! ତମେ ଭାରି ସଂସାରୀ ହୋଇଗଲଣି ପରା !

ବାସନ୍ତୀ– ହଁ, ସଂସାରରେ ପଶିଲେ ଯେତେବେଳେ ସଂସାରୀ ନହେଇ ଆଉ ଗତି କଣ ? କିନ୍ତୁ ଆସେ ନାହିଁ ବୋଲି ମୁଁ ଗରମରେ ତେଣେ ପଡ଼ିଥାଏ ବୋଲି ତମେ ଭାବୁଛ ପରା ! ମନେ ମନେ ତମେ ଏଠି ମଉଜ କରୁଛ, ଆଉ ଆମେ ଯାଇଁ ଗରମରେ ଧସି ହଉଛୁ, ନା ? ବାଃ ! ଠିକ୍ ବିଚାରିଛ ତ ଯା ହଉ ! ନାହିଁ, ନାହିଁ, ମୋ ଘରକୁ ବି ଖୁବ୍ ପବନ ଦିଏ, ଆମେ ଦିହେଁ ଗପକରୁଁ, ପଢ଼ୁଁ; ତାପରେ ତମର ସିନା କିଛି କାମଦାମ ନାହିଁ ଯେ ତମେ ଏଠି ଭୋଳାନାଥଙ୍କ ପରି ପଡ଼ିଥାଅ, ମୋର ତ କେତେ କାମ– ଘରକାମଠୁଁ ଗଲା ନିଜ କାମ ଯାଏ ।

ଦେବବ୍ରତ– ତମର ପୁଣି ଏମିତି କି କାମ ? ଘରକାମରେ ତ ଦିନ ରାତି ଖଟୁଥିବ, କହିଲେ ଟିକିଏ କଥା ଶୁଣିବ ନାହିଁ । ପୁଣି ତମ ଘରେ ନିତି ନିତି ବୁଲି ଯାଉଥିଲ କରୁଥିଲ, ଏଠି ତମର ସେତକକୁ ବି ମୁଁ ସୁବିଧା କରି ପାରିଲି ନାହିଁ । ଆଉ ତମର ନିଜ କାମ ଯାହା କହିଲ, ମୁଁ ବୁଝି ପାରିଲି ନାହିଁ, କଣ କରୁଛ, କହିଲ ।

ବାସନ୍ତୀ– କାହିଁକି, ମୋ କାମ ମୁଁ କରେ ନାହିଁ ନା ? କାଗଜକୁ ସବୁଲେଖିବା, ଆଉ ମୋର ପଢ଼ାଶୁଣା କରିବା, ଏସବୁ ପରା କାମ ନୁହେଁ ତମ ମତରେ ? ଆଉ ବୁଲିଯିବା

କଥା, ବୁଲିଯିବାର ସୁବିଧା ହଉଥିଲା, ଯାଉଥିଲି; ସୁବିଧା ହେଲା ନାହିଁ, ନ ହେଲା ତ ନାହିଁ, ସେଥିକି ମୋର କିଛି ଶୋଚନା ନାହିଁ ।

ବାସନ୍ତୀ ବିଷାଦବୋଳା ହସ ଟିକିଏ ହସି ଚୁପ୍‌ହେଲା । ଦେବବ୍ରତ ସ୍ତ୍ରୀର ଗୁପ୍ତ ମନୋଭାବଟି ବୁଝି ହୃଦୟରେ ଗାଢ଼ ଆଘାତ ପାଇଲା । ମର୍ମଭେଦୀ ଦୀର୍ଘ ନିଶ୍ୱାଶଟିଏ ରହି ରହି ତା ଅନ୍ତରର ଏହି ଆହତସ୍ଥଳରୁ ବାହାରି ନୈଶ ପବନରେ ଉଭେଇଗଲା । ସେ ବାସନ୍ତୀକୁ ନିଜ ବାହୁ ଉପରେ ରଖି କହିଲା–ବାସ ! ତମେ କଣ ପ୍ରକୃତରେ ଭାବ, ତମ ଜୀବନ ପ୍ରତି ଆଖି ବୁଜି ଦେଇ ମୁଁ ନିଶ୍ଚିତ ରହିଛି ? ମୁଁ କଣ ବୁଝେଁ ନା, କଟକ ଛାଡ଼ି ମୋ ଘରକୁ ଆସିଲା ଦିନଠୁଁ ତମକୁ ପଦେ ପଦେ ନିଜର Principles ସାଙ୍ଗରେ, ନିଜର ବିବେକ ସାଙ୍ଗରେ, ସବୁଠୁ ବଡ଼ ନିଜର ସୁଖସ୍ୱାଚ୍ଛନ୍ଦ୍ୟ ସାଙ୍ଗରେ ଅବିରାମ ଯୁଦ୍ଧ କରିବାକୁ ପଡୁଛି,– ସେ କେବଳ ମୋରି ପାଇଁ ? ଏ କଥା କଣ ଏଇ ତମର 'ଦେବ ଭାଇ' ଦେଖିନାହିଁ ଯେ, ବୋଉ ତମର ଥିଲାବେଳେ ଦିନେ ନଈକୂଳକୁ ବୁଲିଯିବାକୁ ମନା କରୁଥିଲେ ତମେ ବୋଉଙ୍କ ପ୍ରତି କେତେ ବିରକ୍ତ ହେଉଥିଲ; କାମ ଭିତରେ କରୁଥିଲ ନିଜ କାମ; ତମର ବହିପଢ଼ା ଆଉ ଉଲ୍ କାର୍ପେଟ୍ ବୁଣା; ଆଉ ତମର ଅବସର ମୁହୂର୍ତ୍ତ ପୂରାଉଥିଲା ତମର ବଉଳ ! ଏ କଥା ସେଇ ମୁଁ ଆଜି ଏଇ ମୁଁ ତ ପୁଣି ଆଖିରେ ଦେଖିଛି ?

ବାସନ୍ତୀ– ସ୍ୱାମୀର ବ୍ୟଥିତ ଭାବ ବୁଝି ଆଶ୍ୱାସ ଛଳରେ କୃତ୍ରିମ କୋପ ପ୍ରକାଶ ପୂର୍ବକ କହିଲା– ଛେନାଗୁଡ଼ କଥାଗୁଡ଼ାକ କାଢ଼ି ବସିଲେ ଏଥର ! ଆଉ ତ କିଛି ନାହିଁ, ଟାଣି ଓଟାରି ସତ ମିଛ କୋଉଁ ଯୁଗର ସବୁ ଇତିହାସ ରଚନା ହଉଛି ବସି ! କାହିଁକି, ମୁଁ ତ ବେଶ୍ ମନଖୁସିରେ ଅଛି, ସୁଖରେ ରହିଛି, ମୋର ପୁଣି ଗୋଟାଏ ଦୁଃଖ କଣ ? ମୁଁ ତ ମୋ ଦୁଃଖ ଜାଣେ ନା, ଆଉ ତମେ ସେ ସବୁ ମୋ ପାଇଁ ଆବିଷ୍କାର କର । ମୋର ତ ବାବୁ କାହିଁକି ଏ ଅପାର ଯୁଗକାଳ କଥା ମନେ ପଡ଼େ ନାହିଁ, ତମେ କେବଳ ଯେତେ ଅଡୁଆ ସୂତାରୁ ଖିଅ କାଢ଼ିବାରେ ଥାଅ ।

ଦେବବ୍ରତ ବାସନ୍ତୀର ଏ ପ୍ରୟାସର ଅର୍ଥ ବୁଝିପାରି କହିଲା– ନା, ନା, ବାସ, ତମେ କଣ ମତେ ଏଡ଼େ ହୃଦୟହୀନ ଅପଦାର୍ଥଟାଏ ବୋଲି ଭାବିଛ ? ମୁଁ କଣ ଏତକ ଅନୁମାନ କରି ପାରେଁ ନାହିଁ, ତମକୁ ଏଠିକାର atmosphere ସହ୍ୟ କରିବାକୁ କେତେ ତ୍ୟାଗ ସ୍ୱୀକାର କରିବାକୁ ହେଉଛି ? ପୁଣି ସେ କେବଳ ଜଣକ ଶାନ୍ତି ପାଇଁ ?

ବାସନ୍ତୀ– ଯେତେ କହିଲେ ବୋଇଲେ ତମର ଏ ବାଜେ କଥାଗୁଡ଼ାକ ତ ଯିବ ନାହିଁ ।

ଦେବବ୍ରତ ବାସନ୍ତୀକୁ ଆହୁରି ପାଖକୁ ଟାଣିଆଣି କହିଲା– ବାସ୍, ମୋ ପାଇଁ ମୋର ତିଳେ ଭ୍ରୂକ୍ଷେପ ନାହିଁ, କିନ୍ତୁ ଜୀବନରେ ଏହି ଖେଦ ରହିଗଲା ଯେ, ମୁଁ ତମକୁ

ଯେତେ ସୁଖୀ କରିବି ବୋଲି ଆଗରୁ ଭାବିଥିଲି, କରିପାରିଲି ନାହିଁ । ଆଉ ବି ଜୀବନର କେଉଁ ମାହେନ୍ଦ୍ରକ୍ଷଣରେ ଯେ ମୋର ଏ ଦରଫୁଟା ଆକାଙ୍କ୍ଷାଟି ଫୁଟି ସାର୍ଥକ ହେବ, ଏପରି ଭରସା କରିବା ବିଷୟରେ ଯଥେଷ୍ଟ ସନ୍ଦେହ ନିହିତ ଅଛି ।

ବାସନ୍ତୀ କପାଳ ଉପରେ ଉଷ୍ମ ଲୁହ ଟୋପାଏ ପଡ଼ିଗଲା, ବାସନ୍ତୀ ହଠାତ୍ ଲେଉଟି ଚାହିଁ ଦେଖିଲା, ଦେବବ୍ରତର ବିଶାଳ ବକ୍ଷ ଲୋତକର ଅଜସ୍ର ଆବେଗମୟ ଧାରାରେ ଭାସି ଯାଉଛି । ବାସନ୍ତୀ ଅତି ଆଦରରେ ତା ପଣତରେ ଦେବବ୍ରତର ଲୁହ ପୋଛି ଦେଇ କହିଲା– ଏ କଣ, ତମେ ଗୋଟାଏ ପାଗଳା କି ? ମାଇପଙ୍କ ପରି ବସି ବସି କାନ୍ଦିବାକୁ ପୁଣି ତମର ସଉକ କେବଠୁଁ ହେଲା ମ ? ବାସନ୍ତୀ ଖୁବ୍ ହସିବାକୁ ଚେଷ୍ଟା କଲା, କିନ୍ତୁ ପାରିଲା ନାହିଁ– ଅନ୍ତରରେ ତାର ଯେଉଁ ବ୍ୟଥାର ଝଡ଼ ଗର୍ଜନ କରୁଥିଲା ତାକୁ ଚପେଇ ଚାପେଇ ଦେବାକୁ ଲୁହ ତାର ଚପଳ ହରିଣ ଲୋଚନଯୁଗଳରୁ ଧାର ଧାର ହୋଇ ହିମାଦ୍ରିର ପ୍ରପାତ ପରି ବହିଗଲା–ପ୍ରାଣର ଏକ ପ୍ରକାର ଚରିତାର୍ଥତାରେ ଆମ୍ଭ ପ୍ରସାଦର ପୁଲକରେ ।

ବାସନ୍ତୀ ଭାବିଲା, ତାର ସୁଖ ପାଇଁ ଦେବବ୍ରତର କେତେ ଆନ୍ତରିକ ପ୍ରୟାସ– ପ୍ରାଣର କେଡ଼େ ଗଭୀର ଆକୁଳତା । ଏ କଥାଟାର ଜୀବନ୍ତ ପ୍ରମାଣ ବାସ୍ତବରେ ଦେଖି ବାସନ୍ତୀର ନାରୀପ୍ରାଣ ଗୌରବରେ, ପ୍ରସାଦର ପୁଲକରେ, ପ୍ରୀତିର ଅପରୀସୀମ ଆନନ୍ଦରେ ତରଳିଗଲା । ସେ ନିଜର ହୃଦୟାବେଗରେ ଉଚ୍ଛ୍ୱସିତ ହୋଇ ଉଠିଲା– ଏହି ରମଣୀୟ କ୍ଷଣଟିରେ ଦେବବ୍ରତର ଗୋଟିଏ କଲ୍ୟାଣମୟ ଅନାବିଳ ପରିଚୟ ପାଇଲା । ଦେବବ୍ରତର କଣ୍ଠ ବେଷ୍ଟନ କରି ପ୍ରୀତିବୋଳା କଣ୍ଠରେ କହିଲା– ଦେବଭାଇ ! ତମେ ତ ସେହି ଆଗକାର ଦେବଭାଇଟି ମୋର ଅଛ; କିନ୍ତୁ ମୁଁ ଯେ ତମ ସମ୍ବନ୍ଧରେ ଝୁଡ଼ିଥିଲି । ମୋର ଯୋଗେ ତ ସମାଜ ସାଥିରେ, ତମ ବୋଉଙ୍କ ସାଥିରେ ଏତେ ବିଷମ ଦ୍ୱନ୍ଦ୍ୱ ଲାଗିଛି; ଆଉ ସେଇଟା ତମର ସହ୍ୟ ହୋଇପାରିବ କି ନା, ବିବାହ ପୂର୍ବରୁ ଏ ବିଷୟରେ ନିଜର ମନଟା ପରଖି ନଥିଲ, ସେଇଯୋଗେ ବାସ୍ତବ ଜଗତରେ ତମେ ଯେତେବେଳେ ଏ ବିରୋଧଜନକ ଅବସ୍ଥାରେ ପଡ଼ିଲ, ସେତେବେଳେ ବୋଧହୁଏ ମୋ ପ୍ରତି ତମର ଗୋଟାଏ ବିତୃଷ୍ଣା ଜନ୍ମିଥିବ ବା ! ବରାବର ତମର ମାନସିକ ବିଷଣ୍ଣତା ଦେଖି ଏହିପରି ଭାବୁଥିଲି, କିନ୍ତୁ ମୁଁ ଦେଖୁଛି, ଏପରି ଭାବିବାଦ୍ୱାରା ମୁଁ ତମକୁ ଭୁଲ ବୁଝି ତମ ପ୍ରତି ଅବିଚାର କରିଛି । ମୋ ଭଳି ଦୁଃଖିନୀ ପ୍ରତି ତମର ଏତେ ଆଦର, ଏତେ ମମତା, ଏତେ ଶ୍ରଦ୍ଧା ଦେଖି ମନେହୁଏ, ବିଧାତା କଣ ସହିବ ନାହିଁ ମୋ ପରି ଅଭାଗୀର ଏତେ ସୌଭାଗ୍ୟ ରାଶି ? ଜୀବନର ପ୍ରଥମ ସୋପାନରୁ ଶ୍ରେଷ୍ଠ ସ୍ନେହନୀଡ଼ ହରାଇ ତମକୁ ତ ଅବଲମ୍ବନ କରିଛି, ମୋର ବେଳେ ବେଳେ ଆଶଙ୍କା ହୁଏ, ହୁଏ ତ ବର୍ତ୍ତମାନ ଜୀବନର ଅବଲମ୍ବନ ମଧ୍ୟ ମୋ ପକ୍ଷରେ ଚିର-

ନିର୍ଦ୍ଦିଷ୍ଟ ନୁହେଁ—ହୁଏ ତ ବା ମୋ ଅଭିଶପ୍ତ ଜୀବନ ତମର ପ୍ରାଣଦିଆ ସ୍ନେହରୁ ଦିନେ ବଞ୍ଚିତ ହେବ । ନା, ମୁଁ ତମଠୁଁ ବଞ୍ଚିତ ହୋଇ ରହି ପାରିବି ନାହିଁ— ମୋର ସେ ଶକ୍ତି ନାହିଁ । ମୋର ସୌଭାଗ୍ୟର ତୁଳନା ନାହିଁ, ଆଜି ଏଇଟା ମୁଁ ବେଶିକରି ଅନୁଭବ କରି ପାରୁଛି ।

ଦେବବ୍ରତ ଆବିଷ୍ଟ ହୋଇ ତା ହୃଦୟରାଣୀର ଏ ଉଚ୍ଛ୍ୱସିତ ପ୍ରାଣପୂରା କଥାଗୁଡ଼ିକରେ ତନ୍ମୟ ହୋଇ ଯାଇଥିଲା; ଭାବୁଥିଲା, ସତେ ଯେମିତି ସ୍ୱର୍ଗରାଜ୍ୟର ପରୀ ଆସି ତା କାନରେ ଅମୃତଧାରା ଢାଳି ଦେଉଥିଲା— ତା ବିକ୍ଷିପ୍ତ ଦୁର୍ବଳ ଉତ୍ପୀଡ଼ିତ ମନ ପ୍ରତି ସଦୟ ହୋଇ; ଆଉ ତା ପ୍ରାଣରେ ଯେପରି କାହୁଁ ଶକ୍ତିର ମନ୍ଦାକିନୀ ଆସି ତାର ସବୁ ରିକ୍ତତା, ସବୁ ଦୁର୍ବଳତାକୁ ଧୋଇ ଦେଇଗଲା । ସେହି ଅମୃତ ପରଶରେ ପୁଣି ତରୁଣତା ଫେରିଆସିଲା— ଫେନିଳ ହୋଇ ଉଠିଲା, ସେ ପୁଣି ଯେମିତି ତାର ଏହି ବର୍ତ୍ତମାନର ଜରାଜନ୍ମ ଛାଡ଼ି ତାର ଛାତ୍ରକାଳର ସେଇ ହରାଇ ବସିଥିବା ତରୁଣ-ରାଜ୍ୟରେ ନବଜନ୍ମ ଗ୍ରହଣ କଲା । ପରମ ଆବେଗରେ ପ୍ରିୟତମାକୁ ଆଲିଙ୍ଗନ କରି ଦେବବ୍ରତ କହିଲା ତମକୁ ପାଇ ପ୍ରକୃତରେ ମୁଁ ଭାଗ୍ୟବାନ୍— ମୁଁ ଧନ୍ୟ— ମୋ ଜୀବନ ସଫଳ । ଯଦି ଏ ଅଭାଗାକୁ ପାଇ ବସ୍ତୁତଃ ତମେ ତମକୁ ଭାଗ୍ୟବତୀ ମନେ କରୁଥାଅ, ତଥାପି ମୁଁ କହେଁ, ଏ କ୍ଷେତ୍ରରେ ଆମ ଭିତରୁ ମୋରି ଭାଗ୍ୟଟା ବେଶି; କାହିଁକି ନା, ମୋର ତରୁଣ କାଳର ସ୍ୱପ୍ନ ସଫଳ ହୋଇଛି, ମୋର ସମସ୍ତ ବାଧାବିଘ୍ନ ଧନ୍ୟ ହୋଇଛି— ଏ କଥାଟି ତମରି ପରି ମୁଁ ଆଜି ବେଶି କରି ଅନୁଭବ କରୁଛି । ମୁଁ ଜାଣେ, ବିବାହର ଅବ୍ୟବହିତ ପରେ ଆମ ଭିତରେ କିମିତିକା ଦାମ୍ପତ୍ୟ ବ୍ୟବଧାନର ସତ୍ତା ଟିକିଏ ଥିଲା, ଯାହା ଆଜିଯାଏ ଆମର ବାଧାହୀନ ମିଳନ ପଥରେ ବଡ଼ ରକମର ଗୋଟାଏ ଅନ୍ତରାୟ ସ୍ୱରୂପ ଥିଲା । ବର୍ତ୍ତମାନ ମୁଁ ସଫା ବୁଝି ପାରୁଛି ଯେ, କେବଳ ଏହି ହେତୁରୁ ମୁଁ ହୃଦୟରେ ଗୋଟାଏ ଶୁଷ୍କତା, ଗୋଟାଏ ଦୁର୍ବଳତା ବରାବର ଅନୁଭବ କରି ଆସୁଥିଲି । ଭଲକାମ କରି ମନୁଷ୍ୟ ପ୍ରାଣରେ ଯେ ଗୋଟାଏ ଅଦମ୍ୟ ତେଜ ଓ ଶକ୍ତି ଆସେ, ମୋର ତା ଆସୁନଥିଲା— ମୁଁ ମୋ ହୃଦୟରେ ଏ ଭାବଟାକୁ ଜୋର କରି ଜାଗ୍ରତ ରଖିବାକୁ ଚାହୁଁଥିଲି । ସେଥିପାଇଁ ନିଜ ସଙ୍ଗରେ ବଡ଼ ସଂଗ୍ରାମ କରିଛି, ମାତ୍ର ଏ ମାନସିକତାର କିଛି ଗୋଟା ସୁମୀମାଂସା କରି ପାରିନାହିଁ; ଆଉ ହୁଏତ ବା ତମକୁ ତହିଁରେ କେତେ ରକମର ଆଶଙ୍କା କରିବାକୁ ହେଇଥିବ । ମୋର ଏଇରକମ ଗୋଟାଏ ଉଦାସୀନତା ଓ ଅନ୍ୟମନସ୍କତାରେ କେତେ ଦୁଃଖ ତମେ ଭୋଗିଥିବ ।

ବାସନ୍ତୀର ବିମ୍ବୋଷ୍ଠରେ ମଧୁର ହାସ୍ୟରେଖାର ଆଭାସ ଉଠି ମିଳେଇ ଗଲା । ଦେବବ୍ରତ କହିଲା— ତମେ ମୁଁ କେହି କାହାକୁ ବୁଝିବାକୁ ଚେଷ୍ଟା କରିନଥିଲୁଁ—ବିଶେଷତଃ ଏଇ ଭୁଲ ବୁଝାଯୋଗୁଁ ଆମ ଭିତରେ ମିଳନର କିଛି ବ୍ୟବଧାନ ନଥିଲେ ସୁଦ୍ଧା ଗୋଟାଏ

ଛନ୍ଦୁତାର ବ୍ୟବଧାନ ପଡ଼ିଯାଇଥିଲା– ସେଇଥିପାଇଁ ମୁଁ ନିଜ ଭିତରେ ବଳ ପାଉନଥିଲି– ନିଜପ୍ରତି ବିଶ୍ୱାସ ହରାଇ ବସିଥିଲି; ନିଜପ୍ରତି ଦାରୁଣ ବିତୃଷ୍ଣ ହୋଇ ଯାଇଥିଲି–ସମାଜ ଚକ୍ଷୁରେ, ବୋଉ ନିକଟରେ ନିଜକୁ କୌଣସି ମାରାତ୍ମକ ଅଜଣା ଅପରାଧରେ ଅପରାଧୀ ବୋଲି ମୋର ମନେ ହେଉଥିଲା । ମୋର ଏତେ ନିଃଶେଷ ଭାବ ଏତେ ଅବସନ୍ନ ଭାବଟା ଯେ ତମରି ପାଇଁ– ତମକୁ ସତ୍ୟଭାବରେ, ପୂର୍ଣ୍ଣଭାବରେ ନିଜର କରିପାରିନଥିବା ହେତୁରୁ, ଏଇଟା ସଫା ମୁଁ ବୁଝିପାରୁଛି । ମତେ କ୍ଷମା କର, ବାସନ୍ତୀ ।

ଗଭୀର ଅନୁତପ୍ତ ଆବେଗରେ ବାସନ୍ତୀର କୋମଳ କରପଲ୍ଲବ ଦିଓଟି ନିପୀଡ଼ିତ କରି ଦେବବ୍ରତ କହିଲା–ମୋର ଏ ଅମାର୍ଜନୀୟ ଅପରାଧ କ୍ଷମା କରିବ କି ? ମୁଁ ନିଜ ପ୍ରତି ଯେ ଅବିଚାର କରିଛି, ନିଜ ମନକୁ ନ ବୁଝି-ପାରିଥିଲେ ମଧ ଶାସନ ନକରି, ଆଉ ବିଶେଷରେ ତମ ପ୍ରତି ମୁଁ ପାର୍ଥିବତଃ ମୋର ଯଥେଷ୍ଟ କର୍ତ୍ତବ୍ୟରେ ତ୍ରୁଟି କରୁନଥିଲେ ହେଁ, ମୋ ଭିତରେ ତମ ସମ୍ବନ୍ଧରେ ଯେ ଗୋଟାଏ understanding ରେ ନ ପହଞ୍ଚି ପାରି ଏତେ ଖେଦ ପାଇଲି– ଆଉ ହୁଏତ ମୋର ଏଇ ମନୋବିପ୍ଳବରେ ତମକୁ ଯେ ଆଘାତ ହୋଇଥିବ, ଏଥିପାଇଁ ମତେ କ୍ଷମା କରିବ କି ନାହିଁ ?

ବାସନ୍ତୀ ଖେଁ କରି ହସିଉଠିଲା । କହିଲା– ତମେ ଆଜି ଯେ ଏତେ କଥା ଆବିଷ୍କାର କଲ, ଏ କଥା ଯଦି ଟିକିଏ ମୁଁ ବୁଝି ପାରିଥାନ୍ତି ତ ଆଜି ତମକୁ ଧରାଦେଇନଥାନ୍ତି । ମୋ ମନରେ କାହିଁ ମୁଁ ତ ତମ ଦ୍ୱାରା କିଛି ଆହତ ହେଲା ପରି ଲାଗୁନାହିଁ ? କିନ୍ତୁ ତମେ ମନକୁ ମନକୁ ମୋ ଯୋଗୁଁ ଏତେ ସନ୍ତେଇ ହେଇ ଯେ କ୍ଷମା ଚାହୁଁଛ, ସେଥିକି ମୁଁ କଣ କରିବି ? ମୋ ପାଖରେ ତମେ ନିଜେ ସିନା ଅପରାଧୀ ବୋଲି ଅନୁତାପ କରୁଛ, ମାତ୍ର ମୁଁ ତ କାହିଁ ତମ ସମ୍ବନ୍ଧରେ ଏପରି ଭାବିନଥିଲି । ଆଉ କ୍ଷମା କରିବି ମୁଁ କଣ ? ତମେ ସବୁ ଅବସ୍ଥାରେ ମୋର କ୍ଷମଣୀୟ, ଏତିକି ବୁଝିଥାଅ ।

ଦେବବ୍ରତ କହିଲା– ତମେ ଯେତେ ବା ଆଡ଼ମ୍ବର କର–ଅସଲ କଥାର ଉତ୍ତର ଦିଅ ମତେ । ମୁଁ ଛାଡ଼ିବାର ପାତ୍ର ନୁହେଁ ।

ବାସନ୍ତୀ କହିଲା– ହଁ, ତମେ ତ ଗୋରୁ ମାରିଛ, ଆଉ ତମକୁ ପୁଣି କ୍ଷମା କଣ ମ ? ବାସନ୍ତୀ ଉଚ୍ଛ୍ୱସିତ ହୋଇ ହସି ଉଠିଲା । ଦେବବ୍ରତ ଗୋଟାଏ ଅନାବିଳ ସୁଖରେ ବିଭୋର ହୋଇ ବାସନ୍ତୀକୁ ଚୁମ୍ବନ କଲା ।

ବାସନ୍ତୀ ଲଜ୍ଜାନତା ହୋଇ ଝଟ୍ ତଳକୁ ପଳାଇଲା । ଯେତେବେଳେ ଦେବବ୍ରତ 'ଶୁଣିଯା ହୋ'ବୋଲି ଡାକିଲା, ସେତେବେଳକୁ ବାସନ୍ତୀ ଯାଇଁ ତା ଶାଶୁଙ୍କ ଘଷିଦେବାକୁ ତଳେ ପହଞ୍ଚିଥିଲା ।

ଦେବବ୍ରତ ଓ ବାସନ୍ତୀଙ୍କର ସମ୍ବନ୍ଧ ଆଜି ଏ ମାହେନ୍ଦ୍ର କ୍ଷଣରେ ମୁକ୍ତ ଆକାଶ ତଳେ ମୁକ୍ତ ସମ୍ବନ୍ଧରେ ପର୍ଯ୍ୟବସିତ ହେଲା । ଉଭୟେ ଉଭୟଙ୍କୁ ଅତି ନିକଟତର, ନିକଟତମ କରି ବୁଝି ପାରିଲେ । ଦୁହିଁଙ୍କ ମନରେ ବଦ୍ଧମୂଳ ଧାରଣା ହେଲା ଯେ, ଏହି ସଦ୍ୟ ନବସ୍ଥାପିତ ମୁକ୍ତ ସମ୍ବନ୍ଧକୁ ବାହାରର କୌଣସି ବ୍ୟବଧାନ କ୍ଷୁଣ୍ଣ କରିବାର ସମ୍ଭାବନା ନାହିଁ । ସେମାନେ ପରସ୍ପର ପ୍ରତି ବିଶ୍ୱସ୍ତ ହୋଇପଡ଼ିଲେ– ଆଉ ପରସ୍ପର ପ୍ରତି ପରସ୍ପରର ଆଶ୍ୱାସପୂର୍ଣ୍ଣ ନିର୍ଭର ଦୃଢ଼ତର ଭିତ୍ତିରେ ପ୍ରତିଷ୍ଠିତ ହେଲା– ପ୍ରାଣରେ କେଉଁଠି ତିଳେ ମାତ୍ର ଦ୍ୱନ୍ଦ୍ୱ ଆଉ ସେମାନଙ୍କର ରହିଲା ନାହିଁ । ଏହି ଧାରଣା ଉଭୟେ ଉଭୟଙ୍କ ସମ୍ବନ୍ଧରେ ପୋଷଣ କଲେ ।

ବାସନ୍ତୀର ପ୍ରକୃତି ଉଦ୍ଦାମ ନଦୀସ୍ରୋତ ପରି ତୀବ୍ର, ମଧୁର, ପ୍ରଖର ଥିଲା । ଜୀବନର ଯେ କୌଣସି କ୍ଷେତ୍ରରେ କୌଣସି ରିକ୍ତତା, କୌଣସି ଖଣ୍ଡତା ତାର ସହ୍ୟ ହୁଏନାହିଁ । ସେ ଥିଲା ପ୍ରକୃତିର କନ୍ୟା–ସ୍ୱାଧୀନତାରେ ତାର ଚିତ୍ତର ଜନ୍ମ–ଆଉ ତାର ଜୀବନର ବିକାଶ ହୋଇ ଆସିଥିଲା ମୂଳରୁ ଏହି ସ୍ୱାଧୀନତାର ପାରିପାର୍ଶ୍ୱିକତାରେ । ତାର ପ୍ରାଣର ଆକାଂକ୍ଷା ଅତି ଗଭୀର ଥିଲା, ତାର କାମନା ବାସନାର ଅନ୍ତ ନଥିଲା; ଏଥିପାଇଁ ସେ ଯେ ଉଚ୍ଛୃଙ୍ଖଳ ଥିଲା, ତାହା ନୁହେଁ । ସଂଯମ ତାର ସ୍ୱଭାବର ଗୋଟାଏ ଅଙ୍ଗସ୍ୱରୂପ ଥିଲା–ଚେଷ୍ଟା କରି ଆତ୍ମସଂଯମ କରିବାରେ ସେ ଜୋର ଦେଉ ନଥିଲା– ସ୍ୱଭାବତଃ ସେ ସୁସଂଯତା । ଅନ୍ତରର ଗୋପନତମ କକ୍ଷର ବୀଣାଟିରେ ଯେ ବିଚିତ୍ର ଅଭିନବ ରାଗିଣୀ ତାର ନିତି ନୂଆ ନୂଆ ଛନ୍ଦରେ ଧ୍ୱନିତ ହେଉଥିଲା, ତହିଁରେ ତାର ବାସ୍ତବ ଜୀବନ ବିଶେଷଭାବରେ ମୁଖରିତ ହୋଇ ଉଠୁଥିଲା । ଘରକାମରେ, ଲେଖିବା, ପଢ଼ିବା, ରାନ୍ଧିବା, ଶାଶୁଙ୍କୁ ଶୁଶ୍ରୁଷା କରିବାଠାରୁ ସାଦାସିଧା ଛୋଟବଡ଼ କାମରେ ସୁଦ୍ଧା ସେଥିପାଇଁ ସେ କ୍ଳାନ୍ତିବୋଧ କରୁ ନଥିଲା– ଶରତର ହାସ୍ୟଝରା ଶେଫାଳିକା ପରି ସେ ସଦା ହାସ୍ୟମୁଖୀ– ନିଜ ଚହଟରେ ନିଜେ ଆକୁଳ ଥିଲା–ପ୍ରାଣର ସରସତାରେ ।

ବିଭା ହୋଇ ଦେବବ୍ରତର ଘରକୁ ଆସିବାଦିନଠାରୁ ବାସନ୍ତୀକୁ ନୀରବରେ ବିରୋଧ ସଙ୍ଗରେ, ବାଧା ସଙ୍ଗରେ ଯୁଦ୍ଧ କରିବାକୁ ହେଉଛି । ସେ ଯେ ସବୁ ରକମର ଚିରନ୍ତନୀ ପୁରାତନୀ ପ୍ରଥା ନୀରବରେ ଗ୍ରହଣ କରୁଥିଲା, ଆଉ ବାହାରେ ଯଥେଷ୍ଟ ଆତ୍ମପ୍ରସନ୍ନତାର ଭାବ ଦେଖାଇ ସବୁ ପାଳନ କରୁଥିଲା, ସେଥିରେ ଯେ ତାକୁ କିଛି କଷ୍ଟ ହଉନଥିଲା, ଏକଥା ନୁହେଁ । ନିଜ ସାଥିରେ, ନିଜର ରୁଚି ସାଥିରେ, ନିଜର ଭାବ ଓ ଇଚ୍ଛା ସାଥିରେ ସେ ଯୁଦ୍ଧ କରି ଶ୍ରାନ୍ତ ହୋଇପଡ଼େ; ତଥାପି ସେ ଶାଶୁଙ୍କ ମନ ଯୋଗାଇ ଯେ ଚଳେ, ସେ କଣପାଇଁ ? ଶାଶୁଙ୍କ ଭୟରେ ସେ ଯେ ଏପରି ମଥା ପାତିଦିଏ, ତାହାନୁହେଁ; ବସ୍ତୁତଃ ସେ ଏପରି ରୀତିନୀତିରେ ଭିତରୁ କ୍ଷୁବ୍ଧ ହେଲେ ହେଁ ମୁହଁରେ ପ୍ରକାଶ୍ୟତଃ ମ୍ଳାନତା

ଆଣିନଥିଲା, କାଳେ ଦେବବ୍ରତ ଦେଖି କଷ୍ଟପାଇବ, କାଳେ ସେ ଅସୁଖୀ ହେବ । ଦେବବ୍ରତର ଅସୁଖ ଅଶାନ୍ତିରେ ବାସନ୍ତୀ ଭ୍ରୁକ୍ଷେପ କରନ୍ତା ନାହିଁ, ଯଦି ସେମାନଙ୍କ ସମ୍ବନ୍ଧ ଆବିଳ ମିଥ୍ୟା ବନ୍ଧନର ସମ୍ବନ୍ଧ ହୋଇଥାନ୍ତା; କିନ୍ତୁ ସେ ଯେ ତାର ପ୍ରିୟତମକୁ ପ୍ରାଣରୁ ଅଧିକ ଭଲ ପାଏ, ତା ଦେହରେ କୁଶାଙ୍କୁର ବିନ୍ଧିଲେ ଯେ ବାସନ୍ତୀ ଦେହରେ କଣ୍ଟା ବାଜେ । ସେ ଅବିରତ ଚେଷ୍ଟା କରୁଥିଲା ନିଜର principles ନିଜ ଜୀବନର ଉଚ୍ଚ ଆଦର୍ଶକୁ ଅତିକ୍ରମ କରି ସୁଦ୍ଧା ଦେବବ୍ରତକୁ ସୁଖୀ କରିବ— ତା ପ୍ରାଣକୁ ଶାନ୍ତିର ଜ୍ୟୋତ୍ସ୍ନାରେ ମୁଗ୍ଧକରିବ । ସେ ଭାବିଲା, ଦେବବ୍ରତ, ସେ ତା ପାଇଁ କଣ ନ କରିଛି, କଣ ନ ସହିଛି ? ସିମିଳିପୁରକୁ ଆସିଲା ପରେ ଯେତେବେଳେ ବିଭାଘର ଭୋଜି ଦିଆହେବାର ପ୍ରସ୍ତାବ ହୋଇ ତାଙ୍କର ଆତ୍ମୀୟ ବନ୍ଧୁ କୁଟୁମ୍ବମାନଙ୍କୁ ନିମନ୍ତ୍ରଣ କରାଗଲା,ସେତେବେଳେ ସେମାନେ ଅଜାତି ଘର ଝିଅକୁ ଦେବ ଅକୌଳିକ ରୀତିରେ ବିଭା ହୋଇ ଘରକୁ ଆଣିଛି—ଏହି ଆପତ୍ତି ଉଠାଇ ଆସିଲେ ନାହିଁ ଓ ଏହି ଛିଦ୍ରର ସୁବିଧା ଦେଖି ଯେତେବେଳେ ଦେବବ୍ରତଙ୍କ ଘରକୁ ଏକଘରକିଆ ଓ ଅଜାତି କରି ରଖିଲେ, ସେତେବେଳେ ଏହି ଦେବବ୍ରତ ତ ବୀରବିକ୍ରମରେ କହି ପାରିଥିଲା– "କେହି ନଆସିଲେ ମୋ ଘର ଭାସିଯିବନାହିଁ, କି ମୁଁ ଏଥିପାଇଁ କାହାରି ଅନୁଗ୍ରହ ପ୍ରାର୍ଥୀ ନୁହେଁ ଯେ ଖୋସାମତ କରିବାକୁ ଯିବି । ବେଶ୍ ଭଲ କଥା, ଦେଖାଯାଉ, କିଏ କାହାକୁ ଏକଘରିଆ କରି ରଖେ– କାହାର ଦଉଡ଼ କେତେ ।" ଏଇ ସ୍ୱାମୀ ତ ତାର ତାରି ପାଇଁ କେବଳ ଏ ଦଣ୍ଡକୁ ମଥାପାତି ନେଲେ ? ତାଙ୍କ ବୋଉଙ୍କର ବାର-ରକମର କଡ଼ା କଥାକୁ ହଜମ କରି ନୀରବ ନତ ଭାବରେ ସେ ତ କେବଳ ତାରିପାଇଁ ଏଡ଼େ ବଡ଼ ଗୁରୁତର ତ୍ୟାଗଟାକୁ ସ୍ୱୀକାର କରିନେଲେ ? ଯାହାର ବିବେକର ପ୍ରେରଣା ଏଡ଼େ ତୀକ୍ଷ୍ଣ, ଯେ କର୍ତ୍ତବ୍ୟର ପ୍ରିୟଭକ୍ତ, ତାଙ୍କ ପ୍ରତି ତାର ସମ୍ମାନ ଦେଖାଇବାରେ କର୍ତ୍ତବ୍ୟ କରିବାରେ ଯଥାଠାରୁ ଗୁରୁତର ସମସ୍ୟା ସବୁ ତ ସମାଧାନ କରିବାକୁ ଅଛି ? ସେ ତ କଦାପି ଚାହୁଁ ନାହିଁ– ଏ କ୍ଷେତ୍ରରେ ତାର ସ୍ୱାର୍ଥ ଉପରେ ଆଘାତ ପଡୁଛି ବୋଲି ସେ ତା ସ୍ୱାମୀର ସହିଷ୍ଣୁତାଠୁଁ ତାର ସହିଷ୍ଣୁତାଟାକୁ କ୍ଷୁଦ୍ର ଓ ନଗଣ୍ୟ କରିବ । ସେ ନାରୀ, ସେ ପୁରୁଷଠୁଁ ଏ କ୍ଷେତ୍ରରେ ବେଶି ଉଦାରତା ବେଶି ସହିଷ୍ଣୁତା ଦେଖାଇବ, ଅବଶ୍ୟ ଅବଶ୍ୟ ତାକୁ ହୃଦୟରେ ଏପ୍ରକାର ବଳ ଆଣିବାକୁ ହେବ : ଏହି କଥା ଭାବି ସେ ନୀରବରେ— ଆନନ୍ଦରେ ତାର କର୍ତ୍ତବ୍ୟ କରି ଯାଉଥିଲା ।

ସୁଭଦ୍ରା "ନଈରେ ନ ପଶୁଣୁ ନଙ୍ଗଳା" ହୋଇଥିଲେ । ଦେବକୁ ତାଙ୍କର ବାସନ୍ତୀ କି ମୋହିନୀ ମାୟାରେ ଭୁଲାଇ ଆୟତ୍ତ କରିଥିଲା, ପୁଣି ଅବଶେଷରେ ଦାଉ ସାଧିବାକୁ ବିଭା ସୁଦ୍ଧା ହେଇଛି । ଏ ବିଭାହେବା ଦୋଷଟା ଓ ତା ଯୋଗୁଁ ଆନୁଷଙ୍ଗିକ ବିରକ୍ତିଟା ପୁଅଙ୍କ ଉପରେ ପଡ଼ିଲା ନାହିଁ—ନିରୀହ ବୋହୂ ବିଚାରିଟି ଉପରେ ବର୍ଷିତ ହେବାକୁ ଲାଗିଲା ।

ବାସନ୍ତୀ ଅମିତ ମନ ବଳରେ ଶାଶୁଙ୍କର ଏହି ଭାବଟିକୁ ଓ ତା ସଙ୍ଗରେ ଆନୁଷଙ୍ଗିକ ନାନା ପ୍ରକାର ଉପାଦେୟ ଉପସର୍ଗମାନ କଥାରେ, ବ୍ୟବହାରରେ ସହ୍ୟ କରିବାକୁ ଲାଗିଲା— ଅତି ଅକାତରେ ତାର ସମସ୍ତ କର୍ତ୍ତବ୍ୟ କର୍ମ ସମ୍ପାଦନ କରି । ସେ ଏଥିପାଇଁ ନିଜକୁ ଛୋଟ ବା ଦୁର୍ବଳ ଭାବିଲା ନାହିଁ, ବରଂ ଶକ୍ତିମୟୀ ଭାବିଲା—ତା ସ୍ୱାମୀର ଯୋଗ୍ୟା ହୋଇପାରିଛି— ତାପାଇଁ ସବୁ ରକମର ଅତ୍ୟାଚାର ସହୁଛି ବୋଲି । ନିଜ ଭିତରେ ସେ ଏଥିଯୋଗୁଁ ଅପରିସୀମ ଆନନ୍ଦ ବୋଧ କରିବାକୁ ଲାଗିଲା ।

ଠିକ୍ ଏଇଥିପାଇଁ ଆଉ ଗୋଟିଏ ପ୍ରାଣୀ ଠାରେ ଏହି ଭାବର ବିପରୀତ କ୍ରିୟା ଚଳିବାକୁ ଲାଗିଲା । କେବଳ ଏଇଯୋଗୁଁ ଦେବବ୍ରତ ତା ବୋଉର ବାସନ୍ତୀ ପ୍ରତି ମନ୍ଦ ବ୍ୟବହାରରେ ଆହତ ହେବାକୁ ଲାଗିଲା— ତାହାର ବୁଝିବାକୁ ବାକି ନଥିଲାଯେ, ବାସନ୍ତୀ କେବଳ ସହୁଛି ତାହାରି ଶାନ୍ତି ପାଇଁ — ତା ପ୍ରତି କର୍ତ୍ତବ୍ୟ ସମ୍ପାଦନ କରି ।

ଏ ନୀରବ ଘଟନାବଳୀର ପଛପଟରେ ବାସନ୍ତୀ ହୃଦୟରେ ସାମୟିକ ଯେ ତାଣ୍ଡବଲୀଳା ଚଳୁଥିଲା—ନିଜକୁ ତ୍ୟାଗ କରିବାର— ହୃଦୟକୁ କ୍ଷତବିକ୍ଷତ କରିବାର— ରୁଦ୍ର ଭାବରେ ନିଜର ସମସ୍ତ ପ୍ରବୃତ୍ତିକୁ ଶାସନ କରିବାର ଯେ ତାଣ୍ଡବଲୀଳା ଚଳୁଥିଲା, ସେଇଟା ଯେ ଦେବବ୍ରତ ସ୍ପଷ୍ଟ ଅନୁମାନ କରି ପାରୁଥିଲା, ତା ନୁହେଁ; କେତେକ ଅନୁମାନ, କେତେକ କଳ୍ପନାରେ ସେ ବାସନ୍ତୀର ଅନ୍ତରର ଲୁକ୍କାୟିତ ଭାବଟିକୁ ମୋଟାମୋଟି ବୁଝି ପାରୁଥିଲା— ଆଉ ସେଇଯୋଗେ ସେଇଟାହିଁ ହେଲା ସବୁଠୁଁ ଅସହ୍ୟ ଦେବବ୍ରତର । ତେଣୁ ବାସନ୍ତୀର ତ୍ୟାଗରେ, ସହନଶୀଳତାର ମାତ୍ରା ଯେତେ ବଢୁଥିଲା— ଏଣେ ଦେବବ୍ରତର ଅଧୀରତାର, ଅସହିଷ୍ଣୁତାର— ନିଜର ଗୋଟାଏ ଅକ୍ଷମତାର ଗ୍ଲାନିଜନିତ ଅଶ୍ରଦ୍ଧା ତେତେ ବଢୁଥିଲା ।



# କଳାବିଦ୍ୱାନ ଓ ରାଷ୍ଟ୍ରନୀତି

ଓଡ଼ିଶାର ସଙ୍ଗୀତକଳାର ଏକ ଉଜ୍ଜ୍ୱଳତମ ଜ୍ୟୋତିଷ୍କର ଆବିର୍ଭାବ ଘଟିଥିଲା କେତେ କାଳ ପୂର୍ବେ ସ୍ୱର୍ଗତଃ ୰ ନଟବର ଦାସ ରୂପରେ ସେ ଧନବନ୍ତ ଘର ପୁଅଥିଲା ବୋଲି ଆମ ଦୃଷ୍ଟିଗୋଚର ହୋଇଥିଲା । ଆଶ୍ଚର୍ଯ୍ୟ ଥିଲା ତାର କଣ୍ଠ ମାଧୁରୀ—ଗାଇବାର ଭଙ୍ଗୀ । କେହି ମାଷ୍ଟର ନଥିଲେ ତାର— ସେ ଜନ୍ମହୋଇଥିଲା ଅମରାବତୀର ଅଭିଶାପ ବହି ବାଲେଶ୍ୱର ମୁକୁନ୍ଦବାବୁ ଜାହ୍ନବୀଦେଈଙ୍କ ପୁଅ ହୋଇ । ସେ ଗୀତ ଗାଇଲେ ତାର ସ୍ୱର ମାଧୁରୀର ଆକର୍ଷଣରେ ସମସ୍ତେ ବସିଯାନ୍ତି ନିଃଶବ୍ଦହୋଇ— ଉଠିଯାଇ ପାରନ୍ତି ନାହିଁ । କାହା କାନକୁ ଅରୁଚି ଧରେ ନାହିଁ । ମେଟ୍ରିକୁଲେସନ ପାରି ସେ ଆଉ କଲେଜରେ ନ ପଶି ଗଲା ଲକ୍ଷ୍ନୌ ସଙ୍ଗୀତ ତାଲିମ ପାଇବାକୁ । ଆମ ଆଗରେ କହିଥିଲା "ମୁଁ ମେଘମହ୍ଲାର ରାଗରେ ଗୀତଗାଇ ବର୍ଷା କରାଇଦେବି । ମୟୂର ନାଚିବେ ଗୀତ ଶୁଣି । ମୁଁ ପଦ୍ମତୋଳା ଗାଇ ନାଗମାନଙ୍କୁ ଶୁଣାଇ ଖେଳାଇ ବସାଇଦେବି । ସେମାନେ ମୋ ଗୀତ ଛାଡ଼ି ଯାଇପାରିବେ ନାହିଁ । ବାପମାଙ୍କ କୋଳପୋଛା ସେରନ୍ତା ପୁଅଝିଅକୁ ଅକାଳରେ ଯମ ନେଇଗଲା । ମା ସେ ଦୁଃଖ ସାରାଜୀବନ ବହନ କରି ସନ୍ନ୍ୟାସିନୀ ପରି ଉଦାସୀନା ହୋଇ ମରିଗଲେ । ବାପ ଝୁରି ଝୁରି ମରିଗଲେ । ମରିଯିବା ଆଗରୁ ତାଙ୍କର ପ୍ରକାଣ୍ଡ ବାସସ୍ଥଳୀକୁ ନଟ ନାମରେ ନାମିତ କରି ସେହି ଭବନଗୁଡ଼ିକରେ ଓଡ଼ିଶାର ସଙ୍ଗୀତ ଛାତ୍ରମାନେ ରହି ସଙ୍ଗୀତ ଶିଖିବେ ବୋଲି ଉଇଲ କରିଥିଲେ । ଓଡ଼ିଶା ସରକାରଙ୍କ ମାରଫତରେ ଦେଇଥିଲେ । ଟ୍ରଷ୍ଟି କରିଥିବା ନଥିବା ଜଣାନାହିଁ । ମାତ୍ର ତାଙ୍କର ନାଁ ବୁଡ଼ା ଅଯୋଗ୍ୟ ବଂଶଧରଗଣ ତାହା କାର୍ଯ୍ୟକାରୀ କରାଇ ଦେଇ ନଥିବାରୁ ମୁକୁନ୍ଦବାବୁଙ୍କ ସଂକଳ୍ପ କାର୍ଯ୍ୟରୂପ ନେଲା ନାହିଁ କି ଦେଶବାସୀ ସଂଗୀତଜ୍ଞମାନେ ଏ ବିଷୟରେ ଆଦୌ କିଛି ପ୍ରଚେଷ୍ଟା କଲେନାହିଁ, ଯେପରି ରାୟବାହାଦୂର ଉତ୍କଳ ବିଖ୍ୟାତ ପଣ୍ଡିତ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ତାଙ୍କର ବାସଭବନକୁ ପ୍ରାଚୀନ ସଂସ୍କୃତ ଓ ଓଡ଼ିଆ ସାହିତ୍ୟ ଚର୍ଚ୍ଚା ଗବେଷଣା ପାଇଁ ଦବାକୁ ଇଚ୍ଛା କରିଥିଲେ ଓ ତାଙ୍କର ଦାୟାଦମାନେ ତାହା ଘୋଷଣା କରି କାର୍ଯ୍ୟକାରୀ କରି ନଥିଲେ ।

ଏବେ ଆମ କବିଚନ୍ଦ୍ରଙ୍କର ଆଜୀବନ ସାଧନଲବ୍ଧ ଗ୍ରନ୍ଥାବଳୀ ଅପୂର୍ଣ୍ଣ, ଗ୍ରନ୍ଥ ରଚନାରୁ ବିରାମ ନାହିଁ । କଳାସରୋବରରେ ରାଜହଂସ ଖେଳୁଛି— କୁମୁଦ କହ୍ଲାର ପଦ୍ମଫୁଲ ପରିକ୍ରମା

କରି କରି, ତାଙ୍କର ସମସ୍ତ ସମ୍ପତ୍ତି ବାସସ୍ଥଳୀ ନୃତ୍ୟ ସଂଗୀତକଳା ଓ ଶିକ୍ଷା ପାଇଁ ସେ ଉତ୍ସର୍ଗ କରିଛନ୍ତି । ସରକାରଙ୍କୁ ନିବେଦିଛନ୍ତି— ତ୍ରୁଷ୍ଟି କରୁଛନ୍ତି— କିନ୍ତୁ ହସ୍ତୀସ୍ନାନବତ୍ ଏହାର ପରିଣାମ ମଧ୍ୟ ନିଷ୍ଫଳ ।

ଉତ୍କଳର ଶ୍ରେଷ୍ଠ ଗାୟକ ଶ୍ରୀ ଗୋକୁଳ ଶ୍ରୀଚନ୍ଦନ, ଶ୍ରୀ ଶ୍ୟାମସୁନ୍ଦର ସିଂହାରୀ ଶ୍ରୀ ଧୀର ପ୍ରଭୃତଙ୍କ ନାମ ବୁଡ଼ିଗଲାଣି । ଶ୍ରୀ ନିମେଇଁ ହରିଚନ୍ଦନ, ମୋହନ ସୁନ୍ଦର ଗୋସ୍ୱାମୀ, ଶ୍ରୀ ଗୋବିନ୍ଦ ପ୍ରଥମ ସୁଆଙ୍ଗ ଦଳ ଗଠକ, ସୁଆଙ୍ଗ ଲେଖକ ଗୋପଲ ଉଡ଼େ ଦୟାକଛ । ବୈଷ୍ଣବ ପାଣି, କୃଷ୍ଣ ଘୋଷ, ବାଳକୃଷ୍ଣ ମହାନ୍ତିଙ୍କ ନାଁ ବୁଡ଼ିଗଲା । ତାଙ୍କ ରଚନା ବି ବୁଡ଼ିଲା । କେତେ ନାଟ୍ୟକବି ବୁଡ଼ିଗଲେ । ଶୁରଦେଓଙ୍କ ରସ ରଚନା ଓ ଗୀତ ପାଟବ ଲୋକମନରୁ ପୋଛି ହୋଇଗଲାଣି । ଶ୍ରୀକୃଷ୍ଣ ମୋହନ ପଟ୍ଟନାୟକଙ୍କ କବିତା ଗୀତ ଗାୟନ କଣ ଲୋକେ ଭୁଲିଗଲେ । ଏହି ସଙ୍ଗୀତସୁରୀମାନଙ୍କର ଓଡ଼ିଶା ପାଇଁ କି କିଛି ଅବଦାନ ନଥିଲା ? ଏମାନେ କି ଗୋଟିଏ ଗୋଟିଏ ଯୁଗଧରି ଲୋକମନରେ ଜାତୀୟତା ସଙ୍ଗୀତ ଝଂକାର ତୋଳି ନଥିଲେ ? ଶ୍ରୀ ବିଚ୍ଛନ୍ଦ ଚରଣ ପଟ୍ଟନାୟକ ବଞ୍ଚିଯାଇଛନ୍ତି ନିଜ କରଣୀରୁ— ତାଙ୍କ ସୃଷ୍ଟ ଓ ପ୍ରତିଷ୍ଠିତ ଭଙ୍ଗୀ କଳାକୁ ବଞ୍ଚାଇବା ମାଧ୍ୟମରେ ଏକ ଅନୁଷ୍ଠାନର ପ୍ରାଣ ପ୍ରତିଷ୍ଠାତା ଭାବରେ, ମାତ୍ର ପୂର୍ବୋକ୍ତ ସଂଗୀତଜ୍ଞ ମାନଙ୍କ ପଛରେ କୌଣସି ଅନୁଷ୍ଠାନ ପ୍ରତିଷ୍ଠାନ ସେମାନେ ସୃଷ୍ଟି ଓ ପ୍ରତିଷ୍ଠା କରିନଥିବାରୁ ବଞ୍ଚିପାରନ୍ତି ନାହିଁ । ଯଦି ଓଡ଼ିଶାର ଯଥାର୍ଥ ସଙ୍ଗୀତ ସ୍କୁଲ ବା କଲେଜ ଥାନ୍ତା । ସେମାନେ ବଞ୍ଚି ରହିଥାନ୍ତେ—ମାତ୍ର ସେମାନଙ୍କର ସ୍ୱର ରାଗିଣୀ କେବଳ ଅନନ୍ତ ଆକାଶରେ ଶୂନ୍ୟ ଗର୍ଭା ନୀଳିମା ଭିତରେ ବିଲୀନ ହୋଇଗଲା । ଆମ ସରକାର ଏକ ବ୍ରହ୍ମମୟ ବିଶ୍ୱପୁରୁଷ, ସହସ୍ର ତାଙ୍କର ଶୀର୍ଷ, ସହସ୍ର ନେତ୍ର ଓ ସହସ୍ର ତାଙ୍କର ହସ୍ତପଦ, ତେଣୁ ସଙ୍ଗୀତ ସମବେତ ସରକାରି ସତ୍ତାରେ ଜୀବନର ସ୍ପନ୍ଦନ ଅଣି ପାରିନାହିଁ କି ଯେଉଁଠି ସାରସ୍ୱତ ପ୍ରତିଭା ନିଜର ଆସ୍ଥାନ ଖୋଜି ଆଶ୍ରୟର ନିଃଶଙ୍କ ତୃପ୍ତିର ସ୍ୱାଦ ପାଇ ସାର୍ଥକ ହୋଇପାରିବ ।— ସରକାରଙ୍କ ବାହୁଛାୟା ଆଶ୍ରୟତଳେ ସଙ୍ଗୀତ ସରଣୀ ସ୍ଥାନ ପାଇବା ଅସମ୍ଭବ । ଯେଉଁମାନେ ଆଗକୁ ଗୀତ ଶୁଣାଇ ପରମାନନ୍ଦ ଦେଇଯାଇଛନ୍ତି, ଗୀତସାଧକ ଗୀତ ନିପୁଣ ସେହି ରଥୀମାନଙ୍କ ପ୍ରତି ସଙ୍ଗୀତା ଦେବୀ ସରକାର ଓ ଦେଶବାସୀଙ୍କର ସ୍ୱତନ୍ତ୍ର କର୍ତ୍ତବ୍ୟ କି କିଛି ନାହିଁ ? ଗାଈ ଦୁଧ ଖାଉଥିବା ଯାଏ ଗାଈକୁ ଦାନା ଦେବା, ଗୋ ସେବା କରିବା; ମାତ୍ର ଗାଈ ବୁଢ଼ୀ ହେଲେ, ବଳଦ ଲଙ୍ଗଳ ଟାଣିବାକୁ ଅକ୍ଷମ ହେଲେ, ସେମାନଙ୍କୁ କଂସେଇକୁ ବିକି କିଲଖାନାରେ ହଣେଇ ଦେଇ ସେଇ ଗାଈମାନଙ୍କୁ ଖାଇବା ଆମର ଧର୍ମ ହେବା ବିଧି ନୁହଁ । ସେହିପରି ଓଡ଼ିଶି ସଙ୍ଗୀତାଚାର୍ଯ୍ୟ

ଓସ୍ତାଦମାନଙ୍କଠାରୁ ଗୀତଶୁଣି ଖୁସି ହୋଇଯିବା । ସେମାନେ ବୁଢ଼ା ହେଲେ ଆଉ ସେମାନଙ୍କର ଦାବି କି ସେମାନଙ୍କର ଦାୟିତ୍ୱ ସମାଜ ରାଷ୍ଟ୍ର ଉପରେ ନାହିଁକି ? ସୈନିକ ଯୁଦ୍ଧରେ ପଙ୍ଗୁ ହେଲେ ଭତ୍ତା ପାନ୍ତି– ସେମାନଙ୍କ ସ୍ତ୍ରୀପିଲେ ପାଆନ୍ତି । କଂଗ୍ରେସ ଦେଶସେବୀମାନେ ଦେଶବାସୀଙ୍କ ମୁକ୍ତି ପାଇଁ ୬ ମାସ ଜେଲ ଯାଇ ଟ.୨୦୦ ଭତ୍ତା ପାଇଲେ । ଯେ ବି ଜେଲ ଯାଇ ନାହାନ୍ତି, କେବଳ ନେତାଙ୍କ ଚଅଁରଧରା ବୋଲକରା ଥିଲେ । ବାନର ସେନା, ଏପରି କି ହତ୍ୟା କେସ୍‌ର ଆସାମୀ ୬ ଜଣଙ୍କୁ ପୁଲିସ ଧରି ନପାରି ପ୍ରମାଣ ନପାଇ ଭାରତରକ୍ଷା ଆଇନ ବଳରେ ୬ ମାସ ଜେଲରେ ରଖିଦେବାରୁ ସେମାନେ କଂଗ୍ରେସ ତିଳକ ଖଦଡ଼ ନାମାବଳୀ ପକାଇ ଟ.୨୦୦ ଆଣୁଛନ୍ତି ଭତ୍ତା ରୂପେ । ମାତ୍ର ଆମର ବୟୋବୃଦ୍ଧ ସଙ୍ଗୀତ କଳା ସାଧକମାନଙ୍କର ବଞ୍ଚିବାର ନିରାପତ୍ତା ପାଇଁ ସ୍ୱାଧୀନ ଦେଶ ସରକାରଙ୍କ ନୃତ୍ୟ ନାଟକ ସଙ୍ଗୀତ ସଂସ୍ଥା ଗୋଟିଏ ପଇସା ଦିଏ ନାହିଁକି, ସହସ୍ର ବାହୁ ସହସ୍ର ନେତ୍ରୀ ସହସ୍ର ପାଦପାଣି ସରକାରଙ୍କର ଏ ଦିଗରେ କିଛି ସୁପାରିସ ସରକାରୀ ମହଲକୁ କରେନାହିଁ । ଏହାଠାରୁ ବଳି ଦୁଃଖ କାହିଁ ? ଚିତ୍ରକରମାନେ ପଥୁରିଆମାନେ ଏବେ ହଳ ଧରିଛନ୍ତି । ମାଟି ଖୋଳି ଟୋକେଇ ଖତ ପକାଉଛନ୍ତି । କାରିଗରମାନେ ହାତଛାଡ଼ି ଦେଇ ବିଦେଶରେ କୁଲିଗିରି କରୁଛନ୍ତି । ଉପସ୍ଥିତ କଳାକାରମାନେ; ଆପଣମାନଙ୍କର ଏକତା, ସଦ୍ ଭାବନା ମୈତ୍ରୀ ଓ ସଙ୍ଗୀତ ମେଣ୍ଟ ଓ ସଂସ୍ଥା ନଥିବାରୁ Organization ଆନୁଷ୍ଠାନିକ ପଦ୍ଧତିରେ ନଥିବାରୁ ସରକାରୀ ନୌକରସାହି ଆପଣମାନଙ୍କ ମଧ୍ୟରେ ପକ୍ଷପାତିତ୍ୱ ଟେକପାର ଭେଦନୀତିରେ ଆପଣମାନଙ୍କ ଆତ୍ମିକଦାବିକୁ ପ୍ରତ୍ୟାଖ୍ୟାନ କରିଥାଏ । ଏକଥା ମନେ ରଖିବା ଉଚିତ । କଳାଦେବୀ ପୂଜିଲେ ସାଧକ ଗରିବ ହୁଏ– ଭିକମାଗେ– ଚାନ୍ଦାଉଠାଏ । ବଞ୍ଚିବା ପାଥେୟ ତାର ନାହିଁ । ଥିଲେ ଅନିଶ୍ଚିତ ଅନିଶ୍ଚିତ । ଆପଣମାନେ ଏକତ୍ର ହୋଇ ବୃଦ୍ଧ ସଂଗୀତକାର ନୃତ୍ୟକାର ବାଦ୍ୟକାରମାନଙ୍କ ଭତ୍ତା ପାଇଁ ଏକ ସ୍ୱାଧୀନ ଅନୁଷ୍ଠାନ ଗଠନ କରନ୍ତୁ । ପେନସନ୍ ଭତ୍ତା ଏହା ସବୁ ସରକାରଙ୍କ ଉପରେ ଆପଣମାନଙ୍କ ଦାବି କରିବାରେ ଯଥାର୍ଥତା ଅଛି । ତାହା ନଥିବାରୁ ଆପଣମାନଙ୍କ ସଂଘ କି ଇଉନିୟନ ହେଉନାହିଁ ।– ଯାହା ଆଜି ଓଡ଼ିଶୀ ବାଦ୍ୟ ସଙ୍ଗୀତ ବଞ୍ଚାଇବାକୁ ହେଲେ ଏହା ସର୍ବାଗ୍ରେ କର୍ତ୍ତବ୍ୟ । ଆପଣମାନଙ୍କ କର୍ତ୍ତବ୍ୟ ସମାଜବାଦୀ ଦେଶ ସରକାରଙ୍କର ଏହା ଦେଖିବା ଉଚିତ କେବଳ Cultural affair ବିଭାଗ ବୋଲି ଏକ କଳାକାରଙ୍କୁ ପ୍ରବଞ୍ଚନାକରି ଠକାଇ ଚାଲିବା ମାନବଧର୍ମ ନୁହେଁ । ଏହା ଏକଜାତୀୟ ଶୋଷଣ ବୋଲି ମନେକରେ । ଭୋଗୀ ଭତ୍ତା ପାଉଛନ୍ତି, ସଂଗୀତ ଯୋଗୀ କିପରି ଗରିବିହଟାଓ ନୀତିରେ

ପାଇବାର ହକଦାର ନୁହଁନ୍ତି ? Communism socialism ନୀତି କଣ ନୃତ୍ୟ ନାଟକ ସଙ୍ଗୀତକାରମାନଙ୍କ ପାଇଁ ଲାଗୁ ହେବା ବିଧି ନୁହଁ ? ଦେଶକୁ ଭାତରେ ମାରିଲେ ଦେହହାଣି ସହି ରହିଛନ୍ତି, ପ୍ରାଣ ରସଦାନ ନକରି ସଂଗୀତବାଲାମାନଙ୍କୁ ପ୍ରାଣରେ ମାରିଲେ ଜାତି କେତେଦିନ ଆତ୍ମାରେ ବଞ୍ଚିବ ? ଦେଶ ଦେଉଳିୟା— ଖାଦ୍ୟବସ୍ତ୍ରହୀନ— ଟଙ୍କାକ ଦାମ୍ ଟ.୦.୫୦ ପଇସା ହେଲାଣି । ଏଥିରେ ସରକାରଙ୍କୁ ତାଙ୍କ ଚାକିରିଆମାନେ ଇଞ୍ଜିନିୟର, ମାଷ୍ଟର, ପୁଲିସ ଅମଲା ଧମକାଇ ଶାସନକଳ ଅଚଳ କରା ଶକ୍ତି କଳାକାରଙ୍କର ନାହିଁ ବୋଲି ରାଜା ଜମିଦାର ମହନ୍ତ ମକଦମମାନଙ୍କୁ ଜୀବିତ ତର୍ପଣ କରି ସମସ୍ତଙ୍କୁ ଧନ ବଣ୍ଟନ କରିବା ମିଥ୍ୟା ପ୍ରବୋଧନା ଦେଇ ଦେଶ ଧ୍ୱଂସ କଲେ । ଗରିବ ହଟାଓ ମିଥ୍ୟା ଧ୍ୱନିରେ ଗଣତନ୍ତ୍ର ଧୋକାବାଜୀ କରି ଅନାମଧେୟ ବହୁଲୋକ ମିଳି ଭାରତର ରାଜତ୍ୱ ନେଲେ । ଲୋକେ ଜେଲ୍ ଯାଇ ଦେଶର ସ୍ୱାଧୀନତା ପାଇଁ ଯୁଦ୍ଧ କରିଥିଲେ ବୋଲି ଏବେ ଡୋକ ପାଇଲେ ମାତ୍ର କଳାକାର, ସଂଗୀତବାଲା, ଚିତ୍ରବାଲା, ବାଜା ବଜାଇଲାବାଲା ମରିଗଲେ । ତାଙ୍କ ଏ ଗରିବ ହଟାଉଥିବା ସରକାର ଡୋକେ ଦେଲେନାହିଁ, ମାରିଦେଲେ ।



# ଆମ ଜାତୀୟ ଜୀବନରେ କଳା ଓ ସଂସ୍କୃତିର ପ୍ରଭାବ

କଳା ଓ ସଂସ୍କୃତି ଯମଜ ସହୋଦର ତୁଲ୍ୟ । ଏ ଦୁହିଁଙ୍କ ମଧ୍ୟରେ କୌଣସି ପ୍ରଭେଦ ନାହିଁ ଏବଂ ଦୁହେଁ ପରସ୍ପରର ଅନୁସାରକ । ଭାରତୀୟ କଳା ଭାରତୀୟ ସଂସ୍କୃତି ଉପରେ ଛିଡ଼ା ହୋଇଛି । ଭାରତର ବିଭିନ୍ନ ପ୍ରଦେଶରେ ଯେଉଁ ଶିଳ୍ପ ଚାତୁରୀ ବିନ୍ଧାଣୀ ଓ ଚିତ୍ରକରମାନଙ୍କ ହାତରେ ଫୁଟିଛି, ସେମାନଙ୍କର ମୌଳିକ ଭିତ୍ତି ବଡ଼ ବ୍ୟାପକ ବୋଲି ଜଣାପଡ଼େ । ଅଜନ୍ତାର ଚିତ୍ର ଓ ଦାକ୍ଷିଣାତ୍ୟ ଅଞ୍ଚଳର ମନ୍ଦିର ଗାତ୍ରର ଚିତ୍ରାବଳୀ, ବିହାରର ବୌଦ୍ଧ ସ୍ଥାପତ୍ୟ କଳା ଏବଂ ଯୁକ୍ତପ୍ରାନ୍ତର ଭାସ୍କର୍ଯ୍ୟରେ ମନୁଷ୍ୟର ଯେଉଁ ଅବୟବକୁ ଅପୂର୍ବ ରୂପ ଦିଆଯାଇଛି ଏବଂ ଆମ ଉତ୍କଳର ଚାରୁକଳା ଯେଉଁ ଅବଦାନକୁ ଲୋକ ଚକ୍ଷୁର ବିଳାସ କରି ଥୋଇଛି । ତାହାର ମୂଳଭିତ୍ତି ଭାରତୀୟ କଳାଶାସ୍ତ୍ରରୁ ନିଆଯାଇଛି । ଭାରତୀୟ ବସନ, ଭୂଷଣ, ବାଦ୍ୟ, ଅସ୍ତ୍ରଶସ୍ତ୍ର, ଅଳଙ୍କାର, ଭଙ୍ଗୀ, ରୂପ ରେଖ, ହାସ୍ୟ ଲାସ୍ୟ, ମୁଦ୍ରା ଏହି ଦେଶର ବାୟୁମଣ୍ଡଳରେ ନିର୍ମିତ । କେବଳ ମନୁଷ୍ୟ କାହିଁକି, ପଶୁ, ପକ୍ଷୀ, ପୁଷ୍ପ, ଲତା, ବିତାନ ବୃକ୍ଷ ସ୍ଥାବର ଜଙ୍ଗମାତ୍ମକ ଏହି ରୂପ ଶିଳ୍ପ ଭିତରେ ଗୋଟିଏ ପରମ ଐକ୍ୟ ଦେଖାଯାଏ ଏବଂ ତାହାଯେ କେବଳ ଖାଣ୍ଟି ଭାରତୀୟ, ଏଥିରେ ସନ୍ଦେହର ଅବକାଶ ମଧ୍ୟ ନ ଥାଏ । ପୃଥିବୀର ନାନା ଦେଶର ଶିଳ୍ପକଳା ଚିତ୍ର ଭାସ୍କର୍ଯ୍ୟର ମଡ଼େଲ ଆମ୍ଭେମାନେ ଦେଖିଛୁଁ । ଗ୍ରୀସ୍ ଦେଶର କଳାସୃଷ୍ଟିର ଆର୍ଦର୍ଶରେ ଯେ ନିପୁଣ ବସ୍ତୁବାଦକୁ ଭିତ୍ତିକରି ରୂପକାର ତାଙ୍କର ଅମର ଅବଦାନ ସୃଷ୍ଟି କରିଥିଲେ, ତାହାର ପରିଚୟ ମଧ୍ୟ ମିଳେ ସେଠାକାର ଚିତ୍ରରୁ । କିନ୍ତୁ ଭାରତୀୟ ଚିତ୍ରକଳା ଭାରତୀୟ ଶିଳ୍ପର ପ୍ରକୃତି ଚିତ୍ର ଏବଂ ନାନା ରୂପ କଳ୍ପନା ଏବଂ ଯୋଜନା, ଭାବ ପ୍ରକାଶଭଙ୍ଗୀ ଯେ ପୃଥିବୀର ଅନ୍ୟାନ୍ୟ ଶିଳ୍ପଠାରୁ ନିତାନ୍ତ ପୃଥକ, ଏହାହିଁ ତହିଁରୁ ବାରି ହୋଇଯାଏ । ମନୁଷ୍ୟ ଆଦିମ ଯୁଗରେ ପ୍ରସ୍ତର, ଫଳକ, ଅସ୍ଥି, ମୃତ୍ତିକା, କଉଡ଼ି ତାହାର ପରବର୍ତ୍ତୀ ପର୍ଯ୍ୟାୟରେ ଧାତୁ ନିର୍ମିତ ଅଳଙ୍କାର ପ୍ରଭୃତି ଦ୍ୱାରା ନିଜ ମଗ୍ନ ଚେତନାରେ ରୂପ ସୌନ୍ଦର୍ଯ୍ୟର ବୁଭୁକ୍ଷା ପ୍ରଥମେ ଅନୁଭବ କରିଥିଲା ଯେପରି ପ୍ରଳୟ କାଳରେ ନାଦ ବ୍ରହ୍ମ ସୃଷ୍ଟି ପରେ ମନୁଷ୍ୟ; ପକ୍ଷୀ କାକଳି ଶୁଣି ଶବ୍ଦ ସମ୍ବନ୍ଧରେ ସଚେତନ ହେଲା ଏବଂ ତାହାକୁହିଁ ଆପଣା କଣ୍ଠରେ ଅନୁକୃତି କରିବାରେ ପ୍ରଥମ ଆବେଗର ପରିଚୟ ଲାଭ କରିଥିଲା– ଏହା ଅନେକାଂଶରେ ଠିକ୍ ସେହିପରି । ସୌନ୍ଦର୍ଯ୍ୟାନୁଭୂତି ମନୁଷ୍ୟ ପ୍ରାଣର ସହଜାତ ପ୍ରବୃତ୍ତି ବୋଲି ସହସ୍ର ସହସ୍ର ବର୍ଷର

ମନୁଷ୍ୟଜାତିର ସଂସ୍କାର ଏବଂ ସଭ୍ୟତା ତାହାକୁ ପ୍ରତି ଯୁଗରେ; ସୌନ୍ଦର୍ଯ୍ୟର ପ୍ରବଳ କ୍ଷୁଧାରେ ଅସ୍ଥିର କରି ଦେଇଛି । ଆଉ ତାହାରି ପ୍ରକାଶ ତାର ନିତ୍ୟ ଅକୁଣ୍ଠିତ ରୂପ ଓ ରସ ସୃଷ୍ଟିରେ । ମନୁଷ୍ୟର ଏହି ଚିରନ୍ତନ ଆକୂତି ତାହାର ମୂକ ମନରେ ଯେଉଁ ଭାବ ସମ୍ପଦ ଅନ୍ତରର ଅବଗୁଣ୍ଠିତ କୋଣରେ ସୃଷ୍ଟି ପାଇଁ ତାକୁ ଅନୁପମ ପ୍ରେରଣା ଦେଇଛି, ସେଠାରେ ସେ ସ୍ରଷ୍ଟାଙ୍କ ସହିତ ସୃଷ୍ଟିର ପ୍ରତିଦ୍ୱନ୍ଦିତା କରିଛି ଏବଂ ସ୍ରଷ୍ଟାଙ୍କ ସହିତ ବାସ୍ତବିକ ପ୍ରତ୍ୟକ୍ଷ ଜଗତରେ ସମାନ ସ୍ଥାନ ଅଧିକାର କରି ଗୌରବ ମାଲ୍ୟରେ ଭୂଷିତ ହୋଇପାରିଛି । ଏହି ପୃଥିବୀର ରୂପ ରସ, ଗନ୍ଧ, ସ୍ପର୍ଶ ପ୍ରତି ମୁହୂର୍ତ୍ତରେ ତାହାର ଅନ୍ତର ଦୁଆରରେ ଧକ୍କା ଦେଇ ତାକୁ ଉତିଷ୍ଠିତ, ଜାଗ୍ରତ କରିଛି ଶିଳ୍ପସୃଷ୍ଟିରେ । ସେ ଯେ କେବଳ ଚିତ୍ର, ଭାସ୍କର୍ଯ୍ୟର ଅଭିଜାତ ପଂକ୍ତିରେ ତାର ଅନ୍ତରର ଭାବକୁ ରୂପଦାନ କରି ସାର୍ଥକ ହୋଇଛି ତାହା ନୁହେଁ, ଶିଳ୍ପୀ ଖୋଲି ଦେଇଛି । ବିଶ୍ୱର ରହସ୍ୟମୟ ଚନ୍ଦ୍ରଶାଳାପୁର—ମାନବ ଲୋକରେ ଏବଂ ତାହାରି ଇଙ୍ଗିତରେ, ତାହାରି ସଙ୍କେତରେ ଗଢ଼ି ଉଠିଛି । ଶତାବ୍ଦୀରୁ ଶତାବ୍ଦୀ ଧରି ମାନବ ସଭ୍ୟତା । ମନୁଷ୍ୟର ଶିଳ୍ପାନୁଭୂତିହିଁ ଆଜି ତାହାକୁ ଅନ୍ଧକାରର ଆଦିମ ଯୁଗର ସଭ୍ୟତାର ଓ ସଂସ୍କାରର କ୍ରମବିକାଶ ପଥରେ ବହୁ ଦୂର ଦୂରାନ୍ତକୁ ଟାଣି ଆଣି ଛିଡ଼ା କରିଛି । ରବିକରୋଜ୍ଜ୍ୱଳ ପ୍ରଦୀପ୍ତ ରାଜପଥରେ । ଏହି ଯୁଗରେ, ଯେଉଁ ଯୁଗରେ ମନୁଷ୍ୟ ମନରେ ସହସ୍ର ପ୍ରଶ୍ନ ମନୁଷ୍ୟ ପ୍ରାଣରେ ସୌନ୍ଦର୍ଯ୍ୟର ଶ୍ରେଷ୍ଠ ପୂଜାପୀଠ ସ୍ଥାପିତ ହୋଇଯାଇଛି । ମନୁଷ୍ୟ ସେହି କାରଣରୁ ଆଜି ଯେ କେବଳ ଲୋକ ଇଲାମ ରୂପର ଭିଖାରୀ ହୋଇ ରହିଛି ତାହା ନୁହେଁ, ମନୁଷ୍ୟ ତାର ହିଂସ୍ର ପଶୁ ପ୍ରକୃତି ଛାଡ଼ି ସଭ୍ୟତାର ରାଜପଥରେ ଛିଡ଼ା ହୋଇ ରୂପାୟନ ରସ ବାରିଧିରେ ଉବୁରି ହୋଇ ଆହରଣ କରି ପାରିଛି ନାନା ରତ୍ନ, ମଣି ମାଣିକ୍ୟ । ସୀମାରେ ଆବଦ୍ଧ ନରହି ଚାଲିଛି ଅସୀମର ଅଭିସାର ପଥରେ ଓ ଜୀବନର ନିତ୍ୟ ସଂଘର୍ଷମୟ ବାସ୍ତବ କ୍ଷେତ୍ରରେ ଏହି ଶିଳ୍ପୀ ପ୍ରକୃତିର ସାର୍ଥକତାର ଆଶାୟୀ ହୋଇ । ତାହାର ଶିଳ୍ପ ପ୍ରତିଭା କେବଳ ମୂକ ଶିଳ୍ପ ସୃଷ୍ଟିରେ ଆବଦ୍ଧ ହୋଇନାହିଁ, ପ୍ରକାଶର ସୁଯୋଗ ପାଇଛି ମୁଖର ହୋଇ କବିତାରେ, ସଙ୍ଗୀତ ଓ ବାଦ୍ୟ ଝଙ୍କାରରେ । ଶିଳ୍ପୀ ମନୁଷ୍ୟ ଦୈନନ୍ଦିନ ଜୀବନର ନିତ୍ୟ ପ୍ରବହମାନ ନିଷ୍ଠୁର ପ୍ରତ୍ୟକ୍ଷତାର ଅସହ୍ୟ ବିଡ଼ମ୍ବନା ଓ ଗ୍ଲାନିକୁ ଜୟ କରିବା ପାଇଁ ବସନ, ଭୂଷଣ, ଅଳଙ୍କାର, ତୈଜସ ପତ୍ର ଉଦ୍ୟାନ । ନିର୍ମାଣ, ଗୃହନିର୍ମାଣ, ବସ୍ତୁ ନିର୍ମାଣର ଅପୂର୍ବ ପରାକାଷ୍ଠା ଏବଂ ଶିଳ୍ପ କୌଶଳ ଆବିଷ୍କାର କରିଛି । ସୁତରାଂ ଆମ୍ଭେମାନେ ଦେଖିବାକୁ ଯାଉ ମଣିଷ୍ୟ ଜୀବନରେ ପ୍ରାଣବାୟୁର ଆବଶ୍ୟକତା ଏତେ ନିବିଡ଼ ଓ ନିଖୁଣ ଯେ, ତାହାର ତୁଳନା ନାହିଁ । ପ୍ରାଣବାୟୁ ଅଭାବରେ ମନୁଷ ଯେପରି ଏକ ମୁହୂର୍ତ୍ତ ବଞ୍ଚିବା ଅସମ୍ଭବ, ସୌନ୍ଦର୍ଯ୍ୟମୟ ଶିଳ୍ପସମ୍ଭାର ବିନା ମନୁଷ୍ୟ ସେପରି ଏକ ମୁହୂର୍ତ୍ତ ବଞ୍ଚିବା ଅସମ୍ଭବ । ସୁକୁମାର ସୁଠାମ ସୁନ୍ଦର ଶିଳ୍ପ ସମ୍ଭାର ବିନା ମନୁଷ୍ୟ ଜୀବନର ବଞ୍ଚିବା ନିରର୍ଥକ ଓ ବିଡ଼ମ୍ବନାମୟ । କାରଣ ପ୍ରତି ମନୁଷ୍ୟର ଆନନ୍ଦ ପାଇଁ ବଞ୍ଚିବାର ଉପାଦାନ ରୂପେ ସୌନ୍ଦର୍ଯ୍ୟ ଓ ଶିଳ୍ପ ସହିତ ମାନବ ଜୀବନର ଅଙ୍ଗାଙ୍ଗୀ ସମ୍ପର୍କ, ସୃଷ୍ଟିର ଆଦିମ କାଳରୁ ସୁପ୍ରତିଷ୍ଠିତ । ଏହି ଶିଳ୍ପ ପ୍ରେରଣା

ଓ ସୌନ୍ଦର୍ଯ୍ୟବୋଧ ଏତେ ସତ୍ୟଯେ, ଏହା ପ୍ରତ୍ୟେକ ମାନବର ଚେତନାକୁ ଆବେଷ୍ଟିତ କରି ତାହାର ଜନ୍ମ କାଳରୁ ମୃତ୍ୟୁ ପର୍ଯ୍ୟନ୍ତ ରହିଅଛି । ଏହି ରୂପ ଦ୍ୟୋତନା ବ୍ରହ୍ମ ସ୍ୱରୂପ ଏବଂ ଏହି ଭାବର ତନ୍ମୟତା ଶିଳ୍ପୀକୁ ଦେବତ୍ୱରେ ଉପନୀତ କରିଥାଏ ବୋଲି ମନୁଷ୍ୟ ସମାଜରେ ଶିଳ୍ପ-କାରର ଆସନ ଅନ୍ୟତ୍ର ଉଚ୍ଚରେ ପ୍ରତିଷ୍ଠିତ । କାରଣ ଏ ସଂସାରରେ ସେହି ଶିଳ୍ପୀ ବ୍ୟକ୍ତିହିଁ ସାଧାରଣ ମନୁଷ୍ୟର ଚକ୍ଷୁ, କର୍ଣ୍ଣ ଏବଂ ତାହାର ସମଗ୍ର ସତ୍ତାରେ ପ୍ରଥମ ସୌନ୍ଦର୍ଯ୍ୟର ଚେତନା ଆଣିଦିଏ ଓ ଅନାହତ ମଧୁର ବଂଶୀ ସ୍ୱନର ପରମ ମାଧୁରୀରେ ତନ୍ମୟ କରାଇଦିଏ ବୋଲି ମାନବ ଚିରଦିନ ଖୋଜି ଖୋଜି ବୁଲେ ପ୍ରକୃତି ବକ୍ଷରୁ ରୂପ, ରସ, ଗନ୍ଧ ସ୍ପର୍ଶର ସ୍ୱାଦ । ଏହି ସ୍ୱାଦିଷ୍ଟ ଅନୁଭୂତି ତାହାକୁ ନେଇ ଉପନୀତ କରାଇଦିଏ ସତ୍, ଚିତ୍ ଆନନ୍ଦମୟ ଲୋକରେ ବୁଭୁକ୍ଷୁ ପ୍ରାଣର ଚିର ବିରାମ ସ୍ଥଳୀରେ ।

ଏହି ସ୍ଥାନରେ ଶିଳ୍ପୀହୁଏ ସାର୍ଥକ, ମାନବ ଆଗରେ ଖୋଲିଯାଏ ସୃଷ୍ଟିର ଅନିର୍ବଚୀୟ ଗନ୍ତାଘରର ପ୍ରଥମ ଦରଜା । ତାହାର ଆଉ ଖୋଜିବାର ବାକୀ ରହେନାହିଁ । ସେ ଯେଉଁ ଆନନ୍ଦର ଆସ୍ୱାଦ କରେ ତାହାକୁ ଦାର୍ଶନିକଙ୍କ ଭାଷାରେ ଅମୃତର ଆନନ୍ଦ ବ୍ରହ୍ମାନନ୍ଦ ବୋଲି କୁହାଯାଏ । ତାହାର ଚକ୍ଷୁରେ ଏହି ସସାଗରା ଧରଣୀର ଅସରନ୍ତି ରୂପ, ଆମ୍ର ମୁକୁଳର ମଧୁ ସୁରଭି, ମଳୟର ସୁଗନ୍ଧ, ପିକର ପଞ୍ଚମ ତାନ, କ୍ଷୀଣ ଜ୍ୟୋତ୍ସ୍ନାର ରଜତ ବିଧୌତମାନ ସ୍ନିଗ୍ଧ ମାଧୁରୀ ତାରା ଭରା ନୀଳଚନ୍ଦ୍ର, ତାପରେ ତୃତୀୟା ଶଶୀର ଗଭୀର ଆବେଗ ସ୍ରୋତସ୍ୱତୀର ରଜତ ଧାରାଇ ଅବ୍ୟକ୍ତ ଚାପଲ୍ୟ ସମସ୍ତ ମିଶି ଏକ ଅଖଣ୍ଡ ସୌନ୍ଦର୍ଯ୍ୟଲୋକ ସୃଷ୍ଟି କରିଦିଏ । ସେ ଆତ୍ମହରା ହୋଇ ସୃଷ୍ଟି କରେ, ଏହି ସୃଷ୍ଟିର ପ୍ରେରଣାରେ ଶିଳ୍ପୀ ବଞ୍ଚିରହେ; କାରଣ ସୃଷ୍ଟିରେ ହିଁ ତାର ସାର୍ଥକତା । ପ୍ରାଣର ଖୋରାକ ପାଏ ସେ ସୌନ୍ଦର୍ଯ୍ୟ ଲୋକର ସ୍ୱର୍ଣ୍ଣମୃଗର ସନ୍ଧାନୀ ହୋଇ । ତାର ଗତି ବେଗରେ ସ୍ଥଳ କମଳ ଫୁଟି ଫୁଟି ଯାଏ, ସେ ଉପନୀତ ହୁଏ ଯାଇ ସେହି ରହସ୍ୟମୟ ଲୋକରେ । ସତ୍ୟ, ଶିବ, ସୁନ୍ଦରଙ୍କର ଦ୍ୱାର ପରେ ଦ୍ୱାର ତାର ନିକଟରେ ଉନ୍ମୋଚିତ ହୋଇଯାଏ ଅନାୟାସରେ ଶିଳ୍ପ-ଲୋକର ସରଣୀରେ ପଥିକ ପାଏ ଦୟିତ୍ୱର ବାଞ୍ଛିତ ମିଳନ ଶିଳ୍ପ ସୃଷ୍ଟିରେ ଏକ ଅଖଣ୍ଡ ଐକ୍ୟବୋଧ; ବ୍ରହ୍ମାନନ୍ଦ ।

ଶିଳ୍ପକାରର ଏହି ସୃଷ୍ଟି ଆମ୍ଭମାନଙ୍କ ଉତ୍କଳ ଦେଶର ଜନ ଚିତ୍ତ ଉପରେ ଯେ ଗଭୀର ପ୍ରଭାବ ପକାଇ ଥିଲା, ତାହାରି ମୂକ ସାକ୍ଷୀ ହୋଇ ରହିଛି କୋଣାର୍କର ଭଗ୍ନାବଶେଷ, ଏକାମ୍ରକାନନର ମନ୍ଦିର । ଏକଦା ଉତ୍କଳ ଯେ ଶିଳ୍ପ ସୌଧ ନିର୍ମାଣ କରିଥିଲା, ଆଜି ତାହା ଏ ଦରିଦ୍ର ଜାତିର କଳନାକରିବା ଅସମ୍ଭବ ହୋଇପଡ଼ିଛି । ଉତ୍କଳର ପ୍ରତି ଗୃହରେ ଶିଳ୍ପପୂଜା, ପ୍ରତି ନରନାରୀଙ୍କର ପ୍ରାତ୍ୟହକ ଜୀବନରେ ଶିଳ୍ପ ଅଭିନନ୍ଦିତ କରୁଥିଲା ବ୍ୟକ୍ତିଙ୍କୁ । ସେହି କାରଣରୁ ମୂର୍ଖ ନାରୀ ଶିଳ୍ପର ପ୍ରେରଣାକୁ ସାର୍ଥକ କରୁଥିଲା ମୁରୁଜରେ, ଠା ଭଙ୍ଗୀରେ, ଗୃହଭିତ୍ତି ଗାତ୍ର ଅଙ୍କନ କରି ଓ ପଶୁପକ୍ଷୀ, ଫୁଲଫଳ, ଶସ୍ୟ ସମ୍ଭାର, ଭୂଷଣର ଚିତ୍ରରେ, ଅଙ୍ଗନକୁ ଅଙ୍କନ କଳାରେ ଭରି ଦେଇ ସେହି ଥିଲା ସ୍ୱାଭାବିକ, ତହିଁରେ ମାତ୍ରାଜ୍ଞାନ ଓ ସାମଞ୍ଜସ୍ୟ ଏତେ ଥିଲା ଯେ କମ୍ପାସ ସ୍କେଲର ଦରକାର ପଡୁନଥିଲା । ଗୃହ ଶିଳ୍ପରେ

କାରୁକାମରେ ଅନ୍ତରର ରୂପକୁ ଆହୁରି ରୂପବାନ ଓ ରସଭରା କରିବା, ନିଜର ଜୀବନକୁ ରୂପ-ସର-ଗନ୍ଧ-ସ୍ୱାର୍ଥରେ ପୂର୍ଣ୍ଣ କରିବା ପାଇଁ ତାହାର କି ଅପୂର୍ବ ପଟୁତା ଜନମନ ହରଣ କରୁଥିଲା । ଚନ୍ଦନ କାମ, ଭଙ୍ଗା କାଇଁଞ୍ଚ କାମ, ବିଞ୍ଚଣା, ପାହିଲି କାମ, ଧାନବେଣ୍ଟି କାମ, ହାଣ୍ଡି ଚିତ୍ର, ଚଉଁରୀ କାମ ଓ ନାନା ରକମ ହସ୍ତଶିଳ୍ପ ତାହାର ଆନନ୍ଦ ବର୍ଦ୍ଧନ କରୁଥିଲା । ମୂର୍ଖ ପୁରୁଷ ମଧ୍ୟ ତାହାର ସହଧର୍ମିଣୀ, ସହଚାରିଣୀ ନାରୀର ସଂସ୍ପର୍ଶରେ ନିତ୍ୟ ପାଉଥିଲା ଶିଳ୍ପ ଲୋକକୁ ଗତି କରିବା ନିମନ୍ତେ ଚେତନାର ସ୍ପନ୍ଦନ ଓ ତାହାର ନିପୁଣ ହସ୍ତର ଅବଦାନକୁ ସାଇତି ରଖୁଥିଲା ଏ ଜାତିର ସମଗ୍ର ଜନ ଚେତନା, ଗୃହ ସଜରେ, ମୃତ୍ତିକା ଶିଳ୍ପରେ, କାଷ୍ଠ ଶିଳ୍ପରେ, ପଲଙ୍କ ସୁପାତିରେ । ପିତ୍ତଳ ଗୋବମରା ମାଣ୍ଟୁତଳ କାଷ୍ଠ ଶ୍ରେଣୀମାନଙ୍କରେ ଧାତୁ ଶିଳ୍ପର ଅପୂର୍ବ କାରୁକାର୍ଯ୍ୟରେ, ଅଳଙ୍କାର ଶିଳ୍ପରେ ଓ ବସ୍ତ୍ର ଶିଳ୍ପରେ । ଗୃହ ସଂଲଗ୍ନ ପୁଷ୍ପୋଦ୍ୟାନ ଗୃହକୁ ଚିତ୍ରବଦ୍ ପ୍ରତିଭାତ କରାଉଥିଲା । ନାନା ଜାତି ପୁଷ୍ପ ସୁରଭିରୁ, ତାନ-ମାନ-ଲୟ-ଯୁକ୍ତ ଜାତୀୟ ସ୍ୱର ସଞ୍ଜାତ ବାଦ୍ୟ ଯନ୍ତ୍ରରୁ ଜାତିର ମନ ପାଉଥିଲା କାବ୍ୟ ଛନ୍ଦର ପ୍ରେରଣା, ଜନ୍ମ ଦେଇଥିଲା ଏ ଭୂମିରେ ଅକଳନ କବିଙ୍କୁ, ଯେଉଁମାନେ ରସ ସାହିତ୍ୟ ରଚିଥିଲେ । ନାୟକ ନାୟିକା ମୁଖରେ ନିଜର ଅନୁଭବ ଅଭିଜ୍ଞତାକୁ କବିତାରେ ଛନ୍ଦୋବଦ୍ଧ କରି ବାକ୍ୟାଳଙ୍କାରରେ ସଜାଇ ଦେଇଥିଲେ ଓଡ଼ିଆ ଜାତିର ଉତ୍ତର ପୁରୁଷ ପାଇଁକି ।

ପ୍ରାଙ୍ଗଣରେ ବାଜି ଉଠୁଥିଲା ବୀଣା, ପଖୌଜ, ମୃରଜ ମନ୍ଦିରାର ବିଚିତ୍ର ତାନ ତରଙ୍ଗ । ମନ ଫୁଲଣାରେ ସ୍ୱର ଉପଚିତ କଣ୍ଠ ଓଡ଼ିଆ ତନ୍ମୟ ହେଉଥିଲା ନଟୀର ନୂପୁର ନିକ୍ୱଣରେ, ନାୟିକାକୁନ୍ତଳ, ଖସା ଚମ୍ପକ ଦାମର ମାଦଳ ସୁରଭିରେ ଆଉ ତାର ଗଭା ମଣ୍ଡିତ କେତକୀ-ପତ୍ର ଅବଲେପିତ ଅଗୁରୁ କସ୍ତୁରୀ ବୋଳା ଚୁଆ ଚନ୍ଦନର ମଞ୍ଜୁ ମହକରେ । ଉତ୍କଳର କମକାନ୍ତ ପ୍ରକୃତି ମଧ୍ୟ ଅନୁକୂଳ ବାତାବରଣ ସୃଷ୍ଟି କରୁଥିଲା ଋତୁ ସଂହାରର ବିଚିତ୍ର ଉତ୍ସବରେ । ସାଧବ ଘର ବୋହୂର ପତି କରି ଯାହାଥିଲା ବୋଇତ ବଣିଜ । ନୀଳ ସମୁଦ୍ରର ବକ୍ଷଚିରି ଭାସି ଯାଉଥିଲା ନୀଳ ନଭରେ ବଳକା ପନ୍ତିପରି ଉତ୍କଳ ବିନ୍ଧାଣୀର ତିଆରି ବୋଇତମାଳା । ସେ ବୋଇତ ତିଆରି ହେଉଥିଲା ହଂସ ମୟୂର ଓ ନର୍ତ୍ତକୀର ରୂପଭଙ୍ଗୀ ଧରି ଏବଂ ବିଚିତ୍ର ବର୍ଣ୍ଣରାଗ, କାଷ୍ଠ ଫଳକ ଉପରେ ଶିଳ୍ପ ରଚନାକୁ ଜୀବନ୍ତ-ବଦ୍ ପ୍ରତୀୟମାନ କରାଉଥିଲା । କିନ୍ତୁ ଐଶ୍ୱର୍ଯ୍ୟମୟ ଅତୀତର ଏ ପ୍ରାଚୀନ ଗୌରବ ଗୀତ ଗାଇ ଆଉ କେତେଦିନ ଆମ ଜାତି ବଞ୍ଚିବ ? ଜାତିର ଶିଳ୍ପ ପ୍ରତିଭା କଣ ସତେ ଆଉ ବଞ୍ଚିଛି ।



ଆସନ୍ତା କାଲି : ୩ବର୍ଷ, ୯ମ ସଂଖ୍ୟା : ସେପ୍‌ଟେମ୍ବର ।

# ଗଣସାହିତ୍ୟ

କେଉଁ ଧାରଣାର ସାହିତ୍ୟ ସୃଷ୍ଟିକଲେ ତାହା ଦେଶର ଦୀନ ଦରିଦ୍ର ଲୋକ-ସାଧାରଣଙ୍କର ହୃଦୟତନ୍ତ୍ରୀକୁ ଗଭୀର ଭାବରେ ସ୍ପର୍ଶ କରିବ, ତାହା ବର୍ତ୍ତମାନ ଦେଶର କେତେକ ଚିନ୍ତାଶୀଳ ସାହିତ୍ୟିକମାନଙ୍କର ପ୍ରଧାନ ଆଲୋଚ୍ୟ ବିଷୟ ହୋଇପଡ଼ିଛି ଏବଂ ହେବା ମଧ୍ୟ ପ୍ରୟୋଜନୀୟ । ବର୍ତ୍ତମାନ ଆମ ଦେଶରେ ସାହିତ୍ୟ ନାମରେ ଯେଉଁସବୁ ଗଦା ଗଦା କାବ୍ୟ, କବିତା, ଗଳ୍ପ, ଉପନ୍ୟାସ ପ୍ରଭୃତି ପ୍ରତି ମୁହୂର୍ତ୍ତରେ ମୁଦ୍ରାରାକ୍ଷସୀ ଗର୍ଭରୁ ଜନ୍ମ ଲାଭ କରୁଛି, ତାହା ଯେ ମୂକ ଜନସାଧାରଣଙ୍କ ଜୀବନକୁ ତିଳେମାତ୍ର ପ୍ରଭାବିତ କରିପାରୁନାହିଁ, ଏହା କହିବା ନିଷ୍ପ୍ରୟୋଜନ । ବର୍ତ୍ତମାନ ଓଡ଼ିଆ ସାହିତ୍ୟକୁ ବାବୁ ସାହିତ୍ୟ ଆଖ୍ୟା ଦିଆଯାଇପାରେ । ଏ ସାହିତ୍ୟର ପାଠକ ପାଠିକା, ଲେଖକ ଲେଖିକା ଓ ସମଜ୍‌ଦାର ପ୍ରଭୃତି ସମସ୍ତେ 'ବାବୁ' ଓ 'ବାବୁଆଣୀ' ଶ୍ରେଣୀର ଅନ୍ତର୍ଗତ ହୋଇଥିବାରୁ ଏହାକୁ ଦେଶର ସଂଖ୍ୟାଧିକ ଓ ଚିର-ନିଷ୍ପେଷିତ ଜନସାଧାରଣଙ୍କର ଗ୍ରହଣୋପଯୋଗୀ କରିବା ପାଇଁ କୌଣସି ପ୍ରକାର ଚେଷ୍ଟା କରିବାକୁ ସେମାନେ ମନେକରୁ ନାହାନ୍ତି । ଫଳରେ ଏହାହିଁ ହେଉଅଛି ଯେ; ଏ ସାହିତ୍ୟ କେତେକ ମୁଷ୍ଟିମେୟ ବୁଦ୍ଧିଜୀବୀ ମଧ୍ୟରେ ଶ୍ରେଣୀର ଭଦ୍ରଲୋକଙ୍କ ଭିତରେ ସୀମାବଦ୍ଧ ହୋଇ ରହିଯାଇଛି ଏବଂ ଏହାର ଆବେଦନ ଦେଶର ଅଧିକ ସଂଖ୍ୟକ ମଳିମୁଣ୍ଡିଆଙ୍କ ନିକଟରେ ପହଞ୍ଚିପାରୁ ନାହିଁ ।

ଜାତିର ଅନ୍ୟାନ୍ୟ ଅନୁଷ୍ଠାନ ପରି ସାହିତ୍ୟର ମୂଳପତ୍ତନ ମଧ୍ୟ ଜନସାଧାରଣଙ୍କୁ କେନ୍ଦ୍ର କରି ହେବା ଉଚିତ୍ । ତାହା ନକଲେ ଏହା ଦେଶର ହୃତପିଣ୍ଡଠାରୁ ଯୋଗ ହରାଇବ ଏବଂ ଅପ୍ରୟୋଜନୀୟ ସୌଖୀନ ସୃଷ୍ଟିରେ ପର୍ଯ୍ୟବେସିତ ହେବ ।

ସାହିତ୍ୟ ସମସାମୟିକ ସମାଜର ମଶାଲ ସଦୃଶ । ଏହା ଦେଶର ସେହି ସମୟର ଆର୍ଥନୀତିକ ଓ ଅନ୍ୟାନ୍ୟ ପାରିପାର୍ଶ୍ୱିକ ଅବସ୍ଥାବଳୀର ସମନ୍ୱୟରୁ ଉଦ୍‌ଭବ ଏବଂ ସେହି ସମୟର ଚିନ୍ତାଧାରାକୁ ଇତିହାସର ନିର୍ଦ୍ଦେଶାନୁସାରେ ଚଳେଇବା ସକାଶେ ଆଲୋକ ବିତରଣ କରିବାକୁ ସେ ବାଧ୍ୟ । ଏହି ଦୃଷ୍ଟିରୁ ଦେଖିବାକୁ ଗଲେ ସାହିତ୍ୟର ଗୋଟାଏ ବିଶିଷ୍ଟ ଅର୍ଥ ଓ ଉଦ୍ଦେଶ୍ୟ ରହିଛି । ଯେଉଁମାନେ ସାହିତ୍ୟକୁ ଦେଶକାଳ ପାତ୍ରର ଅତୀତ ଏବଂ ସେ ସବୁଠାରୁ ସ୍ୱାଧୀନ ଏକ ସ୍ୱତନ୍ତ୍ର ଅନୁଷ୍ଠାନ ବୋଲି ମନେ କରନ୍ତି, ସେମାନେ ଏକ ପ୍ରଧାନ ଭୁଲ୍ କରନ୍ତି । ଏହିସବୁ ବୁଦ୍ଧିଜୀବୀ ଲେଖକମାନେ ସାଧାରଣତଃ ପ୍ରଚାର କରିଥାନ୍ତି ଯେ,

ସାହିତ୍ୟ ତାର ନିଜର ଆନନ୍ଦରେ ସୃଷ୍ଟି କରିବ । ସେ ଇତିହାସର ଇଙ୍ଗିତକୁ ଜମା ଅପେକ୍ଷା କରିବ ନାହିଁ; କାରଣ ସେ ଅବସର ତାର ନାହିଁ । ଏହିସବୁ ଗୋଷ୍ଠୀର ଲେଖାଳୀମାନେ – "Art for Art's sake" ବୋଲି ହାଙ୍କିଥାନ୍ତି; କିନ୍ତୁ ଟିକିଏ ତଳେଇ କରି ଦେଖିଲେ ଆମ୍ଭେମାନେ ବୁଝିପାରିବା ଯେ, ଏହା ଗୋଟିଏ ଭ୍ରମାତ୍ମକ ଯୁକ୍ତି । ଏହା ଭିତରେ କୌଣସି ଅର୍ଥ ନାହିଁ ।

ଖାଲି ସେତିକି ନୁହେଁ–ନିଜର ଶ୍ରେଣୀସ୍ୱାର୍ଥ ଏବଂ ମଧ୍ୟବିତ୍ତ ଶ୍ରେଣୀ-ସୁଲଭ ସୌଖୀନ ମନୋବୃତ୍ତିର ତାଡ଼ନାରେ ଏହି ଲେଖକମାନେ ଏହା ପ୍ରଚାର କରିଥାନ୍ତି । ଇଉରୋପରେ ଆସକାର ଉଆଇଲ୍ଡଙ୍କ ସମୟରେ ତାଙ୍କର ଚେଲାମାନେ ଏହି ଧରଣର ଗୋଟାଏ ହୁରି ପକାଇଥିଲେ ।

"Art for Art's sake" ଗୋଟିଏ ଚମତ୍କାର ଚାତୁରୀପୂର୍ଣ୍ଣ ଅଭିବ୍ୟକ୍ତି । ଏହି କଥା ପଦକ ଭିତରେ ଦୁନିଆର ସବୁ ଭଣ୍ଡ ଯୁକ୍ତିହୀନ ଏବଂ ବିଳାସର ଖୋରାକ ଯୋଗାଇଲା ଭଳି ମାଲ ମସଲା ସାହିତ୍ୟର ଆବରଣରେ ଉପସ୍ଥାପିତ କରାଯାଇପାରେ । ଏ ଧରଣର ସାହିତ୍ୟକୁ ଗତସଂଖ୍ୟା ସହକାରରେ ସୁପରିଚିତ ଯୁବକ-ଲେଖକ ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ରାଉତରାୟ "Escapist Literature" କହି ଥଟ୍ଟା କରିଛନ୍ତି । ଖାଲି ସେତିକି ନୁହେଁ, ସେ ଏହାକୁ ପ୍ରତିକ୍ରିୟାଶୀଳ (reactionary) ବୋଲି କହି ମଧ୍ୟ ଚାବୁକ ମାରିବାକୁ ପଛେଇ ନାହାନ୍ତି । ହୋଇପାରେ, ସଚ୍ଚିବାବୁ ସାମ୍ୟବାଦୀର ଦୃଷ୍ଟିକୋଣରୁ ସାହିତ୍ୟର ସଂଜ୍ଞା ନିର୍ଦ୍ଦେଶ କରିବାକୁ ଯାଇ ଏପରି କହିଛନ୍ତି କିମ୍ୱା ହୁଏତ ଦେଶର ଅଧିକାଂଶ ପାଠକ ପାଠିକା ତାଙ୍କ ସହିତ ଏ ବିଷୟରେ ଏକମତ ହୋଇ ନପାରନ୍ତି; କିନ୍ତୁ ତଥାପି ଏହା ଭିତରେ ଯେ, ସତ୍ୟ ରହିଛି, ଏହା ଦେଶର ଯେଉଁମାନେ ଆଧୁନିକ ଚିନ୍ତାଧାରା ସହିତ ଯୋଗ ରଖନ୍ତି, ସେମାନେ ମୁକ୍ତ କଣ୍ଠରେ ସ୍ୱୀକାର କରିବେ ।

ଆଜିକାଲି ଆମ ଦେଶରେ ପଞ୍ଚାଏ ବେକାର ଏବଂ ମଧ୍ୟବିତ୍ତ ଶ୍ରେଣୀର ଲେଖାଳୀ ସ୍ୱକୀୟ ପରିସ୍ଥିତି ଓ ବାୟୁମଣ୍ଡଳ ପ୍ରଭାବରେ ଯେଉଁ ତଥାକଥିତ ସାହିତ୍ୟ ସୃଷ୍ଟି କରୁଅଛନ୍ତି ତାହା ଏପରି ସ୍ୱପ୍ନ ପ୍ରବଣ ଯେ, ଜନସାଧାରଣଙ୍କ ବାସ୍ତବ ଜୀବନର ନଗ୍ନ ଦିବାଲୋକରେ ତାକୁ ପରୀକ୍ଷା କଲେ ତାହା ଜୀବନ ସଂଗ୍ରାମର ତୀବ୍ରତା ମଧ୍ୟରୁ ଭୟରେ ପଳାଇ ଯାଇଥିବା ପଳାତକ ସୈନିକର ବିଳାପଛଡ଼ା ଅନ୍ୟ କିଛି ବୋଲି ପ୍ରତୀୟମାନ ହେବନାହିଁ । ଏ ସାହିତ୍ୟ ବିରୁଦ୍ଧରେ ସଚ୍ଚିବାବୁଙ୍କ କଥାରେ "ଆମ ଦୃଷ୍ଟିକୁ ଜୀବନଠାରୁ ଦୂରକୁ ନେଇଯାଏ" ବୋଲି ଅଭିଯୋଗ ଅଣାଯାଇପାରେ ।

ନିଜର ଶ୍ରେଣୀସ୍ୱାର୍ଥ ଏବଂ ଶ୍ରେଣୀଗତ ମନୋଭାବ ଦ୍ୱାରା ଲିଖିତ ହୋଇଥିବାରୁ ଆଜିକାଲିର ସାହିତ୍ୟ ଯେ ଖାଲି 'ରକ୍ଷଣଶୀଳ' ହୋଇପଡୁଛି, ତାହା ନୁହେଁ; ଅନେକ

ସମୟରେ ପ୍ରତିକ୍ରିୟାଶୀଳ ହୋଇପଡୁଛି । ଏହି ସାହିତ୍ୟିକ ଆଦର୍ଶ ପ୍ରଚାର ହେବା ଫଳରେ ଦେଶରେ ଏକ 'ପ୍ରତିକ୍ରିୟାଶୀଳ' ବାୟୁମଣ୍ଡଳ ସୃଷ୍ଟି ହେଉଛି ଏବଂ ଶିକ୍ଷିତ ଲୋକମାନଙ୍କର (କାରଣ କେବଳ ଶିକ୍ଷିତ ଲୋକହିଁ ଏ ସାହିତ୍ୟର ପାଠକ, ଖରିଦ୍‌ଦାର ଓ ପ୍ରକାଶକ) ଚିନ୍ତାର ଆଭିମୁଖ୍ୟ ପ୍ରକାଶ୍ୟ ଭାବରେ ବିପ୍ଳବ-ବିରୋଧୀ ମନୋଭାବରେ ପରିଣତ ହେଉଅଛି ।

ବର୍ତ୍ତମାନ ଯେଉଁସବୁ ସାମାଜିକ ଅବସ୍ଥାର କ୍ରିୟା ଆମ ଜୀବନ ଉପରେ କାର୍ଯ୍ୟ କରୁଛି ଏବଂ ଇତିହାସର ଯେଉଁ ସ୍ତରରେ ବର୍ତ୍ତମାନ ଆମ୍ଭେମାନେ ଅଛୁ, ତହିଁରେ ଆମର ଜୀବନର ସାହିତ୍ୟିକ ବିକାଶ ପଥରେ କେତେଗୁଡ଼ିଏ ଅପରିହାର୍ଯ୍ୟ ଏବଂ ଶକ୍ତିଶାଳୀ ବାଧା ସବୁବେଳେ ଆସି ପହଞ୍ଚୁଛି । ମଧ୍ୟଯୁଗୀୟ ସାମନ୍ତପ୍ରଥା ଏବଂ ଅଧୁନା ପ୍ରଚଳିତ ବୁର୍ଜ୍ଜୋୟା ସଭ୍ୟତାର ସଂଘର୍ଷ ଫଳରେ ବର୍ତ୍ତମାନ ଯେଉଁସବୁ ପ୍ରତିକ୍ରିୟା ବିରୁଦ୍ଧରେ ଆମକୁ ଅଗ୍ରସର ହେବାକୁ ପଡୁଛି, ସେହିସବୁକୁ ଦୂରୀକରଣ କରିବାକୁ ହେଲେ ଦେଶରେ ଏକ ସବଳ ମନୋବୃତ୍ତିର ପ୍ରସାର ସର୍ବାଦୌ ଆବଶ୍ୟକ । ସାହିତ୍ୟ ସେହି ମନୋବୃତ୍ତିର ହେବ 'ବାହନ' । ସାହିତ୍ୟର ଏହି ବିପ୍ଳବମୁଖୀ ପ୍ରତିଭାକୁ ହତ୍ୟା କରିବା ପାଇଁ ଦଳେ ଖୋସାମଦକାରୀ ସାହିତ୍ୟିକ, ଆର୍ଟ ପାଇଁ ଆର୍ଟ, ମତବାଦ ପ୍ରଚାର କରିବୁଲୁଛନ୍ତି । ଏହା ଯେଉଁପରି ମାରାତ୍ମକ, ସେହିପରି ନିନ୍ଦନୀୟ ।

ଦ୍ୱିତୀୟରେ, ଆମ ଦେଶରେ ସାହିତ୍ୟ ପୁଞ୍ଜିପତି ଓ ଶ୍ରୀଛାମୁଙ୍କର ପ୍ରଭାବରୁ ଆଜିଯାଏ ସଂପୂର୍ଣ୍ଣ ମୁକ୍ତ ହୋଇପାରିନାହିଁ । ଯେ କୌଣସି ଗ୍ରନ୍ଥକାର ବର୍ତ୍ତମାନ ବହି ଖଣ୍ଡିଏ ଲେଖି ସାରିଲାକ୍ଷଣି ତାର ପ୍ରକାଶ ଲାଗି ଜଣେ ଛାମୁଙ୍କର ଶରଣାଗତ ହୋଇଥାନ୍ତି ଏବଂ ତାଙ୍କର ପ୍ରସାଦ କଣିକାରୁ କାଣିଚାଏ ପାଇଲାକ୍ଷଣି ନିଜର ଊର୍ଦ୍ଧ୍ୱତନ ସୁପ୍ତ ପୁରୁଷଙ୍କୁ କୃତ୍ୟ କୃତ୍ୟ ମନେ କରିଥାନ୍ତି । ଖାଲି ସେତିକି ନୁହେଁ, ବହି ଖଣ୍ଡିକ ଛପାହେବା ମାତ୍ରକେ ତାକୁ 'ଦୟାର ସାଗର, ପ୍ରଜାବତ୍ସଳ, ସାହିତ୍ୟାନୁରାଗୀ ଅଖିଳ ସଦ୍‌ଗୁଣ ବିଧାନ, 'ଗୁଣଗ୍ରାହୀ, ବାଣୀଯଜ୍ଞ ପୁରୋଧା' ପ୍ରଭୃତି ଲମ୍ବା ଲମ୍ବା ବିଶେଷଣ ପ୍ରୟୋଗ ପୂର୍ବକ କୌଣସି ସ୍ୱନାମଧନ୍ୟ (?) ଅଧିପତିଙ୍କ 'ପଦାମ୍ବୁଜ'ରେ ଉତ୍ସର୍ଗ କର ଦେଇଥାନ୍ତି । ଏ ସାହିତ୍ୟ ଯେ, ଖୋସାମଦକାରୀର ସାହିତ୍ୟ ହେବ, ଏହା ଯେ କୌଣସି ଲୋକ ପୂର୍ବରୁ ଭବିଷ୍ୟତବାଣୀ କରିପାରେ । ଏହିସବୁ ରାଜାନୁଗ୍ରହ-ଭିକ୍ଷୁକ ଖୋସାମଦକାରୀଗଣ ଦେଶର ସାହିତ୍ୟ ସତ୍ତାରୁ ଲୋପ ନହେବାଯାଏ । ଆମ ସାହିତ୍ୟ ପ୍ରତିକ୍ରିୟା, ରକ୍ଷଣଶୀଳତା ଏବଂ ଜଡ଼ ଭାବପ୍ରବଣତାର ବିଷାକ୍ତ ପ୍ରଭାବରୁ ଆପ୍ରାଣ ଚେଷ୍ଟା ସତ୍ତ୍ୱେ ମଧ ବିମୁକ୍ତ ହୋଇପାରିବ ନାହିଁ । ଆମ ଦେଶରେ ଏହି ପରମୁଖାପେକ୍ଷୀ ଅଭ୍ୟାସକୁ ଦୂର କରିବାକୁ ହେଲେ ସର୍ବପ୍ରଥମେ ବଡ଼ ବଡ଼ ପ୍ରକାଶଳାୟମାନ ସ୍ଥାପନ କରିବାକୁ ହେବ । ସାଧାରଣ ପ୍ରକାଶ-ଗୃହ

ସ୍ଥାପିତ ନହେଲାଯାଏ ଗଣତାନ୍ତ୍ରିକ ଚିନ୍ତାଧାରାର ଉନ୍ମେଷ ସମ୍ଭବପର ନୁହେଁ । ଏ ବିଷୟରେ ଗତ ଦ୍ୱିତୀୟ ସଂଖ୍ୟା 'ସହକାର'ରେ ବାବୁ ଅନନ୍ତ ପ୍ରସାଦ ପଣ୍ଡା ବି.ଏ. ମହାଶୟ ଏକ ସଙ୍କେତମୂଳକ (Suggestive) ଉପଦେଶ ଦେଇଥିଲେ । ଲେଖକମାନେ ମଧ୍ୟ ସ୍ୱାଧୀନ ମତବାଦୀ ହେବା ଆବଶ୍ୟକ; ନତୁବା ବ୍ୟକ୍ତିବିଶେଷର ବା ଶ୍ରେଣୀ ବିଶେଷର ଅନୁଗ୍ରହଲିପ୍ସୁ ହୋଇ ଦେଶର ସାହିତ୍ୟକୁ କଳଙ୍କିତ କରିବାକୁ ସେମାନେ କଦାପି ପରାଙ୍‌ମୁଖ ହେବେ ନାହିଁ । ବଡ଼ ବଡ଼ ଧନୀ, ରାଜା, ମହାରାଜା, ମହନ୍ତ, ବାବାଜୀ ପ୍ରଭୃତିଙ୍କର ଚରଣାମୃତ ପ୍ରୟାସୀ ହୋଇ ସେମାନେ କେତେକାଳ ଆମ ଜାତୀୟ ସାହିତ୍ୟକୁ ଏହିପରି ଭାବରେ ବିଷାକ୍ତ କରୁଥିବେ ? ଏହିପରି କହିବା ଅର୍ଥ ଗୋଟାଏ ଜାତିର ସାହିତ୍ୟକୁ ଖର୍ବ ଓ ହତ୍ୟା କରିବା ସଙ୍ଗେ ସମାନ ନୁହେଁ କି ?

ଆଉ ଗୋଟିଏ କଥାର ଉଲ୍ଲେଖ କଲେ ବୋଧହୁଏ ଏଠାରେ ଅପ୍ରାସଙ୍ଗିକ ହେବନାହିଁ । ଆମ ଦେଶର ଅଧୁନାତନ ଯୁବକମାନେ ବାସ୍ତବତାର ସମ୍ମୁଖୀନ ହେବାର ସାହସ ଅର୍ଜନ କରି ପାରିନାହାନ୍ତି । କେହି କେହି ରବୀନ୍ଦ୍ରିକ ଅତୀନ୍ଦ୍ରିୟବାଦୀ ଓ ରହସ୍ୟବାଦ (Transcendentalism and mysticism)ର ଅନୁକରଣ କରି ଲେଖୁଛନ୍ତି; କେହି କେହି ବା ଆହୁରି ଏକ ପାହାଚ ଉପରକୁ ଉଠି ସ୍ୱପ୍ନର ଅଳକାପୁରୀରେ ବିଚରଣ କରୁଛନ୍ତି । ଏସବୁ ସୁନ୍ଦର ବର୍ଣ୍ଣ ବ୍ୟଞ୍ଜନା ଦ୍ୱାରା ଭାବୁକ ମନକୁ କ୍ଷଣକ ପାଇଁ ମୁଗ୍ଧ କରିପାରେ; କିନ୍ତୁ ତାର ଜୀବନ ସଂଗ୍ରାମରେ ଏହା ତାକୁ କୌଣସି ପ୍ରକାର ସାହାଯ୍ୟ କରିପାରେ କି ? ଏ ସାହିତ୍ୟର ମୂଲ୍ୟ ବିଳାସ ବା ଆମୋଦର ମାପକାଠିରେ ନିର୍ଦ୍ଧାରିତ ହେବ ସିନା । ଆମ ଦେଶରେ ସାହିତ୍ୟକୁ ଏହି ସ୍ୱପ୍ନଜୀବୀମାନଙ୍କ ହାତରୁ ରକ୍ଷା କରିବାକୁହେବ, ନତୁବା ବୁଭୁକ୍ଷୁ ଜନସାଧାରଣ ଏହାକୁ ପସନ୍ଦ କରିବେ ନାହିଁ । ଯେଉଁମାନେ ଧନୀ, ଯେଉଁମାନେ ପ୍ରଚୁରତାର କୋଳରେ ଲାଳିତ ପାଳିତ, ସେହିମାନେ ସିନା ନବମୀ ଚାନ୍ଦର ମାଧବୀ ଆଲୋକରେ ଆରାମ ଚୌକୀ ଉପରେ ବସି, ଏହି ଅତୀନ୍ଦ୍ରିୟସେବୀ, ରହସ୍ୟଘେରା, କାବ୍ୟସୁରା ପାନକରି ତୃପ୍ତି ଲଭିବେ ଏବଂ ଲେଖକଙ୍କୁ ବାହାବା ଦେବେ । ମାତ୍ର ଯାହାର ପେଟକୁ ଦାନା ନାହିଁ, କି ପିଠିକୁ କନାନାହିଁ, ସେଇ ଅସଂଖ୍ୟ ନିରନ୍ନ ନିଃଶୋଷିତ କୁଲି, ମଜୁରିଆ, କୃଷକ ପ୍ରଭୃତି ନରକଙ୍କାଳମାନେ ସେଥିରୁ ଆନନ୍ଦ ବା ସାର୍ଥକତା ପାଇବେ ? ଏପରି ସ୍ଥଳେ ସେ ଧରଣର ଲେଖାକୁ ସେମାନେ ଯଦି ନାପସନ୍ଦ କରନ୍ତି ବା ପ୍ରତ୍ୟାଖ୍ୟାନ କରନ୍ତି, ତେବେ ଖାଲି ସେହିମାନଙ୍କ ଉପରେ ସବୁଦୋଷ ଲଦିଦେବା ସୁବିବେଚନାର କାର୍ଯ୍ୟହେବ କି ? ସେମାନେ ଏପରି ଏକ ସାହିତ୍ୟ ଚାହାନ୍ତି, ଯାହା ତାଙ୍କୁ ଆଗକୁ ଚାଲିବାକୁ ପ୍ରେରଣା ଦେବ । ଯାହା ତାଙ୍କୁ ପରସ୍ୱଭୋଜୀ, ରକ୍ଷିତ, ସ୍ୱାର୍ଥମାନଙ୍କ ହାତରୁ ରକ୍ଷାକରିବ ବା ରକ୍ଷାକରିବା ଦିଗରେ ସାହାଯ୍ୟ କରିବ । ଅତଏବ ଗଣସାହିତ୍ୟଯେ ପ୍ରକାଶ୍ୟ ଭାବରେ 'ସଂଗ୍ରାମଶୀଳ ସାହିତ୍ୟ' ହେବା ଆବଶ୍ୟକ, ଏହା ଆଜି ଆଉ ଅସ୍ୱୀକାର କରିବାର ଉପାୟ

ନାହିଁ । ମୋର ପୂର୍ବବର୍ତ୍ତୀ ପ୍ରବନ୍ଧ ଲେକକ ସଚ୍ଚିବାବୁ ମଧ୍ୟ ଯଥାର୍ଥରେ କହିଛନ୍ତି, ''ସାହିତ୍ୟର ପ୍ରଧାନ ଉଦ୍ଦେଶ୍ୟ ହେବ ବିପ୍ଳବ ଓ ପ୍ରଗତି ପାଇଁ ପରିସ୍ଥିତି ତିଆରି କରିବା'' ।

ଇଉରୋପୀୟ ସାହିତ୍ୟର କ୍ରମବିକାଶ ଲକ୍ଷ୍ୟକଲେ ଆମ୍ଭେମାନେ ଦେଖିପାରୁଁ; ଫରାସୀ ବିପ୍ଳବର ପୂର୍ବବର୍ତ୍ତୀ ସାହିତ୍ୟ ଏହିସବୁ ଅଭିଜାତ ଲୋକମାନଙ୍କର ପ୍ରଭାବମୁକ୍ତ ହୋଇ ପାରିନଥିଲା; ମାତ୍ର ଫରାସୀ ବିପ୍ଳବ ପରଠାରୁ ସାହିତ୍ୟ ରାଜ୍ୟରେ ମଧ୍ୟ ଗଣତାନ୍ତ୍ରିକ ଭାବଧାରାର କ୍ରମବିକାଶ ପରିଲକ୍ଷିତ ହେଲା । ଲେଖକମାନେ ଅଭିଜାତ ବଂଶର ଲୋକଙ୍କୁ ଛାଡ଼ି ସାଧାରଣ ଜୀବନରେ ପୀଡ଼ିତ ଛବି ଫୁଟାଇବା କାର୍ଯ୍ୟରେ ଅଧିକତର ମନୋନିବେଶ କଲେ । ସାହିତ୍ୟର ଏହି ନୂତନ ପଥରେ ଯେଉଁ ଅଗ୍ରଗାମୀ ତାପସଗଣ ସେମାନଙ୍କର ଜୀବନ ଆହୁତି ଦେଇ ଅଗ୍ରସର ହୋଇଥିଲେ ସେମାନଙ୍କ ମଧ୍ୟରୁ ରୁଷୋ, ଭଲ୍‌ଟୋୟାର ଏବଂ ଭିକ୍ଟର ହ୍ୟୁଗୋ ପ୍ରଭୃତି ପ୍ରଧାନ । ଉପନ୍ୟାସରେ ଭିକ୍ଟର ହ୍ୟୁଗୋ ଦର୍ଶାଇଲେଯେ, ସଭ୍ୟତାର ଲୌହ ଶକଟତଳେ ଦଳିହୋଇ ଅନେକ ''ଦି ଭାଲଜାଁ'' ପ୍ରତିମୁହୂର୍ତ୍ତରେ ପିମ୍ପୁଡ଼ିପରି ଧ୍ୱସ୍ତ ହୋଇଯାଉ ଅଛନ୍ତି– ଅଥଚ ସ୍ୱଭାବ ବୃତ୍ତିର ଔଦାର୍ଯ୍ୟ ଏବଂ ପ୍ରସାରଣାରେ ସେମାନେ କୌଣସି ଉଚ୍ଚ ବଂଶ ସମ୍ଭୁତ ଲୋକଙ୍କଠାରୁ କ୍ଷୁଦ୍ର ନୁହଁନ୍ତି । ଆଧୁନିକ ସାହିତ୍ୟିକ ମାନଙ୍କ ମଧ୍ୟରେ ମାକ୍ସିମ୍ ଗର୍କି, ଗାଲସୱାର୍ଦ୍ଧି ପ୍ରଭୃତି ଉଗ୍ରଚେତା ଲେଖକମାନଙ୍କର ନାମ ମଧ୍ୟ ଏଠାରେ ଉଲ୍ଲେଖ କରାଯାଇପାରେ । ଏମାନେ ପୃଥିବୀର ମଶାଲ୍‌ଧାରୀ । ସବୁଯୁଗରେ ସବୁଦେଶରେ ଏମାନଙ୍କ ବର୍ତ୍ତିକାଲୋକ ମନୁଷ୍ୟ ଜାତିକୁ ବାଟ ଦେଖାଇବ । ଦେଶର କୋଟି କୋଟି ଦଳିତ, ପୀଡ଼ିତ, ଲୁଣ୍ଠିତ ଏବଂ ସର୍ବହରାମାନଙ୍କର ଜୀବନର ହାହାକାର ଯେପରି କରୁଣ ଏବଂ ପ୍ରଚଣ୍ଡ ଭାବରେ ଏମାନଙ୍କ ଲେଖନୀ ମୁନରେ ଆତ୍ମପ୍ରକାଶ କରୁଛି, ତାର ଦୃଷ୍ଟାନ୍ତ ଅତ୍ୟନ୍ତ ବିରଳ । ଏମାନେ ସାହିତ୍ୟକୁ ନୂତନ ଆଦର୍ଶ ଦେଇଛନ୍ତି । ନୂତନ ରୂପ, ନୂତନ ବେଶ ଏବଂ ନୂତନ ବାଣୀ ମଧ୍ୟ ଦେଇଛନ୍ତି । ଏମାନେ ବିଂଶ-ଶତାବ୍ଦୀରେ ବିଶ୍ୱ-ସାହିତ୍ୟର ଯୁଗ ପ୍ରବର୍ତ୍ତକ !!!

ଉତ୍କଳର ଲେଖକମାନଙ୍କୁ ଏହି ବଳଶାଳୀ ଲେଖାଳୀମାନଙ୍କର ପ୍ରେରଣାରେ ଉଦ୍‌ଜୀବିତ ହେବାକୁ ହେବ । ସୁଖର କଥା, ଉତ୍କଳର କେତେଜଣ ତରୁଣ ସାହିତ୍ୟିକ ଏ ଦିଗରେ ଅଗ୍ରସର ହୋଇଛନ୍ତି । ଏହିମାନେ ହିଁ ନବୀନ ଯୁଗର ଓଡ଼ିଆ-ସାହିତ୍ୟର ପଥ ପ୍ରଦର୍ଶକ । ଉପନ୍ୟାସ କ୍ଷେତ୍ରରେ ସୁପରିଚିତ କଥାଶିଳ୍ପୀ ଶ୍ରୀଯୁକ୍ତ ରାମପ୍ରସାଦ ସିଂହ 'ପୂଜାର ବଳି' 'ହୋମଶିଖା' ପ୍ରଭୃତି ଉଦ୍ଦୀପନାମୂଳକ ପୁସ୍ତକ ଲେଖି ଏ ଜାତିର କାନରେ ଅନେକ ନିର୍ଭୀକ କଥା ଶୁଣାଇ ଅଛନ୍ତି । ଦୀନ, ଦଳିତ ସର୍ବହରାମାନଙ୍କର କରୁଣ ଆର୍ତ୍ତନାଦକୁ ବିଶ୍ୱସ୍ତ ରୂପକାର ପରି ସେ ଏ ଜାତିର ସମ୍ମୁଖରେ ଟୋଳି ଧରିଛନ୍ତି । ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ରାଉତରାୟ ମଧ୍ୟ ପ୍ରତିକ୍ରିୟାଶୀଳ ମଧ୍ୟବିତ୍ତ ଶ୍ରେଣୀର ସୌଖୀନ ସ୍ୱପ୍ନଯୋଗ, ଭାବାଳୁତା

ଏବଂ ବାସ୍ତବତାଠାରୁ ପୃଷ୍ଠଭଙ୍ଗ ଦେବା ପ୍ରଭୃତି କଦର୍ଯ୍ୟ ଓ ମଧ୍ୟଯୁଗୀୟ ଅଭ୍ୟାସକୁ ବ୍ୟଙ୍ଗକରି 'ଚିତ୍ରଗ୍ରୀବ' ନାମକ ଖଣ୍ଡେ ଉପନ୍ୟାସ ଛପାଇଛନ୍ତି । ଏହିସବୁ ନୂତନ ଧରଣର ଲେଖାଫଳରେ ସାହିତ୍ୟର ଆଦର୍ଶଗତ ଗଡ୍ଡାଳିକା ପ୍ରବାହରେ ଆଂଶିକ ପରିବର୍ତ୍ତନ ଆସିବା ସ୍ୱାଭାବିକ । ଆମ ସମୟର ଉତ୍ପାଦନ ପ୍ରଣାଳୀ, ସାମାଜିକ ପାରିପାର୍ଶ୍ୱିକତା ଏବଂ ଅର୍ଥନୀତିକ ସମ୍ପର୍କ ଫଳରେ ଯେଉଁସବୁ ବିକୃତ ମନୋଭାବ ଦେଖାଯାଏ ତାକୁ ବିଦ୍ରୁପ କରିବାହିଁ ଶେଷୋକ୍ତ ପୁସ୍ତକର ଲକ୍ଷ୍ୟ ।

କବିତା କ୍ଷେତ୍ରରେ ମଧ୍ୟ ଏ ଦିଗରେ କେତେକ ସ୍ୱାଧୀନଚେତା ତରୁଣଲେଖାଳୀ ଆଶାନୁରୂପ ବିକ୍ରମରେ ଅଗ୍ରସର ହେଉଛନ୍ତି । ଏହା ଏ ନିର୍ଜୀବ ଜାତି ପକ୍ଷରେ କମ୍ ଆନନ୍ଦ ଓ ଆଶ୍ୱାସନାର କଥା ନୁହେଁ । ଓଡ଼ିଆ ସାହିତ୍ୟରେ ଯେ ଆଧୁନିକ ଯୁଗପୋଯୋଗୀ, ବିଜ୍ଞାନ ସମ୍ମତ ବିଚାରବୁଦ୍ଧି ଉପରେ ପ୍ରତିଷ୍ଠିତ ହୋଇଥିବା ବାଜେ ଉଚ୍ଛ୍ୱାସ ଓ ନିରର୍ଥକ ଭାବାଳୁତାଶୂନ୍ୟ ଶୁଦ୍ଧ କବିତାର ଐଶ୍ୱର୍ଯ୍ୟ ରହିଛି, ତାହାର ପ୍ରମାଣ ନିମ୍ନ– କେତେକ ପଙ୍କ୍ତି ବୁଭୁକ୍ଷୁ ମଣିଷର ଚିରନ୍ତନ ଦାବିକୁ ଉଦ୍‌ବୋଧିତ କରି ଲେଖିଅଛନ୍ତି–

(୧) "ଯୋଉଁ ଧାନ ଆମେ ବୁଣିଲୁ,
କାଟିଲୁଁ ସେହି ଧାନ ଦିଅ ଆଣି
ପୀଡ଼ିତ ଆତ୍ମା ଗର୍ଜି ଉଠଇ,
ଶୁଣ ତା ବାପୁନ ବାଣୀ ।"
(ଭାତ–ସଚ୍ଚିଦାନନ୍ଦ–ସହକାର)

(୨) "ବିଶ୍ୱେ ଯେତକ ଶୋଷଣ, ପେଷଣ, କଷଣ ଲଭିଛି ଥାନ
ଶତାବ୍ଦୀ କୂଳେ ଜମିଛି ଯେତେକ ମଳିନ କଳୁଷ ମାନ ।
× × × × ×
ସମାଜର ଯେତେ ଛାରପୋକ ଆଉ ମଶା ଡାଉଁଶର ଦଳ
ମଣିଷର ଲୁହ ଶୋଷନ୍ତି ସଦା କରି ଅତିକଉଶଳ ।
× × × × ×
ସେମାନଙ୍କୁ ମାରି ଧନ୍ୟ ହୋଇଲେ,
ଗତାୟୁ ତୋର ଦୂତ ।
ପୀଡ଼ିତ ବିଶ୍ୱେ ଯେତେ ଅଭିଯୋଗ
ତାହାର ସେ ପରଭୃତ ।
(ଫାସିକାଠ–ସଚ୍ଚିଦାନନ୍ଦ–ସହକାର)

ଏହି କବିତାଗୁଡ଼ିକ ଯେପରି ଶକ୍ତିଶାଳୀ, ସେହିପରି ମାର୍ଜିତ ଓ ନିର୍ଭୀକ ରୁଚିର ପରିଚାୟକ । ତତ୍‌ପରେ ଜଟିଳ ଅର୍ଥନୀତିକ ଏବଂ ଐତିହାସିକ ସତ୍ୟକୁ ସରଳ କବିତାରେ ପ୍ରକାଶ କରିବାରେ ଉକ୍ତ ଲେଖକ ଯେଉଁ ଅସାଧାରଣ ଦକ୍ଷତା ଅର୍ଜନ କରିଅଛନ୍ତି, ତାହା ସର୍ବସାଧାରଣଙ୍କର ପ୍ରଣିଧାନର ଯୋଗ୍ୟ । ଉଦାହରଣ ସ୍ୱରୂପ ଲୋକମୁଖୀ ଗଣତନ୍ତ୍ର ଉପରେ ପୁଞ୍ଜିବାଦ ଏବଂ ଫାସିଜିମ୍‌ର ହିଂସ୍ର ଆକ୍ରମଣକୁ ଲକ୍ଷ୍ୟକରି ଲେଖକ ଯାହା ଲେଖିଛନ୍ତି; ତାହାର କିୟଦଂଶ ଏଠାରେ ଅବିକଳ ଉଦ୍ଧାର କରାଯାଇପାରେ :—

ମଧ୍ୟଯୁଗର ଔରସୁଁ ଯେଉଁ ବିଧାନ ହୋଇଲା ଜାତ
ମୁଠାରେ ରଖିଲେ ଯାହାକୁ ଗୀର୍ଜ୍ଜା, ପୁଞ୍ଜି ଓ ଅଭିଜାତ ।
ସେହି ନିୟମର ମୂଳରେ ହାଣିଲେ ଯେଣୁ ସେ କୁଠାରଧାର ।
ଫଳ ଆଜି ତା'ର ଭୁଞ୍ଜିବ ତୁମେ ! ହୁସିଆର ! ହୁସିଆର !

× × × × × ×

ଆଗକୁ ଚାଲିଛି ବୋଲି ସେ ମଣିଷ ଭୁଞ୍ଜୁଥା ତାର ଫଳ
ପ୍ରଗତିରେ ଯେଣୁ ବିଶ୍ୱାସ କର ଲଭ ଏବେ ତୁଷାନଳ

× × × × × ×

"ଦୁନିଆର ସବୁଭୋକ ଓ ଉପାସ ହୋଇ ଆଜି ଏକଜୁଟ ।
ପ୍ରତିଶୋଧ ଆଜି ନେବାକୁ ଚାହୁଁଛି ଯେସନେ ସେ କାଳକୂଟ ।
ଆହ୍ୱାନ ତାର ତୋଳୁଛି ସ୍ପେନ ଭୂ-ମଧ ପାରାବାରେ
ଝେଲମ୍ କହୁଛି ଭଲ୍‌ଗାକୁ ଚାହିଁ ସେହି କଥା ବାରେ ବାରେ ।
ଏ ରଣ ଲାଗିଛି 'ଥିଲା' ଓ 'ନଥିଲା' ଭିତରେ ଓ ଚିରକାଳ
ସର୍ଗେ ତାହାର ସ୍ପନ୍ଦିତ ହୁଏ ଧରଣୀର କଙ୍କାଳ !!××
ମାଡ୍ରିଡ୍ କୂଳେ ଡାକଇ ପୁଲକେ ଶତ ଅଶରୀରୀ ମଡ଼ା
ମଣିଷ ଜାତି ଆଗୁସାର ହୁଅ ଲଂଘି ଶୋଷଣ କଡ଼ା ×××

× × × × × ×

"ଉଠୁଅଛି ଜୟରବ
କିବା ମୁଁ ରଚୁଛି ଆପଣା ପୁଲକେ ଆଗାମୀ ମନର ସ୍ତବ ।"

(ସଚ୍ଚିଦାନନ୍ଦ—ସ୍ପେନ—ସହକାର)

ଏସବୁ ବଳିଷ୍ଠ କବିତା ସହିତ "ସବୁ କିଶୋରୀଙ୍କ ଚିବୁକଧରି" କିମ୍ବା "ଏହି ସହକାର ତଳେ" କିମ୍ବା "ଦେଖିବେ ଗୋଲାପି ଅଞ୍ଚଳ ମୁଁ ଗୋ ଶିଶୁପରି ହୁଏ ଚଞ୍ଚଳ" ପ୍ରଭୃତି ହାଲୁକା ଓ କଦର୍ଯ୍ୟ ରୁଚିର କବିତା ତୁଳନା କଲେ ସ୍ପଷ୍ଟ ଧାରଣା ହେବଯେ, ଓଡ଼ିଆ

ସାହିତ୍ୟ କ୍ରମେ ସମୃଦ୍ଧି ପଥରେ ଅଗ୍ରସର ହେଉଅଛି । ଓଡ଼ିଶାର ଏହି ଥିଲା (Haves) ଏବଂ ନଥିଲା (Have-not) ଲୋକମାନଙ୍କର ହୃଦୟବିଦାରକ ସଂଗ୍ରାମକୁ ତାର ସାହିତ୍ୟ ରୂପ ନକଲେ ତାହା ଦଳିତ ଜନସାଧାରଣଙ୍କଠାରୁ ପ୍ରତ୍ୟକ୍ଷ ଯୋଗ ହରାଇବ ।

ଓଡ଼ିଶାର ଜନସାଧାରଣ ସାଧାରଣତଃ ଗଦ୍ୟ ଅପେକ୍ଷା ପଦ୍ୟର ବେଶି ପକ୍ଷପାତୀ । ଏପରି କି ନିରକ୍ଷର ଗଉଡ଼ଟୋକା କଣ୍ଠରେ ମଧ୍ୟ 'ଲାବଣ୍ୟବତୀ'ର ଦୁର୍ବୋଧ କବିତା ଶୁଣାଯାଇଥାଏ । ଅତଏବ ବର୍ତ୍ତମାନ ପ୍ରାଥମିକ ଅବସ୍ଥାରେ ଓଡ଼ିଶାର ଜନସାଧାରଣଙ୍କୁ ସ୍ପର୍ଶ ଓ ପ୍ରଭାବିତ କରିବା ପାଇଁ ଗଦ୍ୟ ଅପେକ୍ଷା ପଦ୍ୟ ଯେ ବେଶୀ ଉପଯୋଗୀ ହେବ, ଏହା ନିଃସନ୍ଦେହ । ଉତ୍କଳରେ ତରୁଣ ଲେଖକମାନେ ବଳିଷ୍ଠ କବିତାଦ୍ୱାରା ଉତ୍କଳର ପୁରପଲ୍ଲୀ ମୁଖରିତ କରନ୍ତୁ । ସେମାନଙ୍କର ସମବେତ କଣ୍ଠର 'ଜାଗରଣୀ' ଏହି ଅର୍ଦ୍ଧସୁପ୍ତ ଜାତିର ଘୋର ନିଦ୍ରା ଭାଙ୍ଗିଦେଉ– ଏହା ମୋର ସର୍ବାନ୍ତକରଣର କାମନା ।

ଆଶାକରେ ଉତ୍କଳର ଶିକ୍ଷିତ ଓ ଆଧୁନିକ ଲେଖକ ଲେଖିକାମାନେ ସେମାନଙ୍କର ଅଗ୍ନିବୀଣାର ପ୍ରତ୍ୟେକ ତନ୍ତ୍ରୀରେ ଆଜି ଏପରି ସଙ୍ଗୀତ ଝଙ୍କାର ଭରିଦେବେ, ଯାହା ପାହାଡ଼ପରି ଅଚେତନ ଏହି କଙ୍କାଳସାର ଜାତିର ଯୁଗାନ୍ତବ୍ୟାପୀ ଆଳସ୍ୟ ଭାଙ୍ଗିଦେବ । ପ୍ରାଣରେ ତା'ର ଆଣିଦେବ ନୂତନତମ ଶକ୍ତି, ନବତମ ପରିକଳ୍ପନା । ଉତ୍କଳର ବୀର ସାହିତ୍ୟିକଗଣ ! ଓଡ଼ିଆଭାଷା ଆଜି ଅହଲ୍ୟାପରି ଅଲଂଘନୀୟ ଅଭିଶାପରେ ନିଷ୍କ୍ରିୟ ଏବଂ ଅଚଳ ହୋଇ ପଡ଼ିଛି । ତମେ ତାକୁ ଶ୍ରୀରାମଙ୍କପରି ତମର କୁହୁକ ସ୍ପର୍ଶରେ ପ୍ରାଣବନ୍ତ କର । ନିଷ୍ପ୍ରଭ ଓ ମୁମୂର୍ଷୁ ଭିତରେ ଚେତନାର ମୃତ୍ୟୁ ସଞ୍ଜୀବନୀ ମନ୍ତ୍ର ଶୁଣାଅ । ଏହାହିଁ ତ ତମର କାମ ! ଜାତି ତ ଏହାହିଁ ତମମାନଙ୍କଠାରୁ ଆଶାକରେ ।

ପଶ୍ଚାତ୍ ଦୃଷ୍ଟି ଛାଡ଼ି ସମ୍ମୁଖ ଆଡ଼କୁ ତମର ଆଖି ପ୍ରସାରିତ କର । ମାକ୍ସିମ୍ ଗର୍କି ଋଷିଆର ଘରେ ଘରେ ନୂତନ ଜୀବନର ଆହ୍ୱାନ ଶୁଣାଇଥିଲେ । ତମେ ବି ତମର ଚିନ୍ତାର ଦୂତକୁ ଓଡ଼ିଶାର ନୀରନ୍ଧ୍ର ପୁରପଲ୍ଲୀ ମଧ୍ୟକୁ ପ୍ରେରଣ କର । ସେ ନିରନ୍ନ ଜନସାଧାରଣଙ୍କ ନିକଟକୁ ତମର ସହାନୁଭୂତି ଏବଂ ସମବେଦନାର ବାର୍ତ୍ତା ନେଇଯାଉ ! ଦେଖିବ, ସେମାନେ ଆଉ ପଛରେ ପଡ଼ିରହିବେ ନାହିଁ । ତମ ଆହ୍ୱାନର ପ୍ରତ୍ୟୁତ୍ତର ସେମାନଙ୍କ ପ୍ରାଣର ଗଭୀରତମ ପ୍ରଦେଶରୁ ତମ ପାଖକୁ ଫେରି ଆସିବ, ତମର ଅଭିଯାନ ଜୟଯୁକ୍ତ ହେବ । ନୂତନ ଯୁଗର ଯାତ୍ରା ପଥରେ, ହେ ତରୁଣ ସାହିତ୍ୟ ସ୍ରଷ୍ଟାଗଣ ! ମୁଁ ତୁମ୍ଭମାନଙ୍କୁ ଅଭିନନ୍ଦିତ କରୁଅଛି ।



* ସହକାର – ୧୩୪୪ ସାଲ– ୧୯୩୭ ମସିହା– ୩୧୪ ପୃଷ୍ଠା ।

# ସାରଳା ମହାଭାରତରେ କେତୋଟି ସମାଜ ଚିତ୍ର

ସାରଳା ଦାସଙ୍କ ମହାଭାରତ ଭାରତୀୟ ପ୍ରାକୃତ ଭାଷାରେ ଲିଖିତ ଗ୍ରନ୍ଥମାନଙ୍କ ମଧ୍ୟରେ ଅଦ୍ୱିତୀୟ । ପଞ୍ଚଦଶ ଶତାବ୍ଦୀ ବେଳକୁ ଭାରତରେ ଅତି ଅଳ୍ପ ସଂଖ୍ୟକ ପ୍ରାକୃତ ଭାଷାର ଏତେ ବଡ଼ ବିଶାଳ ଗ୍ରନ୍ଥ ଦେଖାଯାଏ । ସାରାଳା ମହାଭାରତ ବ୍ୟାସଦେବଙ୍କ ମହାଭାରତର ଅନୁବାଦ ନୁହେଁ, ଏହା ତାଙ୍କର ସମ୍ପୂର୍ଣ୍ଣ ନିଜସ୍ୱ । ଯଦି ବ୍ୟାସଦେବଙ୍କ ମହାଭାରତକୁ ତତ୍‌କାଳୀନ ସାମାଜିକ ରୀତିନୀତିର ଲିପିବଦ୍ଧ ସଂହିତା ବୋଲି ଧରାଯିବ, ତାହାହେଲେ ବହୁଅଂଶରେ ସାରଳା ଦାସଙ୍କ ମହାଭାରତକୁ ଓଡ଼ିଶା ତଥା ଭାରତର ସେହି ଯୁଗର ସାମାଜିକ ରୀତିନୀତିର ସ୍ୱଚ୍ଛ ଦର୍ପଣ ବୋଲି କହିବାକୁ ହେବ ।

ସ୍ୱଗ୍ରନ୍ଥରେ ସାରଳା ଦାସ ସମସାମୟିକ ଓଡ଼ିଆ ସମାଜର ସାଧାରଣ ଅବସ୍ଥା, ରୀତି, ନୀତି, ସୁଖ ଦୁଃଖ ପ୍ରଭୃତି ଲେଖିଥିବାର ମନେହୁଏ । ମହାଭାରତରେ ସାରଳାଦାସ ଯେଉଁ ନାରୀଚରିତ୍ରର ଅବତାରଣା କରିଛନ୍ତି, ତାହା ମଧ୍ୟ ଏକ ଅଭିନବ ଉଦ୍ୟମ । ଅନେକ ସ୍ଥାନରେ ସେ ଖାଣ୍ଟି ଓଡ଼ିଆଣୀର ଚରିତ୍ର, ରୂପରେଖ, ରୀତିନୀତି, ବିବାହବିଧି, ସାଜସଜ୍ଜା ଦେବାପାଇଁ ଭୁଲି ନାହାନ୍ତି । ସାରଳା ଦାସ ବିଭିନ୍ନ ଚରିତ୍ର ଚିତ୍ରଣରେ, ବିଶେଷତଃ ନାରୀଚରିତ୍ର ଚିତ୍ରଣରେ ଖୁବ୍ ବିଚକ୍ଷଣତା ପ୍ରଦର୍ଶନ କରିଛନ୍ତି । ସାରଳା ଦାସଙ୍କ ନାରୀ ଦୋଷଗୁଣ ସମନ୍ୱିତା । ତାଙ୍କ ନାରୀଚରିତ୍ରରେ ନାରୀର ଦେବୀତ୍ୱ ସହ ମାନବୀତ୍ୱର ସଂଘର୍ଷ ସନ୍ନିବଦ୍ଧ ।

ସେ ଯୁଗରେ ନରନାରୀମାନେ ବ୍ରତ, ଦେବୀପୂଜା ସହ ବହୁ ସାମାଜିକ ବିଧିବିଧାନ ମାନି ଚଳୁଥିଲେ । ପିତୃତର୍ପଣ, ଦାନ, ପୂଜା, ଉପାସନା, ସେବା, ଭକ୍ତି, ବିନୟ, ନମ୍ରତା, ବୀରତ୍ୱ, ବ୍ୟକ୍ତିତ୍ୱ ଓ ଗୁରୁଗୌରବ ଲୋକଚରିତ୍ରରେ ଦେଖାଯାଉଥିଲା । ଦୈନନ୍ଦିନ ଜୀବନରେ ଶାସ୍ତ୍ରୀୟ ଓ ସାମାଜିକ ନିୟମରୁ ବହିର୍ଭୂତ ହୋଇ କେହି ଚଳୁନଥିଲେ । କି ନର, କି ନାରୀ ସମସ୍ତଙ୍କର ବ୍ୟକ୍ତିତ୍ୱ ଗୋଟିଏ ନୈତିକନିଷ୍ଠା ପରିସର ମଧ୍ୟରେ ନିୟନ୍ତ୍ରିତ ହେଉଥିଲା । ସେଥିପାଇଁ ଯୁଦ୍ଧଯାତ୍ରା, ବିବାହ ଦିନଚର୍ଯ୍ୟା ପ୍ରଭୃତି ବିଷୟରେ କ୍ରମ ବା ନିର୍ଦ୍ଦିଷ୍ଟ ପ୍ରଣାଳୀ ରହିଥିଲା । ଜ୍ୟୋତିଷ ଶାସ୍ତ୍ର ପ୍ରତି ଲୋକଙ୍କର ଶ୍ରଦ୍ଧା ଥିଲା ଏବଂ କାମ୍ୟ କର୍ମ ନିମନ୍ତେ ବିଜ୍ଞ ଜ୍ୟୋତିଷୀ ଓ ପଣ୍ଡିତମାନଙ୍କର ଉପଦେଶକୁ ଲୋକେ ଶୁଣୁଥିଲେ ଓ ମାନୁଥିଲେ ।

ନାରୀଜାତି ମଧ୍ୟରେ ସାଧାରଣ ଶିକ୍ଷା ଓ କଳାଶିକ୍ଷାର ପ୍ରଚଳନ ଥିଲା । ନାରୀ ତାର ସହଜାତ ବୁଦ୍ଧିରେ ସବୁପ୍ରକାର କାର୍ଯ୍ୟ ସଂସାର କ୍ଷେତ୍ରରେ ତୁଲାଉଥିଲା । ରାଜ୍ୟଚାଳନା, ଯୁଦ୍ଧ ପ୍ରଭୃତି ବିଷୟରେ ମଧ୍ୟ ତାର ସମ୍ପର୍କ ରହିଥିଲା ।

## ବିବାହ ବିଧି :

ସାରଳା ଦାସଙ୍କ ମହାଭାରତରେ କନ୍ୟାହରଣ, ଯୁଦ୍ଧ, ଗାନ୍ଧର୍ବ ବିବାହ ପରେ ପୁଣି ପ୍ରାଜାପତ୍ୟ ବୈଦିକ ବିଧିରେ ବିବାହ, ମଙ୍ଗଳକୃତ୍ୟ, ଲବଣଚାମରୀ, ଦିଅଁ ମଙ୍ଗଳା, ମଙ୍ଗଳ ଅଧିବାସରେ ବର କନ୍ୟା କୁଙ୍କୁମ, ତୈଳ, ହରିଦ୍ରା ଲଗାଇବା, ପଞ୍ଚଗ୍ରାସ, କଉଡ଼ିଖେଳ, ସାତ ସଧବା ନାରୀଙ୍କର ବରକନ୍ୟା ମଙ୍ଗୁଳା, କୁଶଗ୍ରନ୍ଥିରେ ବରକନ୍ୟା ହସ୍ତଗଣ୍ଠି, ଶ୍ୟାଳକ ଭିଣୋଇର ପାଦଧୁଆ, ସମୁଧିର କନ୍ୟା ସମର୍ପଣ, ନୂତନ ମଶିଣା (ପରୁଡ଼ି ମଶିଣା)ରେ ବେଦୀ ଉପରେ ବରକନ୍ୟା ବସିବା, ସାତ କଳସୀ ପାଣି ସାତଘରୁ ଆଣିବା, ବରକନ୍ୟାମାନଙ୍କର ପ୍ରସାଧାନ, ଅଙ୍ଗାଭରଣ, ବେଶ ଭୂଷଣ, ଶିଳା ଉପରେ ବସାଇ ସଧବା ନାରୀ ବରକନ୍ୟା ମଙ୍ଗୁଳିବା , ଗ୍ରହବିପ୍ରଙ୍କ ମଙ୍ଗଳାଷ୍ଟକ, ବ୍ରାହ୍ମଣମାନଙ୍କ ଆଶ୍ରୀର୍ବଚନ, ବେଦମନ୍ତ୍ର ଉଚ୍ଚାରଣ, ଶ୍ୱଶୁର ଜାମାତାଙ୍କୁ କନ୍ୟା ନିମନ୍ତେ ଦଶଦୋଷ ମାଗିବା, ବିବାହର ଉତ୍ସବ, ଦାନ, ଭୋଜନ, ଶଙ୍ଖ, ମହୁରୀ, ଭେରୀ, ତୁରୀ, ମାର୍ଦଳ, କଂସାଳ, କାହାଳି, ବୀଣା, ଶଙ୍ଖ, ହୁଳହୁଳୀ, ପାଞ୍ଚୁପାଟ, ଲଜ୍ୟାହୋମ ପ୍ରଭୃତି ବିବାହ ପର୍ବରେ ଲେଖା ଅଛି । ବନ୍ଧୁ ଲୋଡ଼ିବା, ଗୁଆ ପକାଇବା ମଧ୍ୟ ଲେଖାଅଛି । କନ୍ୟାପିତା ବିବାହ ବେଳେ ତାକୁ ଗାଈ, ହାତୀ, ଘୋଡ଼ା, ବାସନ, ହାଦୋଳା (ସବାରୀ), ହୀରା, ନୀଳା, ସୁନା, ରୂପା,ବସନଭୂଷଣ, ପରିଚାରୀ, ମୁଦୁସୁଲୀ ଗଣିକାମାନଙ୍କୁ ଯୌତୁକ ଦେଉଥିଲେ । ସଧବାନାରୀ ବେଦୀ ନିକଟରେ ବରକୁ ପରିହାସ କରିବା, ଗୀତ ଗାଇବା, ଆମ୍ରଡାଳ, ପାନ, ଅକ୍ଷତ, ଦୁର୍ବା, ସୁବାସ ଜଳ, ଅଳତା, ସିନ୍ଦୁର, ଚନ୍ଦନ, କସ୍ତୁରୀ, କୁଙ୍କୁମ ପ୍ରଭୃତିରେ ବିବାହ ପରେ ବରକନ୍ୟାଙ୍କୁ ବନ୍ଦାପନା କରାଯାଇଥିବା କଥା ଲେଖାଅଛି ।

ସାରଳା ଦାସଙ୍କ ଯୁଗରେ ଆମ ଓଡ଼ିଆ ସମାଜର ଅବସ୍ଥା ଯାହା ଥିଲା, ଅଦ୍ୟାପି ଗ୍ରାମ୍ୟ ସମାଜମାନଙ୍କରେ ତାହା ରହିଅଛି । ଜାତୀୟ ଜୀବନର ବିଭିନ୍ନ ଅନୁଷ୍ଠାନମାନଙ୍କରେ ସେହି ପରଂପରା ବଞ୍ଚି ରହିଛି । କନ୍ୟାମାନଙ୍କର ଶାଶୁଘରକୁ ଗଲାବେଳେ ଯେଉଁ ପାଟ, ଅଳଙ୍କାର ପିନ୍ଧିବା କଥା ସାରଳା ଦାସ ଲେଖିଛନ୍ତି, ଉନବିଂଶ ଶତାବ୍ଦୀର ଶେଷଭାଗ ଓ ବିଂଶ ଶତାବ୍ଦୀରେ ସେହି ଉଲ୍ଲିଖିତ ଅଳଙ୍କାର ଗୁଡ଼ିକ ଆମ୍ଭମାନଙ୍କର ପରିବାରର କନ୍ୟାମାନେ ପିନ୍ଧି ବିବାହ ହେଉଥିଲେ । ବହୁ ପ୍ରକାର ଅଳଙ୍କାର ବ୍ୟବହୃତ ହେଉଥିଲା । ତହିଁ ମଧ୍ୟରୁ ମୁକ୍ତାହାର, ହୀରାନୀଳାବସା ସୁନାହରା, ଚାପସରି, ତାଟଙ୍କ, କାପ, ମୁଦି, କିଙ୍କିଣୀ,

ବାହୁଟି ତାଡ଼, ଗୁଣା, ବସଣି, କୁଣ୍ଡଳ, ନୂପୁର, ବଳା, ବଳୟ, ଚୁଡ଼ି, ପାହୁଡ଼, ଝୁଣ୍ଟିଆ, ସୀମନ୍ତ ହାର ବା ଅଳକା ଚନ୍ଦ୍ରାହାର ପ୍ରଭୃତି ପ୍ରଧାନ ।

କୁମାରୀମାନେ ରଜଃସ୍ୱଳା ହେବାପରେ ବିବାହ ହେଉଥିଲେ ହେଁ ରଜୋବତୀ ଅନୂଢ଼ା କନ୍ୟା ରଖିଲେ ପିତୃପୁରୁଷଙ୍କ ଶ୍ରାଦ୍ଧରେ ପାଣି ନପାଇବା କଥା ଓ ତଜ୍ଜନିତ କନ୍ୟାପିତାର ମହାପାପ ପୁଣି ଗାର୍ହସ୍ଥ୍ୟ ଜୀବନ୍ତର କ୍ଷତିକାରକ ବୋଲି କନ୍ୟାପିତା ମନରେ ଉତ୍କଣ୍ଠା ସୃଷ୍ଟି କରାଯାଇଛି । କନ୍ୟା ବିବାହପରେ ଶାଶୁଘର ଗଲାବେଳେ ପିତାମାନେ କାନ୍ଦିବା କଥା ଲେଖାଅଛି । ମାତାମାନେ ଯେ ବାହୁନି କାନ୍ଦୁଥିଲେ ତାର ପରମ୍ପରା ସର୍ବତ୍ର ରହିଅଛି । ସାରଳା ମହାଭାରତ ଯୁଗରେ ମାତାମାନଙ୍କ କାନ୍ଦଣା ଥିଲା ।

''ରାଣୀ ମହାଦେଈମାନେ ଆସି ଶୋକ କଲେ
ଝିଅର ନାମ ବାହୁନି ସକଳେ କାନ୍ଦିଲେ''

(ମଧ୍ୟ ପର୍ବ)

ଓଡ଼ିଆ ସମାଜରେ ବାହୁନା ପ୍ରଥା ଆଜି ପର୍ଯ୍ୟନ୍ତ ସହର ମଫସଲରେ ଅଳ୍ପ ବହୁତ ରହିଅଛି ।

**ନାରୀଶିକ୍ଷା :**

ସେହି ଯୁଗରେ ନାରୀଶିକ୍ଷା ସାଧାରଣ ଭାବରେ ଦେଶରେ ପ୍ରଚଳିତ ଥିଲା । ତାହା ନହୋଇଥିଲେ ରାଜକନ୍ୟାମାନଙ୍କ ହରଣ, ବିବାହ ଆଦି ଘଟଣା ବର୍ଣ୍ଣନା ସମୟରେ ସାରଳା ଦାସ ବିବାହ ବେଦୀ ନିକଟରେ ମୁହୁସୁଲୀମାନଙ୍କର ଗୀତଗାଇବା କଥା ଲେଖି ନଥାନ୍ତେ । ମହାଭାରତ ବିରାଟ ପର୍ବର ପାଣ୍ଡବ ଅଜ୍ଞାତବାସ କାଳରେ ସେମାନେ ଯେତେବେଳେ ବିରାଟ ଉଆସରେ ଛଦ୍ମବେଶରେ ରହି ଚାକିରି କରୁଥିଲେ, ସେତେବେଳେ ଅର୍ଜୁନ ନାରୀର ଛଦ୍ମବେଶରେ ବୃହନ୍ନଳା ନାମ ଧାରଣ କରି ରାଜକୁମାରୀ ଉତ୍ତରାକୁ ନୃତ୍ୟ, ଗୀତ ଓ କଳାବିଦ୍ୟା ଶିକ୍ଷାଦେବା କଥା ଲେଖାହୋଇ ନଥାନ୍ତା । ଏହା ସାରଳା ଦାସଙ୍କ କପୋଳକଳ୍ପିତ ନୁହେଁ, ମୂଳ ମହାଭାରତର ଉକ୍ତି । ମୂଳ ମହାଭାରତକାର ବ୍ୟାସଦେବ ଦ୍ରୌପଦୀଙ୍କୁ ''ବିଦୁଷୀ'' ବୋଲି ଲେଖିଛନ୍ତି, ମାତ୍ର ସାରଳା ଦାସ ତାଙ୍କର ଲିଖନ ପଠନ କଥା ଲେଖି ନାହାନ୍ତି । କିନ୍ତୁ ଶିକ୍ଷିତା, ମାର୍ଜିତ, ବୁଦ୍ଧି ଦ୍ରୌପଦୀଙ୍କର ହିତାହିତ ଜ୍ଞାନ, ବିଚାରଶକ୍ତି, ଚାରୁଲଘୁ ମାତ୍ରାଜ୍ଞାନ, ସମ୍ପର୍କ ବିବେଚନା କଥା ଲେଖିଛନ୍ତି । ସୁଭଦ୍ରାହରଣ ପରେ କୌରବପକ୍ଷୀୟ ନୃପତିମାନେ ଯେତେବେଳେ କନ୍ୟାହରଣକାରୀ ଅର୍ଜୁନଙ୍କ ସହିତ ସଂଗ୍ରାମ କଲେ, ସୁଭଦ୍ରା ସେହି ଯୁଦ୍ଧରେ ପତିଙ୍କ ସାରଥି ହୋଇଥିଲେ । ସତ୍ୟଭାମା ମଧ୍ୟ

ଶ୍ରୀକୃଷ୍ଣଙ୍କ ରଥରେ ସାରଥି ହୋଇଥିବାର ଲେଖାଅଛି । ଏଥିରୁ ଜଣାଯାଏ, ଅଭିଜାତ ବଂଶର କନ୍ୟାମାନେ ଅଶ୍ୱଚାଳନା, ରଥ ଚାଳନା ଓ ଧନୁର୍ବିଦ୍ୟାରେ ପାରଦର୍ଶିନୀ ଥିଲେ । ସେ ଯୁଗରେ ଯେ ସାମାଜିକ ଓ ରାଷ୍ଟ୍ରୀୟ ସଂସ୍କୃତି ଭାରତୀୟ ସମାଜକୁ ନିୟନ୍ତ୍ରଣ କରୁଥିଲା, ସେହି ପରଂପରା ରକ୍ଷାକରି ବିଧି ନିଷେଧ ନଟପି ପରିବାରରେ ଚଳିବା ଏବଂ ସଂପର୍କୀୟ ଆତ୍ମୀୟ, ଆତ୍ମୀୟାମାନଙ୍କ ସହିତ ସହଯୋଗିତା କରି ଗୋଟିଏ ସାଂସ୍କୃତିକ ଆବେଷ୍ଟନୀ ତିଆରି କରି ଆଦର୍ଶକୁ ଲକ୍ଷ୍ୟ ରଖି ଜୀବନଯାତ୍ରା ପ୍ରଣାଳୀ ନିୟନ୍ତିତ କରିବା ଶିକ୍ଷାକୁ ଲୋକେ ନାରୀଶିକ୍ଷା ବୋଲି କହୁଥିଲେ । ସେ କାଳରେ ସ୍କୁଲ, କଲେଜ ନଥିଲା । ଗୃହରେ ଶିକ୍ଷାଲାଭ କରିବା ଅସ୍ତ୍ରଶିକ୍ଷା କରିବା, ଗୁରୁ ଗୃହରେ ବେଦ, ବେଦାନ୍ତ ଓ ଆଧ୍ୟାତ୍ମିକ ଶାସ୍ତ୍ରମାନ ଅଧ୍ୟୟନ କରି ତଦନୁସାରେ ନାରୀଧର୍ମ ପାଳନ କରିବା ବା ଶାସ୍ତ୍ରୀୟ କ୍ରିୟାକଳାପ ଆଚରଣ କରିବା ହୋଇଥିଲା ନାରୀଶିକ୍ଷାର ପ୍ରଧାନ ଅଙ୍ଗ । ଏହି ଶିକ୍ଷା ସାଧାରଣତଃ ମହାଭାରତୀୟ ନାରୀଚରିତ୍ରମାନଙ୍କରେ ରହିଅଛି । ମୂଳତଃ ନାରୀର ବୈଧ ଓ ସଙ୍ଗତ ଆଚରଣ ପୁଣି ପାରିବାରିକ ଓ ସାମାଜିକ ସଂପର୍କରେ ପରସ୍ପର ସହିତ ବ୍ୟବହାର ବିଧି ବା ଚରିତ୍ରରେ ଉପଯୁକ୍ତ ମାତ୍ରାଜ୍ଞାନ ବୋଧକୁ ନାରୀଶିକ୍ଷାର ନମୁନା ବୋଲି ଧରାଯାଉଥିଲା ।

ମହାଭାରତ ଯୁଗରେ ନାରୀର ଲିଖନ ପଠନ ପ୍ରଥା ଥିବା କଥା ଉକ୍ତ ହୋଇଛି । କୀଚକବଧ ବୃତ୍ତାନ୍ତରେ କୀଚକଭଗିନୀ ବିରାଟରାଣୀ ସୁଦେଷ୍ଣା ଦାସୀଙ୍କ ହାତରେ ଭାଇ କୀଚକ ନିକଟକୁ ଚିଟାଉ ପ୍ରେରଣ କରିଥିଲେ । ପୁଣି ସେ ଦ୍ରୌପଦୀଙ୍କୁ ମନ୍ତ୍ର ମହୌଷଧି-ପ୍ରବୀଣା ବୋଲି ସମ୍ମାନ କରି କହିଥିଲେ । ଦ୍ରୌପଦୀ କୀଚକ ନିକଟକୁ ରାଣୀଙ୍କର ଗନ୍ଧପତ୍ର ନେଇଯିବା କଥା ଲିଖିତ ଅଛି । ପୁଣି ଦ୍ରୌପଦୀ ଯେ ତାହା ଦେଶକାଳ ପାତ୍ର ଅବସ୍ଥାନୁଯାୟୀ ପାଠ କରି ନଥିବେ ଏହା ନୁହେଁ । କୀଚକବଧ ପରେ ତାର ପାଳିତା ଓ ରକ୍ଷିତା ନାରୀମାନଙ୍କର ଶୋକାପନୋଦନ ନିମନ୍ତେ ଦ୍ରୌପଦୀ ମାନବଜୀବନର ଦାର୍ଶନିକ ତତ୍ତ୍ୱ କହି ସାନ୍ତ୍ୱନା ଦେଇଛନ୍ତି । ଉଚ୍ଚଶିକ୍ଷା ପ୍ରାପ୍ତ ହୋଇନଥିଲେ ଦ୍ରୌପଦୀ ନାରୀମାନଙ୍କୁ ପ୍ରାକୃତିକ ଧନ ସଂପଦ ଓ ଜୀବନର ଅସାରତା, ପ୍ରାକୃତିକ ପରିବର୍ତ୍ତନ କଥା କିପରି କହିଥାନ୍ତେ ? କରୁଣା ନାମକ କୀଚକର ଦାସୀ ଓ ଦୂତୀକୁ ପୁଣି ସୁଦେଷ୍ଣାଙ୍କୁ ଦ୍ରୌପଦୀ ସତୀତ୍ୱ ଧର୍ମ କଥା କହି ଭର୍ତ୍ସନା କରିଛନ୍ତି । କୀଚକ ପଠାଇଥିବା ମହାର୍ଘ ପ୍ରଣୟୋପହାରକୁ ତୁଚ୍ଛ ମଣି ଦ୍ରୌପଦୀ ଘୃଣାରେ ପ୍ରତ୍ୟାଖ୍ୟାନ କରିଛନ୍ତି । ସେ ସୁଦେଷ୍ଣାଙ୍କୁ ପ୍ରଲୋଭନ ବାକ୍ୟରେ ଅବିଚଳ ରହି ତାଙ୍କର ପରମ ପାଣ୍ଡିତ୍ୟ ଜ୍ଞାନର ପରାକାଷ୍ଠା ଦେଖାଇଛନ୍ତି ।

''ସୁଦେଷ୍ଣା ସୈରିନ୍ଧ୍ରୀକୁ ଯେ ପରମ ଆଶ୍ୱାସେ

× × × × ×

ମାଗୋ ତୁହି ମୋର ପରମ ବିଶ୍ୱାସୀ
ବିଶ୍ୱାସ କାର୍ଯ୍ୟରେ ମାଗୋ ଅନ୍ୟକୁ ନ ପେଷି ।
ନବରର ନାରୀମାନେ ଅଟନ୍ତି ଚତୁରୀ
ବିଶ୍ୱାସ କଥା ରଖନ୍ତି ନାହିଁ ଗୋପ୍ୟ କରି ।
ମାଗୋ ତୋହର କରେ ମୁଁ ଦେଉଛି ଲେଖାଟି
କୀଚକପୁରେ ଦେଇ ଆସ ତୁ ଲେଉଟି ।''

ନଗରର ନାରୀସାଧାରଣଙ୍କୁ ସାରଳାଦାସ 'ଚତୁରୀ' ଓ 'ଲଘୁ ହୃଦୟା', 'ଦୁର୍ବଳଚିତ୍ତ' ଓ ଅବିଶ୍ୱାସୀ ବୋଲି ପାଞ୍ଚଶହ ବର୍ଷ ତଳେ ମଧ୍ୟ ଚିତ୍ରିତ କରିଛନ୍ତି । ଏହି ନଗରର ନାରୀ ବା ନାଗରିକମାନେ ଯଦି ସାଧାରଣ ଶିକ୍ଷା ପାଇ ନଥାନ୍ତେ ତେବେ ସାରାଳାଦାସ ନବର ନାରୀମାନଙ୍କୁ 'ଚତୁରୀ' 'ଅବିଶ୍ୱାସିନୀ' ବା ଲଘୁହୃଦୟା ବୋଲି କଦାପି ଚିତ୍ରିତ କରି ନଥାନ୍ତେ । ସେହି କାରଣରୁ ସାଧାରଣ ଭାବରେ ନାରୀଶିକ୍ଷାର ପ୍ରଚଳନ ସେ କାଳରେ ଥିଲା ବୋଲି ଧରାଯିବ ।

× × × ×

ଲେଖାପଢ଼ା ଛଡ଼ା ଅଙ୍କନକଳା ସେକାଳର ନାରୀ ସମାଜରେ ପ୍ରଚଳିତ ଥିଲା । ଚିତ୍ରାଙ୍ଗଦା ପରିଣୟ ପରେ ପ୍ରତିଶ୍ରୁତି ମତେ ଅର୍ଜୁନ ଯେତେବେଳେ ଦ୍ୱାଦଶ ବର୍ଷ ତପସ୍ୟା ନିମନ୍ତେ ବନଗମନ କରିବାକୁ ଉଦ୍ୟତ ହେଲେ, ସେତେବେଳେ ନବ ପରିଣୀତା ଚିତ୍ରାଙ୍ଗଦା ଶୋକାକୁଳ ହୋଇପଡ଼ିଲେ । ଅର୍ଜୁନ ଚିତ୍ରାଙ୍ଗଦାଙ୍କୁ ତାଙ୍କର ପ୍ରତିରୂପ ରଖିବାକୁ ସାନ୍ତ୍ୱନା ଦେଇ କହିଥିଲେ ଓ ଚିତ୍ରାଙ୍ଗଦା ଅର୍ଜୁନ ରୂପ ଆଙ୍କି ବା ଗଢ଼ି ରଖିଲେ ।

ବିରାଟ ପର୍ବରେ ନାରୀବେଶୀ 'ବୃହନ୍ନାରୀ' ଭାବରେ ଅର୍ଜୁନ ରହି ଉତ୍ତରାଙ୍କୁ ନୃତ୍ୟଗୀତ ଶିକ୍ଷା ଦେଉଥିଲେ । ମହାଭାରତ ଯୁଗରେ ନପୁଂସକମାନଙ୍କୁ ରାଜାନ୍ତଃପୁରରେ ନାନା କାର୍ଯ୍ୟରେ ନିଯୋଗ କରାଯାଉଥିଲା । ଏହାର ପରଂପରା ସାରଳାଦାସଙ୍କ କାଳରେ ବି ରହିଥିଲା । ଏଥିରୁ ମନେହୁଏ, ଆମ ଦେଶରେ ଗଣିକା ବା ଦେଶବାସୀ ପ୍ରଥା ଭଳି ଏହି ମାଇଚିଆ ସୃଷ୍ଟି ପ୍ରଥା ବହୁ ପୁରାତନ କାଳରୁ ଚଳି ଆସିଛି ।

## ଆଡ଼ ହେବା ବା ଲୁଚିବା :

ସେ କାଳରେ ନାରୀମାନେ ଦେବର ପ୍ରଭୃତି ସଂପ୍ରାପ୍ତ ବୟସ୍କ ପୁରୁଷଙ୍କୁ ଲୁଚୁଥିଲେ । ଦେଢ଼ଶୁର, ମଉଳାଶୁର, ଜ୍ୱାଇଁ ଭଗିନୀପତି ଏମାନଙ୍କୁ ନାରୀମାନେ ଆଡ଼ହୋଇ ଚଳୁଥିଲେ । ଜ୍ୱାଇଁଙ୍କୁ ମଫସଲରେ ନାରୀମାନେ ଲୁଚିବାର ପ୍ରଥା ରହିଛି । ନଣନ୍ଦେଇକୁ ମଧ୍ୟ ଶଳାଭାଉଜ ଲୁଚନ୍ତି । ଦେଢ଼ଶୁର ସହିତ ଭାଇବୋହୂର ସମ୍ପର୍କ ବା ସଂସ୍ପର୍ଶ ମହାପାପରେ

ପରିଗଣିତ ହେଉଥିଲା । ମଉଳାଶୁରଙ୍କୁ ଭଣଜାବୋହୂ ଦେଖାଦିଏ ନାହିଁ । ତାଙ୍କର ଛାୟା ବି ପଡ଼ିବା ବାରଣ । ଦେଢ଼ଶୁର ବ୍ୟବହାର କରୁଥିବା ପଦାର୍ଥମାନ ମଧ୍ୟ ଭାଇବୋହୂ ଛୁଇଁବା ପ୍ରଥା ଆମ ଓଡ଼ିଆ ହିନ୍ଦୁ ସମାଜରେ କଠିନ ଭାବରେ ନିଷିଦ୍ଧ । ଏହାର କାରଣ ସେକାଳରେ ଏକାନ୍ନବର୍ତ୍ତୀ ପରିବାର ଏବଂ ପାରିବାରିକ ସଭ୍ୟତାର ଉତ୍କର୍ଷତା ଓ ପରସ୍ପର ଗୁରୁ ଲଘୁ ସଂପର୍କ ଭିତରେ ବ୍ୟବଧାନ ପୁଣି ଭକ୍ତି ଶ୍ରଦ୍ଧାର ସମ୍ପର୍କ ରଖିବାପାଇଁ ସେକାଳର ସାମାଜିକ ପ୍ରଥା ଚାଲୁହୋଇଥିଲା । ଗୁରୁ ଲଘୁ ଗୌରବ ରଖିବାପାଇଁ କାଳକାଳ ଧରି ଭାରତୀୟ ସମାଜରେ ଯେ ସଂସ୍କୃତି ଗଢ଼ି ହୋଇ ଆସିଛି, ତାହା ସାରଳାଦାସଙ୍କ ସମୟରେ ଓଡ଼ିଶାର ଘରେ ଘରେ ଚଳୁଥିଲା । ବିଧିନିଷେଧ ପାରିବାରିକ ସଂପର୍କକୁ ନିୟନ୍ତ୍ରଣ କରୁଥିଲା । ଧୃତରାଷ୍ଟ୍ର ଓ ଗାନ୍ଧାରୀ ବାକ୍ୟାଳାପ କରୁଥିବା ବେଳେ ପଣ୍ଡୁ ସେଠାରେ ଉପସ୍ଥିତ ହୋଇଯିବାରୁ ଦିଅରଙ୍କୁ ବଡ଼ ଭାଉଜ ଆଡ଼ ହେଲେ ।

''ଧାତିକାରେ ବିଜେ କଲେ ପାଣ୍ଡୁ ନରସ୍ୱାମୀ
ଧୃତରାଷ୍ଟ୍ର ସନ୍ନିଧିରେ ରହିଲେ ପ୍ରଣମି ।
ଗାନ୍ଧାରୀ ଅନ୍ତର ହେଲେ ରାଜାଙ୍କୁ ସେ ଦେଖି''
(ଆଦ୍ୟପର୍ବ)

## ଯୌତୁକ ପ୍ରଥା :

ରାଜାମାନେ ରାଜକୁମାରୀମାନଙ୍କୁ ବିବାହ ଦେଲାବେଳେ ଯୌତୁକ ଦେଉଥିଲେ । ସାରଳା ଦାସ ବହୁ ସ୍ଥଳରେ ଯୌତୁକ ଦେବାକଥା ଲେଖିଛନ୍ତି । ଭୂମନୁ ସ୍ୱଦୁହିତା ଭାନୁମତୀକୁ ଦୁର୍ଯ୍ୟୋଧନଙ୍କ ହସ୍ତରେ ଅର୍ପଣ କରିବା ସମୟରେ ବିବାହବେଦୀରେ ବହୁ ପଦାର୍ଥ ଯୌତୁକ ସ୍ୱରୂପ ଦେଇଥିଲେ । ସେ ଭିତରେ ପରିବାରୀ, ଗଣିକା ମଧ୍ୟ ଥିଲେ ।

''ଲକ୍ଷେକ ସ୍ୱର୍ଣ୍ଣ ଆବର ଲକ୍ଷେ ପରିବାରୀ
ବାଛିଣ ଦେଲା ଗଣିକାଗଣ ନୃତ୍ୟକାରୀ''

## ବିବାହରେ କନ୍ୟାର ମତ :

ବର ନିର୍ବାଚନରେ କନ୍ୟାମାନଙ୍କ ମତ ପ୍ରତି ଯେ ପିତାମାନେ ଯଥେଷ୍ଟ ଖାତିରି ଦେଖାଉଥିଲେ, ତାହା ଭାନୁମତୀ ସ୍ୱୟଂବରରୁ ଜଣାଯାଏ । ଭୂମନୁ ସ୍ୱୟଂବର କରି ବହୁ ରାଜାଙ୍କୁ ନିମନ୍ତ୍ରଣ କରିଥିଲେ, କିନ୍ତୁ ଦୁହିତା ଭାନୁମତୀଙ୍କ ସର୍ତ୍ତ ଅନୁସାରେ ବିବାହ ହୋଇଥିଲା । ଭାନୁମତୀ କହିଥିଲେ, ଯାହାଙ୍କ ହସ୍ତରେ ଶଙ୍ଖନିଧି, ପଦ୍ମନିଧି ଥିବ, ସେ ତାଙ୍କୁ ବିବାହ କରିବେ । ସେହି ସର୍ତ୍ତର ସମାଧାନ ଦୁର୍ଯ୍ୟୋଧନଙ୍କ ଠାରେ ଥିବାରୁ ଭାନୁମତୀ ଦୁର୍ଯ୍ୟୋଧନଙ୍କୁ ବିବାହ କରିଥିଲେ ।

ଉପରୋକ୍ତ ସମାଜଚିତ୍ର ସାରଳା ମହାଭାରତରେ ଦେଖାଯାଏ । ଏହାଛଡ଼ା ସମାଜ ନରନାରୀମାନଙ୍କୁ ପତିତ ବା ବାଛନ୍ଦ କରୁନଥିଲା । ଏହପରି ସାମାଜିକ ଉଦାରଦୃଷ୍ଟି କେବଳ ନରଲୋକ ନୁହେଁ, ଦେବଲୋକଠାରେ ମଧ୍ୟ ପ୍ରଚଳିତ ଥିବାର ପ୍ରମାଣ ମିଳେ । ସାଧାରଣ ନରନାରୀ ନୀତିଜ୍ଞ ଓ ଧାର୍ମିକ ଥିବାରୁ ସେମାନଙ୍କ ପ୍ରତି ସମାଜ ସହଜରେ ବିରୁଦ୍ଧାଚରଣ କରି ପାରୁନଥିଲା । ଏଥିପାଇଁ ଯେ ସେକାଳର ସମାଜରେ ପତିତ, ଘୃଣ୍ୟ ନରନାରୀଙ୍କ ସଂଖ୍ୟା ଅଳ୍ପ ଥିଲା, ତାହା ନୁହେଁ, ସେ ଯୁଗରେ ମଦ୍ୟପ, ଅମିତାଚାରୀ; ବ୍ୟଭିଚାରୀ ନରନାରୀମାନେ ରହିଥିଲେ । ଗନ୍ଧର୍ବମାନେ ମଧ୍ୟ ଉଚ୍ଛୃଙ୍ଖଳ ଥିବାର ପ୍ରମାଣ ପୁରାଣ ଇତିହାସରୁ ମିଳେ । ଇନ୍ଦ୍ରସଭାରେ ଦେବରାଜ୍ୟରେ ଏପରି ଉଚ୍ଛୃଙ୍ଖଳ ନରନାରୀଙ୍କର ଭ୍ରଷ୍ଟତା ନିବନ୍ଧନ ଶାପ ପାଇ ନାନା ଲୋକରେ ଜନ୍ମପାଇବା କଥା ଲେଖାଅଛି । ସମାଜରେ ନୀତି, ଅନୀତିର ସୂକ୍ଷ୍ମ ବିଚାର ଥିଲା । କିନ୍ତୁ ସମଗ୍ର ସାମାଜିକ ଦୃଷ୍ଟିକୋଣ ସ୍ଥିର ସମୁଦ୍ରଭଳି ଶାନ୍ତ, ଉଦାର ଓ ଗଭୀର ଥିବାରୁ ତାର ବିଚାରବୁଦ୍ଧି ବ୍ୟାପକ ଥିଲା । ସଂକୀର୍ଣ୍ଣ ସ୍ୱାର୍ଥପର ବିଚାରବୁଦ୍ଧି ନଥିବାରୁ ଦ୍ରୌପଦୀ, କୁନ୍ତୀ, ତାରା, ମନ୍ଦୋଦରୀ ପ୍ରମୁଖ ନାରୀମାନେ ପୁଣ୍ୟଶ୍ଳୋକା ଦେବୀରୂପରେ ପୂଜିତା ଓ ଆଦୃତା ହେଉଛନ୍ତି ।



* ସୁଚରିତା– ୧୯୭୬, ଏପ୍ରିଲ– ପ୍ରଥମ ବର୍ଷ ନବମ ସଂଖ୍ୟା – ପୃଷ୍ଠା-୨୧ ଠାରୁ ୨୪ ।

# ଭାରତର ମାନବ କଲ୍ୟାଣକାରୀ
# ଶାସ୍ତ୍ର ସଂସ୍କୃତି

ଭାରତୀୟ ଦର୍ଶନ ଶାସ୍ତ୍ର ଲେଖିଛନ୍ତି ଏ ଜଗତ ଦୁଃଖର ଆକାର । ଏ ପୃଥିବୀରେ ମନୁଷ୍ୟ ଜନ୍ମିଲେ ତାକୁ ତ୍ରିବିଧ ଦୁଃଖ ଭୋଗକରିବାକୁ ହୁଏ, ଏହା ମନୁଷ୍ୟର ଭାଗ୍ୟ । ଦୁଃଖ ଚିର ସତ୍ୟ ଓ ସନାତନ । ବୌଦ୍ଧମାନେ ତ୍ରିବିଧ ଦୁଃଖ ବୋଲି ଆଧ୍ୟାତ୍ମିକ ଆଧିଭୌତିକ ଓ ଆଧିଦୈବିକ ଦୁଃଖକୁ ସ୍ୱୀକାର ନକରି ଜରାବ୍ୟାଧି ମୃତ୍ୟୁକୁ ତ୍ରିବିଧ ଦୁଃଖ ବୋଲି ମନେ କରନ୍ତି । ଦୁଃଖର ସାଧାରଣ ଅର୍ଥ ହେଲା ପ୍ରିୟ ବ୍ୟକ୍ତି ଓ ବସ୍ତୁର ବିୟୋଗ ପୁଣି ଅପ୍ରିୟ ବ୍ୟକ୍ତି ବା ବସ୍ତୁର ସଂଯୋଗ ହିଁ ଦୁଃଖ । ଏହି ଦୁଃଖ ନାନା ବ୍ୟକ୍ତିଙ୍କ ପାଖରେ ବିଶେଷ ବିଶେଷ ଆକାରରେ ଦେଖାଦିଏ । ପୃଥିବୀରେ ସତ୍ୟରେ ଏପରି ଲୋକ ବିରଳ ଯାହାର ଦୁଃଖ ନାହିଁ ଓ ସମସ୍ୟା ନାହିଁ, ଅଭାବ ଅଭିଯୋଗ ନାହିଁ। ଏପରି ଅବିମିଶ୍ର ସୁଖର ଅଧିକାରୀ ସଂସାରରେ କେହି ନାହିଁ। କିଏ ଶରୀରରେ, କିଏ ମନରେ, କିଏ ଅର୍ଥ ଅଭାବରୁ ଦୁଃଖୀ । ତେଣୁ ସାଧାରଣ ଲୋକେ ଭାବନ୍ତି ମନୁଷ୍ୟର ଦୁଃଖ ଦୂର ହୁଏ ନାହିଁ – ମୃତ୍ୟୁ କେବଳ ଦୁଃଖହାରି । କିନ୍ତୁ ଏହା ବୋଲି ମନୁଷ୍ୟ ଭାଗ୍ୟ ନିୟତି ହାତରେ ଅଳସ ହୋଇ ଜୀବନକୁ ସମର୍ପଣ କରି ବଞ୍ଚେନାହିଁ। ଯେପରି ଉପାୟରେ ହେଉ ମନୁଷ୍ୟ ଦୁଃଖ ନିବୃତ୍ତି ଓ ପ୍ରତିକାର କରିବା ଉପାୟକୁ ଖୋଜେ। ଯୁଗକୁ ଯୁଗ ଯୁଗାବତାର, ମହାପୁରୁଷଗଣ ଭାରତରେ ଜନ୍ମିଛନ୍ତି ଓ ଅନ୍ୟତ୍ର ଜନ୍ମିଛନ୍ତି । ମନୁଷ୍ୟର ଦୁଃଖ ସେମାନଙ୍କ ଦ୍ୱନ୍ଦାତୀତ ହୃଦୟକୁ ବିଚଳିତ କରିଥିବାରୁ ସେମାନେ ଦୁଃଖ ବୋଧ ପାରହେବା ପାଇଁ ଭଗବତ ଶରଣକୁ ଉପାୟ ବୋଲି କହିଛନ୍ତି। ସେମାନେ ମନୁଷ୍ୟକୁ ଦୁଃଖବୋଧ ପାରିହେବାକୁ ନାନା ତପସ୍ୟା ସାଧ୍ୟ ସାଧନାର କଥା କହିଛନ୍ତି । ସେମାନେ ଦୁଃଖକୁ ଅଗ୍ରାହ୍ୟ କରି ସୁଖ ଦୁଃଖକୁ ଅନିତ୍ୟ ବୁଝି ଉପେକ୍ଷା କରିବାକୁ ! ତା ପାଇଁ ମନୁଷ୍ୟର ସାଧନା । କେହି ଜଗତ ନିତ୍ୟ ଦୁଃଖମୟ ଜାଣି ଦୁଃଖ ପାରିହେବା ପାଇଁ ଅଷ୍ଟାଙ୍ଗିକ ମାର୍ଗ ବତାଇଛନ୍ତି। ଦୁଃଖ ଦୂର କରିବା ପାଇଁ ଜ୍ଞାନୀମାନଙ୍କ ନିର୍ଦ୍ଦେଶିତ ସେହି ଯୋଗମାର୍ଗ ଅନୁସରଣ କରିପାରି ନାହାନ୍ତି ସର୍ବସାଧାରଣ ମନୁଷ୍ୟମାନେ । ସମସ୍ତଙ୍କ ପକ୍ଷରେ ତାହା ସମ୍ଭବ ନୁହେଁ । ସେ ବାଟରେ କୋଟିକେ ଗୋଟିଏ ବାଟୋଇ ଥିବେ। ଜନ୍ମ ମୃତ୍ୟୁ ଜରାବ୍ୟାଧିଠାରୁ ମନୁଷ୍ୟ ଜାଗତିକ ପରିତ୍ରାଣ ଚାହେଁ ।

ଏଥିପାଇଁ ତୀର୍ଥବ୍ରତ ଓଷା ହବିଷ୍ୟ । ଅର୍ଥାତ୍ ମୋକ୍ଷ ଲାଭରେ ଓ ପୁନର୍ଜନ୍ମ ନହେଲେ ଜୀବର ଚିରନ୍ତନ ଦୁଃଖ ନିବୃତ୍ତି ହୁଏ ।

ସମସ୍ୟା ସଙ୍କୁଳ ଜଗତରେ ପ୍ରତ୍ୟେକ ଚାହାଁନ୍ତି ନିଶ୍ଚିତ ଘଟଣାବଳୀର ପରିପ୍ରେକ୍ଷୀରେ ଜୀବନକୁ ସୁପରିଚାଳିତ କରିବାକୁ ଏବଂ ସେହି ଉଦ୍ଦେଶ୍ୟରେ ଚାହୁଁଥାଏ ଭବିଷ୍ୟତର ଯବନିକା ଅନ୍ତରାଳରେ କଣ ଅଛି ତା ଜାଣିବାକୁ । ଜୀବନର ଦୁଃଖ ପରିହାର ପାଇଁ ଏହି ପ୍ରସ୍ତୁତି ପଥରେ ଫଳିତ ଜ୍ୟୋତିଷ ଓ ସାମୁଦ୍ରିକ ବିଦ୍ୟାହିଁ ହେଲା ଦିଗଦର୍ଶକ ଓ ନିର୍ଦ୍ଦେଶକ । ଦୁଃଖତପ୍ତ ମନୁଷ୍ୟ ପାଇଁ ଦୟାକରି ଆମ ପୂର୍ବରଷିମାନେ ଯେଉଁସବୁ ଶାସ୍ତ୍ର ଲେଖିଛନ୍ତି ଜ୍ୟୋତିଷ ଶାସ୍ତ୍ର ତାର ଅନ୍ୟତମ । ଜ୍ୟୋତିଷ ଶାସ୍ତ୍ର ଯେପରି ବେଦର ଅଙ୍ଗ ହିସାବରେ ଅପୌରୁଷେୟ ଓ ଶ୍ରଦ୍ଧାର ସ୍ଥଳ ସେହିପରି ଉପକାରକ ହିସାବରେ ସାଧାରଣ ମନୁଷ୍ୟର ବନ୍ଧୁ । ତାର ଉପଦେଶ ଗୁରୁ ବା ଭଗବାନଙ୍କଠାରୁ ଆସିନାହିଁ, ତାହା ହିତୈଷୀ ସୁହୃଦ ସମ୍ମିତ । ଏପରିକି ଅନ୍ୟାନ୍ୟ ଶାସ୍ତ୍ରଫଳ ଅପ୍ରତ୍ୟକ୍ଷ ବା ବିଳମ୍ବିତ ହୋଇପାରେ କିନ୍ତୁ ଜ୍ୟୋତିଷ ଶାସ୍ତ୍ର ଫଳପ୍ରତ୍ୟକ୍ଷ ବିଜ୍ଞାନସମ୍ମତ ଚିକିତ୍ସା ଶାସ୍ତ୍ରପରି ।

ଜୀବନର ବହୁ କ୍ଷେତ୍ରରେ ଜ୍ୟୋତିଷଶାସ୍ତ୍ରର ଅବଦାନ ବିଶେଷ ଗୁରୁତ୍ୱପୂର୍ଣ୍ଣ । ଉଦାହରଣ ସ୍ୱରୂପ କୁହାଯାଏ ବ୍ୟକ୍ତି ବିଶେଷର ବୃତ୍ତି ନିର୍ଣ୍ଣୟ କ୍ଷେତ୍ରରେ । ଏହି କ୍ଷେତ୍ରରେ ଭୁଲ ନିର୍ଣ୍ଣୟ ଫଳରୁ ବହୁଲୋକେ ମନୁଷ୍ୟ ଅକାରଣ ଅର୍ଥବ୍ୟୟ କରେ । ମୂଲ୍ୟବାନ ସମୟ ନଷ୍ଟ ହୁଏ । ଅକାରଣ ଆଶାଭଙ୍ଗରେ ମନୁଷ୍ୟମନ ଦୁଃଖରେ ଦୁର୍ବଳ ଶକ୍ତିହୀନ ହୋଇପଡ଼େ । ଫଳିତ ଜ୍ୟୋତିଷ ସାହାଯ୍ୟରେ ଯଦି ଏହି ପଥ ନିର୍ଭୁଲ ଭାବରେ ନିରୁପିତ ହୁଏ, ତେବେ ଜୀବନରେ ସାଫଲ୍ୟ ଅବଶ୍ୟମ୍ଭାବୀ । ରୋଗ ନିର୍ଣ୍ଣୟ କ୍ଷେତ୍ରରେ ମଧ ଜ୍ୟୋତିଷ ଶାସ୍ତ୍ରୀୟ ବିଚାର ଅଦ୍ଭୁତ ସାହାଯ୍ୟ କରିବାରେ ସହସ୍ର ଉଦାହରଣ ରହିଛି । ବିଶେଷତଃ କେଉଁ ଲୋକର କି ଚିକିତ୍ସା ଉପଯୋଗୀ ତାହା ଏକମାତ୍ର ଜ୍ୟୋତିଷଶାସ୍ତ୍ର ନିର୍ଭୁଲ ଭାବେ ନିରୁପଣ କରେ । ବିବାହରେ ପାତ୍ର ପାତ୍ରୀ ନିର୍ବାଚନରେ ବିଭ୍ରାନ୍ତି ମନୁଷ୍ୟର ଆଜୀବନ ଅଶାନ୍ତି ସୃଷ୍ଟିକରେ ଅଥଚ ଜ୍ୟୋତିଷଶାସ୍ତ୍ର ମତରେ ଯୋଟକ ବିଚାର ଶ୍ରଦ୍ଧା ସହିତ ଅନୁସୃତ ହେଲେ ସହଜରେ ଅଶାନ୍ତି ଓ ମାନସିକ ଦୁଃଖରୁ ପରିତ୍ରାଣ ମିଳିପାରେ । ଆଧ୍ୟାତ୍ମିକ ସାଧନାର ମାର୍ଗ ନିରୂପଣରେ ଜ୍ୟୋତିଷ ଶାସ୍ତ୍ର ଅମୂଲ୍ୟ ପଥ ନିର୍ଦ୍ଦେଶକ ।

କିନ୍ତୁ ଏହା ସତ୍ତ୍ୱେ ଏକକ ଭାବରେ ଜ୍ୟୋତିଷ ବା ସାମୁଦ୍ରିକ ବିଦ୍ୟା ସବୁବେଳେ ଦୁଃଖ ତପ୍ତ ମନୁଷ୍ୟକୁ ସାହାଯ୍ୟ ହୋଇପାରେ ନାହିଁ । ଶୁଭ ବା ଅଶୁଭ ଭବିଷ୍ୟତକୁ କେବଳ ଜାଣିପାରିଲେ କାହାର କୌଣସି ଉପକାରରେ ଲାଗେ ନାହିଁ । ଜ୍ୟୋତିଷ ଶାସ୍ତ୍ରୋକ୍ତ ସୂକ୍ଷ୍ମ ଓ ନିପୁଣ ଗଣନା ସାହାଯ୍ୟରେ ଯେଉଁସବୁ କଳ୍ପନାତୀତ ବିଚିତ୍ର ଧରଣର ସମସ୍ୟାର ସ୍ୱରୂପ

ଜଣାପଡ଼େ ଜ୍ୟୋତିଷ ସାହାଯ୍ୟରେ କିନ୍ତୁ ତାହାର ସମାଧାନ ହୋଇପାରେ ନାହିଁ। ବିଶେଷତଃ ଏପରି ବହୁ ସମସ୍ୟା ସବୁ ରହିଛି ତାହା ଜାଣିଲେ ମଧ୍ୟ ଜ୍ୟୋତିଷର ଗଣନା ମଧ୍ୟ ସାମାନ୍ୟ ଗଣନାକାରୀର ସାମାନ୍ୟ ଭୁଲ ଫଳରେ ବିଫଳ ହୋଇପାରେ । ଯୋଗଶକ୍ତି ଓ ତନ୍ତ୍ରଶକ୍ତିର ସମନ୍ୱୟରେ ହିଁ ଜ୍ୟୋତିଷଶାସ୍ତ୍ର ଅତି ଆଶ୍ଚର୍ଯ୍ୟ ସୁଫଳ ପ୍ରଦାନ କରିଥାଏ । ଅଲୌକିକ ଯୋଗଶକ୍ତି ସାହାଯ୍ୟରେ ହିଁ ଜ୍ୟୋତିଷଶାସ୍ତ୍ରର ଅପୂର୍ଣ୍ଣତାର ସମାଧାନ ସମ୍ଭବପର । ଯୋଗଶକ୍ତି କେବଳ ଅଧ୍ୟୟନ ଓ ଅଭ୍ୟାସଦ୍ୱାରା ଲାଭ କରାଯାଏ ନାହିଁ। ଯୋଗଶକ୍ତି କେବଳ ବିଦ୍ୟାପାଠ ଦ୍ୱାରା ସମ୍ଭବ ନୁହେଁ । ଅଲୌକିକ ଯୋଗଶକ୍ତିର ମୂଳକଥା ହେଲା ଦୀର୍ଘକାଳର ଏପରିକି ଜନ୍ମ ଜନ୍ମାନ୍ତରର ସାଧନାଲବ୍ଧ କେତେଗୁଡ଼ିଏ ଲୋକାତୀତ କ୍ଷମତା ଓ ଈଶ୍ୱରଙ୍କ ସୁଦୁର୍ଲଭ ଅନୁଗ୍ରହ । ଆଉ ତାନ୍ତ୍ରିକ କ୍ରିୟା କହିଲେ ବୁଝାଏ ଏପରି କେତେଗୁଡ଼ିଏ ଅନୁଷ୍ଠାନ ମାନବର ଅପରିସୀମ ଦୁଃଖ ଦୁର୍ଦ୍ଦଶାର ଭାର ଲାଘବ ପାଇଁ ଭାରତର ତତ୍ତ୍ୱଦ୍ରଷ୍ଟା ଋଷିମାନେ ଅଥର୍ବ ବେଦ ଓ ଶାସ୍ତ୍ରରେ ତାହାର ବିଧାନ ଦେଇଛନ୍ତି । ଜ୍ୟୋତିଷ, ତନ୍ତ୍ର ଓ ଯୋଗ– ଏହି ତିନିଶାସ୍ତ୍ରର ତୁଳନା ମୂଳକ ଏଠାରେ ଅପ୍ରାସଙ୍ଗିକ ହେବନାହିଁ । ଜ୍ୟୋତିଷଶାସ୍ତ୍ର ବିଧାତାପୁରୁଷଙ୍କ ଚକ୍ଷୁ ସ୍ୱରୂପ । ସମଗ୍ର ବିଶ୍ୱଉପରେ ଯାହାଙ୍କ ଦୃଷ୍ଟି ପତିତ ହୋଇ ଅତୀତ ବର୍ତ୍ତମାନ ଭବିଷ୍ୟତ କାଳମାନଙ୍କର ସମସ୍ତ ଘଟଣାକୁ ପୂର୍ଣ୍ଣଭାବରେ ପ୍ରକାଶିତ ବା ଆଲୋକିତ କରେ । ସେଥିପାଇଁ ଏ ଶାସ୍ତ୍ର ନାଁ ଜ୍ୟୋତିଃଶାସ୍ତ୍ର ବା ଜ୍ୟୋତିଷଶାସ୍ତ୍ର । ପ୍ରତିଘଟଣା ପୂର୍ବନିର୍ଦ୍ଦିଷ୍ଟ ଓ ପୂର୍ବ ବ୍ୟବସ୍ଥିତ । ମନୁଷ୍ୟ ଜନ୍ମ ମୁହୂର୍ତ୍ତରେ ଗ୍ରହାଦି ସଂସ୍ଥାନ ଦ୍ୱାରା ହିଁ ତାର ଜୀବନର ସମଗ୍ର ରୂପ ଜନ୍ମବୃଦ୍ଧିକ୍ଷୟ ଓ ମୃତ୍ୟୁ ନିୟନ୍ତ୍ରିତ ହୁଏ । ଏହି ବିଦ୍ୟା ଅଧିଗତ ହେଲେ ମନୁଷ୍ୟ ବିଧାତାର ଦୃଷ୍ଟିଶକ୍ତିର ଅଧିକାରୀ ହୋଇପାରେ । ଜ୍ୟୋତିଷ ବିଚାରରେ ଯେଉଁସବୁ ସମସ୍ୟାର ସମାଧାନ ଦୁଷ୍କର ବୋଲି ମନେହୁଏ ତାହା କିନ୍ତୁ ଯୋଗଶାସ୍ତ୍ର ସାହାଯ୍ୟରେ ପୂର୍ଣ୍ଣଭାବରେ ସ୍ୱଚ୍ଛ ରୂପରେ ପ୍ରତିଭାତ ହୁଏ । ଯୋଗଶାସ୍ତ୍ର ଦେବାଦିଦେବ ମହାଦେବଙ୍କର ସେହି ଆୟୁଧ ଯାହା ସାହାଯ୍ୟରେ ସେ ବିଶ୍ୱଚରାଚର ନିୟନ୍ତ୍ରଣ କରିଥାନ୍ତି । ପ୍ରାଚୀନ ଭାରତୀୟ ପ୍ରଜ୍ଞା ଦୃଷ୍ଟି ଋଷିମାନେ ଦୀର୍ଘଜୀବନ ବ୍ୟାପି ସାଧନାରେ ଏହି ଶାସ୍ତ୍ର ଅଧିଗତ କରିଥିଲେ । ବିଶ୍ୱମାନବ ସେହି ତପସ୍ୟାର ଫଳଲାଭରେ ଯୁଗଯୁଗଧରି ଉପକୃତ ।

ତନ୍ତ୍ରଶାସ୍ତ୍ର ଏକ ମହତୀ ଭଗବତୀ ଶକ୍ତିର ମୂର୍ତ୍ତ ପ୍ରକାଶ । ଯାହା ସାହାଯ୍ୟରେ ଅଲୌକିକ ଘଟଣାମାନ ବାସ୍ତବରେ ପ୍ରତିଫଳିତ ହୁଏ । ଅସମ୍ଭବ ସମ୍ଭବ ହୋଇପଡ଼େ । ଏହି ତିନିଶାସ୍ତ୍ରର ସମନ୍ୱୟ ମାନବାତ୍ମା ମଧ୍ୟରେ ଏକ ଅପୂର୍ବ ସଂହତି ଦିଏ । ପୃଥିବୀରୁ ଚିରଦିନ ପାଇଁ ଲୁପ୍ତ ନହେଲେ ମଧ୍ୟ ଏହି ଶାସ୍ତ୍ର ସମୂହ ବର୍ତ୍ତମାନ ଭାରତର ଅଜ୍ଞାନ ଅନ୍ଧକାରରେ

ଅବଗୁଣ୍ଠିତ ରହିଛି । ଆଧୁନିକ ଭାରତରେ ଏପରି ପୁରୁଷ ଦୁର୍ଲଭ ଯେ ନିଜ ଜୀବନରେ ଏହି ଲୁପ୍ତପ୍ରାୟ ବିଜ୍ଞାନତ୍ରୟର ସମନ୍ୱୟ ସାଧନରେ ଏବଂ ସେହି ତପସ୍ୟାକୁ ଦୁଃଖ ପୀଡ଼ିତ ମାନବତାର କଲ୍ୟାଣ ପାଇଁ ନିୟୋଜିତ କରିବାରେ କୃତକାର୍ଯ୍ୟ ହୋଇଛନ୍ତି ।

ଏବେ ୟୁରୋପରେ ଜ୍ୟୋତିଷ ଯୋଗ ପରଲୋକ ବିଷୟ ସମୂହରେ ସେଠାର ପଣ୍ଡିତମାନେ ଗବେଷଣା କରୁଛନ୍ତି । କିନ୍ତୁ ଟେଲିଭିଜନ କମ୍ପ୍ୟୁଟର ଦ୍ୱାରା ଭାରତବର୍ଷ ଲୋକଙ୍କଛଡ଼ା କେହି ଏହିସବୁ ଯନ୍ତ୍ରଶକ୍ତି ଦ୍ୱାରା ପୂର୍ବକାଳ ଋଷିଙ୍କ ପରି ଅତୀନ୍ଦ୍ରିୟ ଶକ୍ତିଲାଭ କରିପାରିବେ ନାହିଁ । ଚନ୍ଦ୍ର, ତାରା, ସୂର୍ଯ୍ୟ ପୃଷ୍ଠକୁ ସେମାନେ ଯାଇ ଯାହା ଆବିଷ୍କାର ଓ ଗବେଷଣା କରୁଛନ୍ତି ତାହା ସହିତ ଆମର ଜ୍ୟୋତିଷ ଯୋଗତନ୍ତ୍ରର ଅତୀନ୍ଦ୍ରିୟ ମେଧାର ସମନ୍ୱୟ ଅସମ୍ଭବ । ତେଣୁ ଭଗବାନ ମନୁସଂହିତାରେ ଲେଖିଗଲେ–

"ଏତଦ୍ଦେଶ ପ୍ରସୂତସ୍ୟ ସକାଶାଦଗ୍ରଜନ୍ମନଃ
ସ୍ୱଂ ସ୍ୱଂ ଚରିତ୍ରଂ ଶିକ୍ଷେରନ୍ ପୃଥିବ୍ୟାଂ ସର୍ବମାନବାଃ" ।

ଅର୍ଥାତ୍ ବିଶ୍ୱବାସୀଙ୍କୁ ଚରିତ୍ରବତ୍ତା ଶିକ୍ଷାଦେବାକୁ ଏ ଦେଶର ଲୋକେ ଅର୍ଥାତ୍ ଭାରତର ଲୋକମାନେ ମାନବିକ ସଂସ୍କୃତିନେଇ ପ୍ରଥମ ଜନ୍ମଗ୍ରହଣ କରିଥାନ୍ତି ।

ମାତ୍ର ଭାରତବର୍ଷର ଶାସ୍ତ୍ରହିଁ ଅଦୃଶ୍ୟ ଭଗବାନ । ଶାସ୍ତ୍ରର ନିର୍ଦ୍ଦେଶନାରେ ଆମଦେଶର ସାମାଜିକ ପାରିବାରିକ ବ୍ୟବସ୍ଥା ଚାଲିଥିଲା । ଏବେ ଶାସ୍ତ୍ରୀୟ ପଥ ଛୁଡ଼ି ଆମର ଜୀବନରେ ଶିବଙ୍କର ତ୍ରିଶୂଳ ମୁନ ଦେହମନରେ ଅହରହ ତ୍ରିବିଧ ସନ୍ତାପର ଜ୍ୱାଳା ଜାତ କରୁଅଛି । ଆଇ.ଏ.ଏସ–ଆଇ.ଏ.ଏସ୍, କିରାନୀ-କିରାନୀ, ଡାକ୍ତର-ଡାକ୍ତରାଣୀ, ବେହେରା-ବେହେରାଣୀ, ନର୍ସ, କମ୍ପାଉଣ୍ଡର ବା ଡାକ୍ତର ଖୋଜି ବିବାହ କରନ୍ତି । ଏହିସବୁ ବିବାହାଦିରେ ଏବେ କୋଷ୍ଠୀଯୋଟକାଦିର ମେଳକ କରାଯାଏ ନାହିଁ । ଏହା ଗାନ୍ଧର୍ବରୀତିର୍ ବିବାହ କୁହାଯାଏ । ମାତ୍ର ଏହାର ମୂଳଭିତ୍ତି ହେଉଛି ଅର୍ଥ । ଏହା ଫଳରେ ଭାରତୀୟ ପାରିବାରିକ ସଂପ୍ରୀତି ଲୋପ, ବଂଶଲୋପ ଓ ଦାମ୍ପତ୍ୟ ପ୍ରୀତି ମଧ୍ୟ ଲୋପହୋଇ ପ୍ରତି ଦମ୍ପତିଙ୍କ ଜୀବନରେ ସାହଚର୍ଯ୍ୟ, ସେବା, ତ୍ୟାଗ ପ୍ରଭୃତିର ବନ୍ଧନ ନିଃଶେଷ ହେଉଛି । ମନୁଷ୍ୟ ପଶୁର ଗୁଣଗ୍ରାମ ନେଇ ଜନ୍ମହୁଏ । ଶାସ୍ତ୍ରୀୟ ବିଧିବିଧାନ କୌଳିକ ଆଚାର ବିଚାର ଓ ସଂସ୍କାର ଦ୍ୱାରା ସେ ମାର୍ଜିତ ହୋଇ ମାନବିକ ଗୁଣ ଲାଭ କରେ । ମାତ୍ର ଜଡ଼ ବିଜ୍ଞାନର ଇନ୍ଦ୍ରିୟ ଭୋଗମୟ ଜୀବନରେ ସଂସ୍କାର, ବିଧି, ବାରଣ ପରଂପରା ଓ ମାନବିକ ପ୍ରୀତିବନ୍ଧନର ସ୍ଥାନ ନାହିଁ । ମନୁଷ୍ୟ ଆହାର, ନିଦ୍ରା, ଭୟ, ମୈଥୁନର କ୍ରୀତଦାସ ହୁଏ । ତେଣୁ ମନୁଷ୍ୟ ପଶୁରୂପୀ ଦେହ ସର୍ବସ୍ୱ ହୋଇ ସ୍ୱାର୍ଥପର ଯାନ୍ତ୍ରିକ ହୋଇଯାଏ । ମନନଶୀଳତା, ଚିନ୍ତା, ଶୁଭବୁଦ୍ଧି, ବିଚାର, ବିବେଚନା ଓ କର୍ତ୍ତବ୍ୟା କର୍ତ୍ତବ୍ୟ ଅନୁଭୂତି ତାର

ରହେ ନାହିଁ। ଶାସ୍ତ୍ର ଦେହ ସ୍ୱୀକାର କଲେ ମଧ୍ୟ ଆତ୍ମାକୁ ଦେହଠାରୁ ଉଚ୍ଚସ୍ଥାନ ଦେଇଛି। କାରଣ ଦେହ ମର ଓ ଆତ୍ମା ଅମର, ଅନନ୍ତକାଳର ଯାତ୍ରୀ-ବ୍ରହ୍ମଙ୍କର ସତ୍ତା। ତେଣୁ ଏ ଯୁଗରେ ମନୁଷ୍ୟର ମାନସିକ ସ୍ଥିରତା, ଧୈର୍ଯ୍ୟ, ତିତିକ୍ଷା, ସତ୍ୟାନୁରକ୍ତି, ସାହସ, ନିର୍ଭୀକତା ଲୁପ୍ତ। ନୀତିହୀନ ପଶୁବତ୍ ସେ ଦୁନିଆରେ ଚଳୁଛି।

ଭାରତରେ ଶାସ୍ତ୍ରପଥଛାଡ଼ି ଘର ଭାଙ୍ଗିଛି। ପାରିବାରିକ ଏକତା ବନ୍ଧନ ମୃତ। ଅର୍ଥ ତାର ପ୍ରଭୁ। ଅର୍ଥହୀନ ମନୁଷ୍ୟର ବିଦ୍ୟା, ବିବେକ, ବିନୟ, ଉଦାର, ଚରିତ୍ର, କ୍ଷମା, ସହିଷ୍ଣୁତା, ସ୍ନେହ, ମମତା, ସହାନୁଭୂତି ନଥାଏ। ନିଜର ଭୋଗ ଭାଗ୍ୟର ମାପକାଠି ହୁଏ କାମିନୀ କାଞ୍ଚନଯୁକ୍ତ ବ୍ୟସନ। ଯାହାର ସଙ୍ଗୀ-ସୁରା ଓ ସାକୀ। ମନ ଏହାରି ପଛରେ ଗୋଡ଼ାଇଲେ ସେ ଧ୍ୟାନସ୍ଥ ହୋଇପାରେ ନାହିଁ– କୌଣସି ବିଦ୍ୟାକୁ ଆୟତ୍ତ କରିପାରେ ନାହିଁ। ଦେହ-ମନ-ଭୋଗ-ବାସନା ତୃପ୍ତ କରିବା ପାଇଁ ପବନତୁଲ୍ୟ ଅସ୍ଥିର ହୁଏ। କୌଣସି କର୍ମ ସାଧନ ସିଦ୍ଧ ହୁଏନାହିଁ। ନିଜ ମନ ଓ ତାର ଦାସ ଇନ୍ଦ୍ରିୟମାନେ ମନୁଷ୍ୟର ବଚସ୍କର ହୁଅନ୍ତି ନାହିଁ। ତାମସିକ ଖାଦ୍ୟ ଦ୍ୱାରା ଦେହମନ ମାନବିକ ଗୁଣର କେନ୍ଦ୍ରଚ୍ୟୁତ ହୋଇ ସେ ଆତ୍ମଜ୍ୱାଳାରେ ଅସ୍ଥିର ବିଭ୍ରାନ୍ତହୋଇ କୁମାର୍ଗରେ ଗତିକରେ। ରାଷ୍ଟ୍ରବିପ୍ଳବ, ଧର୍ମଘଟ ସତ୍ୟାଗ୍ରହରେ ଅକ୍ଷମହୋଇ ଧାରଣା, ଅନଶନ, ରୁଷିବା, ନ୍ୟାୟ ଆଇନ ସଙ୍ଗତ, ବିଧିସମ୍ମତ କାର୍ଯ୍ୟ ବିରୁଦ୍ଧରେ ଘେରାଉ ପୁଣି ତାର ବିପରୀତ କର୍ମରେ ଘେରାଉ ଇତ୍ୟାଦି କରି ସେ ନିଜର ଆତ୍ମଶକ୍ତି ଦେହଶକ୍ତି ନଷ୍ଟକରି ଜୀବନ ବିପଣୀରେ ନିଃସ୍ୱ ହୋଇପଡ଼େ। ଜୀବନ ଯାତ୍ରାର ପାଥେୟ ତାର କିଛିମାତ୍ର ଉଦବୃତ ରହେନାହିଁ। ଜନ୍ମମୃତ୍ୟୁ ଜରାବ୍ୟାଧିର ଯାନ ଆରୋହଣ କରି ସେ ସଂସାର ଚକ୍ରରେ ଜନ୍ମ ଜନ୍ମ ଧରି ଘୁରୁଥାଏ। ବେଦପଥ, ଶାସ୍ତ୍ରପଥ ଛାଡ଼ି ମନୁଷ୍ୟ ଆଜି ଦୀନହୀନ। ଆଲକାତରାରୁ ସାକ୍ରିନ, ଏଣ୍ଡ୍ରିନ ବିଷରୁ ଉପଜାତ ଖାଦ୍ୟ ଖାଇ ସିନ୍ଥେଟିକ ଯାନ୍ତ୍ରିକ କୃତ୍ରିମ ସୂତାର ବସ୍ତ୍ର ପିନ୍ଧି ଆମର ଆତ୍ମତୃପ୍ତି। କିରାସିନୀ ହ୍ୱାଇଟ ଅୟେଲ ପଶୁଚର୍ବି ମଟନ ତେଲ ଇଞ୍ଜିନ ସଫା ହେଇ ବଳିଥିବା ମୋବିଲ ଅଏଲ ମିଶା ଶୋରିଷତେଲ ଡାଲଡ଼ା ନଡ଼ିଆତେଲର ମଖନ ସାରଦିଆ ପରିବା ଚାଉଳ ଡାଲି ଓଡ଼ିଆଙ୍କ ଖାଦ୍ୟ। ଦେଶ ଆଜି ମୃତ, ଭିଖାରୀ।

ଭାରତବର୍ଷ ପୁଣ୍ୟଭୂମି–ଦେବଭୂମି। ବେଦଶାସିତ ଦେଶ। ଉତ୍କଳ ଭାରତର ମଉଡ଼ମଣି। କିନ୍ତୁ ଏ ଦେଶ ଧର୍ମନିରପେକ୍ଷ ବା ଧର୍ମହୀନ ହେବାରୁ ୮୦ଟି ଦେବ ଦେବୀଙ୍କ ମୂର୍ତ୍ତି ନାସ୍ତିକ ମାନଙ୍କ ଦ୍ୱାରା ଅପହୃତ ହୋଇଅଛି। ସାହାବମାନେ ମୂର୍ତ୍ତିକୁ ପଥର ଭାବି ଚୋରାଇ ନେଇ ବ୍ରିଟିଶ ମ୍ୟୁଜିୟମରେ ସେମାନଙ୍କ ପ୍ରସାଧିତ ଗୃହଗୁଡ଼ିକୁ ସଜାଇବାକୁ ନେଇଥିଲେ। ମାତ୍ର ପ୍ରଗତିବାଦୀ ସମାଜବାଦୀ ଭାରତର ଧର୍ମହୀନ, ଧର୍ମଦ୍ରୋହୀ ଅଧାର୍ମିକ

ଲୋକଗୁଡ଼ିଏ ଦେଉଳର ଦେବମୂର୍ତ୍ତି ଚୋରାଇ ବିକି ଭାରତର ନାମ ରଖିଲେ, କି କାଳିଜାଇ ଗଣ୍ଡରେ ମାଡ଼ି ଦେଲେ ତାହା ଭଗବାନ ଜାଣନ୍ତି । ଏ ଦେଶ ନାସ୍ତିକ ହୋଇ କାଳିଜାଇ ଗଣ୍ଡରେ ବୁଡ଼ି ମରିଅଛି । ଭାରତର ରାଜଧର୍ମରେ ବାନପ୍ରସ୍ଥ ବିଧି ଥିଲା । ଭାରତର ବଧୂମାନେ ବିବାହପରେ ପିତ୍ରାଳୟରେ ନିଜର ଦୁର୍ଦ୍ଦିନରେ ଆଶ୍ରୟ ନେଉନ ଥିଲେ । ସ୍ୱାମୀ ଘରେ ରହୁଥିଲେ ଓ ଅନ୍ୟ ପାଇଁ ଆତ୍ମୋତ୍ସର୍ଗ, ନିଷ୍କାମକର୍ମ ସତୀତ୍ୱ ଯତିତ୍ୱ, ଧନୀ-ନିର୍ଦ୍ଧନ ସବୁଲୋକେ ବିଧିର ବିଧାନ କୁଳପରଂପରା ଲୋକାଚାର ମାନି ଭଗବାନଙ୍କୁ ଦର୍ଶନ କରି ଜୀବନ ସାର୍ଥକ କରିବାକୁ ନିଜର ଚରିତ୍ର ଆଧ୍ୟାତ୍ମିକ ନୀତି ନିୟମ ଉପରେ ରଖିଥିଲେ । ତେଣୁ ଏ ଆର୍ଯ୍ୟବସତି ଭାରତ ଧନଜନ ଗୋପ ଲକ୍ଷ୍ମୀରେ ଭରିଥିଲା । ଧର୍ମ ଅର୍ଥ କାମ ମୋକ୍ଷଲାଭ କରିବାହିଁ ମନୁଷ୍ୟ ଜୀବନର ଲକ୍ଷ୍ୟଥିଲା ଏବଂ ବ୍ରହ୍ମଚର୍ଯ୍ୟ ପାଳନ ଗୁରୁଭକ୍ତିକୁ ସେ ଜୀବନ ଗଠନର ସୋପାନ କରିଥିଲା । ମାତ୍ର ଭାରତ ବିଦେଶୀଙ୍କ ସଂସ୍କାର ଭାଷା,ବେଶ, କୃଷି ଗ୍ରହଣ କରି ଆତ୍ମ ପାଶୋରା ହୋଇ ମୃତ୍ୟୁମୁଖରେ ପଡ଼ିଛି । ଇଂରାଜ ଗଲା, ତାର ଜଡ଼ ବିଦ୍ୟା ବୁଦ୍ଧି ଚଲାଖି ଚଳନୀ ଆମକୁ ଦେଇଗଲା । ହାତରେ ମାରି ନପାରି ଭାତରେ ମାରିଥିବାରୁ ଆମେରିକା ୟୁରୋପ ଆଜି ଆମ ଭିକ୍ଷାଦାତା ଓ ଶିକ୍ଷାଦାତା । ତେଣୁ ତାଙ୍କ ରଙ୍ଗ ଚଶମାରେ ଆମ ଅବସ୍ଥା କଳି ପାରୁନାହିଁ ।



# ଭାରତର ପ୍ରାଚୀନ କବିଙ୍କ କାବ୍ୟଛାଞ୍ଚ

ଉତ୍କଳଭୂମିରେ ଯେତେ ଯେତେ କବି ସାହିତ୍ୟକାର ଓ କଳାକାରମାନଙ୍କର ନାମ ବିଦିତ ଅଛି, ତନ୍ମଧ୍ୟରୁ ମହାକବି ଉପେନ୍ଦ୍ରଭଞ୍ଜ ଓ ଅଭିମନ୍ୟୁ ସାମନ୍ତସିଂହାରଙ୍କ ନାମ ସର୍ବଜନବିଦିତ ଅଟେ । ଯେଉଁମାନେ ସାହିତ୍ୟର କ୍ଲିଷ୍ଟପଦକୁ ବୁଝିନପାରନ୍ତି, ସେମାନେ ମଧ୍ୟ ଲାବଣ୍ୟବତୀ କାବ୍ୟର ନାମ ଜାଣନ୍ତି ଏବଂ ଗ୍ରନ୍ଥ ବି କଷ୍ଟ ଅବୋଧ ହେଲେହେଁ ପଢ଼ିଛନ୍ତି ବୋଲି ଗର୍ବ ଅନୁଭବ କରନ୍ତି । ଉପେନ୍ଦ୍ରଭଞ୍ଜଙ୍କର ସଙ୍ଗୀତ ମଧ୍ୟ ଉତ୍କଳର ଗୃହେ ଗୃହେ ଗୀତ । ସେ ଯେ କେବଳ କବିତ୍ୱରେ ଓ ପାଣ୍ଡିତ୍ୟରେ ପ୍ରସିଦ୍ଧିଲାଭ କରିଥିଲେ ତାହା ନୁହେଁ; ଉତ୍କଳ ସାହିତ୍ୟର ଇତିହାସ ଆଡ଼େ ଦୃଷ୍ଟି ନିକ୍ଷେପକଲେ ଜଣାଯାଏ, ସେ ଜଣେ ସ୍ୱର ସାହିତ୍ୟର ମଧ୍ୟଗୁରୁ, ତାହାଙ୍କ ଛାନ୍ଦ ଓ ସଙ୍ଗୀତ ଗୁଡ଼ିକରେ ସ୍ୱର ବିନ୍ୟାସର ଚାତୁରୀ ଦେଖିଲେ ବିସ୍ମିତ ହେବାକୁ ପଡ଼େ । କାରଣ ତାହାଙ୍କ ପୂର୍ବରୁ ଯେଉଁ ବୈଷ୍ଣବ ସାହିତ୍ୟକାର ପଞ୍ଚସଖାମାନେ ଓଡ଼ିଶାରେ ଜନ୍ମଗ୍ରହଣ କରିଥିଲେ । ଜଗନ୍ନାଥ, ବଳରାମ, ଅଚ୍ୟୁତାନନ୍ଦ, ଯଶୋବନ୍ତ, ଅନନ୍ତ ପ୍ରଭୃତିଙ୍କ କବିତା ପାଠ କଲେ ତହିଁରେ କୌଣସି ସ୍ୱର ବିନ୍ୟାସ ଥିବାପରି ଜଣାପଡ଼େ ନାହିଁ । ସାରଳାଦାସଙ୍କ ମହାଭାରତ ସେହିପରି ।

ଅଳଙ୍କାର ଶାସ୍ତ୍ରରେ ମଧ୍ୟ ଉପେନ୍ଦ୍ରଭଞ୍ଜଙ୍କ ଅପୂର୍ବ ପାଣ୍ଡିତ୍ୟ ଥିଲା । ଅନ୍ତର୍ଲିପି, ବହିର୍ଲିପି, ବନ୍ଧ, ଯମକ ଓ ଅନୁପ୍ରାସ ପ୍ରଭୃତି ଯୋଜନାରେ ସେ ଯେପରି ନୈପୁଣ୍ୟ ଲାଭ କରିଥିଲେ, ତାହା ବର୍ତ୍ତମାନ ଉତ୍କଳର ଯେ କୌଣସି ସାହିତ୍ୟିକ କିମ୍ବା କବିମାନଙ୍କର ସମାଲୋଚନାର ଅତୀତ ବୋଲି ପ୍ରତୀୟମାନ ହୁଏ । କାରଣ ସେମାନଙ୍କର ଯେ ସାହିତ୍ୟଜ୍ଞାନ କି ରସବୋଧ କି ସମାଲୋଚନା କରିବାର ଶକ୍ତି ନାହିଁ, ଏହା ନୁହେଁ । କିନ୍ତୁ ଭଞ୍ଜଙ୍କପରି ସାହିତ୍ୟ ବିଜ୍ଞାନ ଦ୍ରଷ୍ଟା ଋଷି ସେମାନେ ନୁହଁନ୍ତି । ଭଞ୍ଜଙ୍କର ଗ୍ରନ୍ଥମାନ ପାଠକଲେ ଜଣାଯାଏ ଯେ, ସଂସ୍କୃତ ସାହିତ୍ୟର ଏବଂ ଅଳଙ୍କାର ଶାସ୍ତ୍ରର ନିୟମାନୁବର୍ତ୍ତୀତାର ସୀମା ଭିତରେ ରହି ଉପମା, ଉପମେୟ, ଉପଧା, ମିଳନ ପ୍ରଭୃତି ଦିଗରେ ସଚେତନ ରହି ସେ ଯେ ଭାବ ପରିସ୍ଫୁଟ କରି ପାରିଛନ୍ତି ଏବଂ ବସ୍ତୁକୁ ଯେପରି ଉପଭୋଗ୍ୟ ଓ ରମଣୀୟ କରିପାରିଛନ୍ତି : ତାହା ଆଧୁନିକ କାହିଁକି, ତାହାଙ୍କର ସମସାମୟିକ ପୂର୍ବବର୍ତ୍ତୀ ତଥା ପରବର୍ତ୍ତୀ ପ୍ରାଚୀନ ସାହିତ୍ୟକାରମାନେ କେହି ହେଲେ ଅନୁକରଣ କରିବାକୁ କ୍ଷମ ହୋଇନାହାନ୍ତି । ଏହା ଦେଖି ପ୍ରତୀତୀ ହୁଏ, ବଙ୍ଗଳାର ରବୀନ୍ଦ୍ରନାଥଙ୍କ କବିତା ଏବଂ ପ୍ରବନ୍ଧ ଏହି ଯୁଗରେ ଯେପରି ସମସ୍ତ ବଙ୍ଗୀୟ ଲେଖକମାନଙ୍କ ଉପରେ ପ୍ରଭାବପାତ କରୁଛି; କିନ୍ତୁ

ସେମାନେ ଯେପରି ପୂର୍ଣ୍ଣ ଭାବରେ ସେହି ସାହିତ୍ୟର ଅନୁକୃତି କରିବାକୁ କ୍ଷମ ହୋଇପାରୁନାହାନ୍ତି ଏବଂ ଯେପରି ଉତ୍କଳରେ ମଧୁସୂଦନ ଓ ରାଧାନାଥଙ୍କର ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ଲେଖକଗଣ ସେହି କବିମାନଙ୍କ ପ୍ରଭାବରେ ପ୍ରଭାବାନ୍ୱିତ ହେଲେ ସୁଦ୍ଧା ତାହାର ଅନୁକୃତିରେ ସଫଳକାମ ହୋଇପାରିନାହାନ୍ତି ତଦ୍ରୂପ ଉପେନ୍ଦ୍ର ଭଞ୍ଜଙ୍କର କବି ପ୍ରତିଭା ତାଙ୍କରି ଯୁଗରୁ ବର୍ତ୍ତମାନ କାଳ ପର୍ଯନ୍ତ ଅନୁକରଣୀୟ ହୋଇ ରହିଅଛି । ଆଜି ପର୍ଯ୍ୟନ୍ତ ଉତ୍କଳର କୌଣସି କୃତି ସାହିତ୍ୟିକ ତାଙ୍କ କାବ୍ୟର ପରିଚୟ ଭାରତବର୍ଷରେ ଏବଂ ବିଦେଶରେ ସ୍ଥାପନ କରାଇ ନିଜ ଜାତି ଏବଂ ସାହିତ୍ୟର ସଂପୂର୍ଣ୍ଣ ମୂଲ୍ୟ ନିର୍ଦ୍ଧେଶ କରିବାକୁ ସାହସୀ ହୋଇ ନାହାନ୍ତି । ଏହା ଯଥାର୍ଥରେ ଗୋଟିଏ ଅଗୌରବର କଥା । ଆଦିରସର ବହୁଳତା ଦେଖାଇ ଯେଉଁମାନେ ଭଞ୍ଜ ସାହିତ୍ୟକୁ ଅସ୍ପୃଶ୍ୟତାର ପଂକ୍ତି ଭିତରେ ଥୋଇଛନ୍ତି, ସେମାନେ ବାସ୍ତବିକ ସେମାନଙ୍କ ପୂର୍ବ ପୁରୁଷ ସାହିତ୍ୟ ଗୁରୁମାନଙ୍କର ସୁଯୋଗ୍ୟ ଦାୟାଦ ହେବାର ଉପଯୁକ୍ତ କି ?

ସେଲି, ବ୍ରାଉନିଂ ଓ୍ୱାର୍ଡ଼ସଓ୍ୱାର୍ଥ, ସେକ୍ସପିୟର, ଟେନିସନ ପ୍ରଭୃତି ଇଂରେଜ କବିମାନଙ୍କର ସାହିତ୍ୟକୁ ଆଦିରସର କଷଟି ପଥରରେ କଷିଲେ ଯେ ନିହାତି ନିରାମିଷାଶୀ -ପଂକ୍ତିରେ ସେ ଆସି ପଡ଼ିଯିବେ ଏହା ନୁହେଁ ; କିନ୍ତୁ ତାହା ଆଲୋଚନା କରି ତାର ସୌନ୍ଦର୍ଯ୍ୟରସ ପରିବେଷଣ କରିବାକୁ ଉତ୍କଳର ସାହିତ୍ୟରଥୀମାନଙ୍କୁ କଷ୍ଟ ସ୍ୱୀକାର କରିବାକୁ ହୋଇନାହିଁ । ପାର୍ଶିଭାଷାରେ ଲିଖିତ ‘‘ଓମର ଖାୟାମ’’ ଇଂରେଜ କବି ଫିଟଜ ରାଲଡ଼ଙ୍କ ପକ୍ଷରେ ଅନୁବାଦ କରି ଜଗତଜନଙ୍କ ଚିତ୍ତଲୁବ୍‌ଧ କରିବା ସମ୍ଭବପର ହୋଇପାରେ । କାଳିଦାସ ଶକୁନ୍ତଳା ନାଟକ ଏବଂ ଆମ୍ଭମାନଙ୍କର ବେଦ ଜର୍ମାନ ଓ ଇଂରେଜ ପଣ୍ଡିତମାନଙ୍କ ଦ୍ୱାରା ଅନୁବାଦିତହୋଇ ଭାରତୀୟ ସାହିତ୍ୟ, କଳା ସହିତ ସମସ୍ତଙ୍କ ସଂସାରର ପରିଚୟ ସ୍ଥାପନ ସମ୍ଭବପର ହୋଇପାରେ; କିନ୍ତୁ ବୈଦେହୀଶ ବିଳାସର ସୀତାଙ୍କ ବର୍ଣ୍ଣନା କିମ୍ବା ଲାବଣ୍ୟବତୀର ବର୍ଣ୍ଣନା ବିଦେଶୀଭାଷାରେ ଭାଷାନ୍ତରିତ କରି ସୌଷ୍ଠବ ସହକାରେ ପ୍ରକାଶ କରିବା ଉତ୍କଳୀୟଙ୍କ ପକ୍ଷରେ ଆଜି ପର୍ଯ୍ୟନ୍ତ ଅସମ୍ଭବ କଥା ହୋଇଅଛି । ଅନ୍ୟାନ୍ୟ ଦେଶର ପ୍ରସିଦ୍ଧ ସାହିତ୍ୟିକମାନଙ୍କର ଲେଖା ଅନୁଧାବନ କଲେ ପ୍ରତୀତି ଜନ୍ମେ ଯେ, ସେମାନେ ଅତୀତର ବେଷ୍ଟନୀ ମଧ୍ୟରୁ ଭବିଷ୍ୟତ ସାହିତ୍ୟର ତୁଙ୍ଗ ପ୍ରେରଣା ଲାଭ କରିଥାଆନ୍ତି, ସସୀମ ମଧ୍ୟରୁ ଅସୀମର ସନ୍ଧାନ କରିଥାନ୍ତି । ବାସ୍ତବତା ମଧ୍ୟରୁ ରହସ୍ୟମୟକୁ ଆବିଷ୍କାର କରିଥାନ୍ତି । ଏହି ବିଶାଳ ଅଧ୍ୟୟନ ସ୍ପୃହା ଏବଂ ଅନୁସନ୍ଧାନ ପଟୁତା ସେମାନଙ୍କୁ ସାହିତ୍ୟ-ଜଗତରେ ଯଶସ୍ୱୀତାର ମୁକୁଟ ପିନ୍ଧାଇଦିଏ । ବିଶ୍ୱକବି ରବୀନ୍ଦ୍ରନାଥ ତାଙ୍କ ସାହିତ୍ୟ ସାଧନାର ଉତ୍ସ ଲାଭ କରିଥିଲେ । ରସର ସନ୍ଧାନ ପାଇଥିଲେ । ମୈଥିଳି କବି ବିଦ୍ୟାପତି ଓ ବଙ୍ଗଳାର ଚଣ୍ଡୀଦାସ ପ୍ରଭୃତି ବୈଷ୍ଣବ କବିମାନଙ୍କ ସାହିତ୍ୟରୁ ।

ଏହା ଛଡ଼ା ସଂସ୍କୃତ ସାହିତ୍ୟ ଓ ପ୍ରାକୃତ ସାହିତ୍ୟର ଭାଷାମାନ ମଧ୍ୟ ତାହାଙ୍କର ସୌନ୍ଦର୍ଯ୍ୟ ସ୍ପୃହା ଚିତ୍ତକୁ ବିଚଳିତ କରିଥିଲା । ଅଧ୍ୟାପକ ରାଧାକୃଷ୍ଣନ, ବ୍ରଜେନ୍ଦ୍ରନାଥ ଶୀଳ, ହରେନ୍ଦ୍ରନାଥ ଦତ୍ତ, ପଞ୍ଚାନନ ତର୍କରତ୍ନ ପ୍ରମୁଖ ପଣ୍ଡିତମାନେ ସଂସ୍କୃତ ଦର୍ଶନ ଶାସ୍ତ୍ର ଉପରେ ନିଜର ଭାବ ମିଳାଇ ପ୍ରାଚ୍ୟ ଦର୍ଶନ ଶାସ୍ତ୍ରମାନଙ୍କଠାରୁ ଜ୍ଞାନ ଆହରଣ କରି ଜଗତରେ ଖ୍ୟାତିଅର୍ଜନ କରିଛନ୍ତି । ମହାତ୍ମାଗାନ୍ଧୀ ଏବଂ ଯୋଗୀ ଅରବିନ୍ଦ, ସାଧୁ ଭାସ୍ୱାନୀ ଏବଂ ପଣ୍ଡିତ ମଦନ ମୋହନ ମାଲବ୍ୟ, ତିଳକ ପ୍ରଭୃତି ମନୀଷୀମାନେ ଅତୀତର ଦର୍ଶନ ଉପରେ ଆଧୁନିକ ଯୁଗୋପଯୋଗୀ ନ୍ୟାୟ ଦର୍ଶନନୀତି ପ୍ରଭୃତିକୁ ଗଢ଼ି ଦେଇଛନ୍ତି । କିନ୍ତୁ ଏ ଦିଗରେ ଉତ୍କଳ ସାହିତ୍ୟ ବିପଣୀରେ ଆମଦାନୀ ଦିଗରେ କିଛି ଦେଖିଲେ ମଧ୍ୟ ରପ୍ତାନୀ ଗୃହଶୂନ୍ୟ । ଏହି କାରଣରୁ ମହାକବିଙ୍କ ସାହିତ୍ୟ ସମାଲୋଚନା କରିବାର ଧୃଷ୍ଟତମ ପ୍ରୟାସ ମୁଁ କରୁଅଛି– ବାମନ ଚନ୍ଦ୍ରକୁ ଆକାଂକ୍ଷା କଲାପରି । ଆଦିରସ ବୋଲି ଯେଉଁମାନେ ଭଞ୍ଜ ସାହିତ୍ୟକୁ ଦୂରରୁ ଜୁହାର କରନ୍ତି, ସେମାନଙ୍କ ମାନସିକ ଦୁର୍ବଳତା (inferiority complex) ଦେଖିଲେ ମନେହୁଏ, ଯଦି ସେମାନଙ୍କ ପକ୍ଷରେ ସମ୍ଭବ ହୁଅନ୍ତା, **ତେବେ** କୋଣାର୍କ ଓ ଭୁବନେଶ୍ୱର ମନ୍ଦିର ଉପରେ ସୁଦ୍ଧା ସେମାନେ ଘଟାଟୋପ ପକାଇ ଦୁନିଆରୁ ଆବୃତ କରି ରଖନ୍ତେ–ଏକଥା ସତ୍ୟ । ଏ ଉତ୍କଳ ଯେତେବେଳେ ସ୍ୱାଧୀନ ଥିଲା, ସେତେବେଳେ ଧର୍ମ ସହିତ ଆଦିରସକୁ ଭୋଗ କରିବାର ଗୋଟିଏ ପ୍ରୟାସ ଜାତ ହୋଇଥିଲା । ତାହାର କଳା ଏବଂ ଭାସ୍କର୍ଯ୍ୟ ଯେଉଁ ମନୋବୃତ୍ତି ବିକଶିତ ହୋଇ ଉଠିଥିଲା । ସେହି ଭାବ ସାହିତ୍ୟରେ ବିଶଦ ଭାବରେ ପ୍ରତିକୃତି ଅଙ୍କିତ କରିଛି । ନୈତିକତା ହିସାବରେ ଧରିବାକୁ ଗଲେ ଏହାର ମୂଲ୍ୟ ନିର୍ଣ୍ଣୟ କରିବା ଅସାଧ୍ୟ । କିନ୍ତୁ Art for arts sake (କଳାର ଅନୁଭୂତିପାଇଁ କଳାର ସେବା) ନୀତି ଅନୁସାରେ ବିଚାର କଲେ ସେହିକାଳରେ କାରୁକଳା ଏବଂ ସାହିତ୍ୟ ଭିତରେ ଉତ୍କଳବାସୀ ଯେଉଁ ମନୋବୃତ୍ତି ଏବଂ ଭାବର ପରିଚୟ ଦେଇଛି ବାସ୍ତବିକ ପୃଥିବୀର କୌଣସି ଜାତିରେ ଏପରି ସୁସାମଞ୍ଜସ୍ୟ (Unique antiquity) ଥିବାର ପ୍ରମାଣ ମିଳେ ନାହିଁ । ଏହି ଦିଗରୁ ଆଧୁନିକ ସାହିତ୍ୟକାର ମାନଙ୍କର ବିଚାର କରିବାର ବିଷୟ । ଆମ୍ଭମାନଙ୍କୁ ନୂତନ ଦୃଷ୍ଟିଭଙ୍ଗୀ ଅର୍ଜନ କରିବାକୁ ହେବ ଏବଂ ମୁଗ୍ଧ ରସଗ୍ରାହୀ ସାହିତ୍ୟ ହିସାବରେ ବିଚାର କରିବାକୁ ହେବ । କାରିଗର ଯାହା ନିର୍ମାଣ କରିଛି ସେ ଯେଉଁ ବିଷୟ ହେଉନା କାହିଁକି, ବାସ୍ତବିକ ତାହା ସୁନ୍ଦର ଏବଂ ସ୍ୱୟଂ ସଂପୂର୍ଣ୍ଣ ନା କ୍ଷୁଣ୍ଣ ନା ଖଣ୍ଡ ?

ଉପେନ୍ଦ୍ରଭଞ୍ଜଙ୍କ ପୂର୍ବରୁ ସାରଳାଦାସ ଏକମାତ୍ର କବି ଯେ କି ମହାଭାରତ ପରି ବୃହତ୍ ଗ୍ରନ୍ଥ ଗୀତିକାରରେ ଲେଖିଛନ୍ତି । ଜଗନ୍ନାଥ ପ୍ରଭୃତି ପଞ୍ଚସଖା ଭାଗବତ, ରାମାୟଣ ଓ ଶୂନ୍ୟବାଦ ସମ୍ବନ୍ଧରେ ମଧ୍ୟ କେତେକ ଗ୍ରନ୍ଥ ଲେଖିଥିଲେ, ଉପେନ୍ଦ୍ରଭଞ୍ଜ ଯଦି ରାଜବଂଶୀୟ କବି ନ ହୋଇଥାନ୍ତେ, ତା'ହେଲେ ସେ ମଧ୍ୟ ତାଙ୍କ ପୂର୍ବଜମାନଙ୍କର ପନ୍ଥା ଅନୁସରଣ କରି

ପୁରାଣକାବ୍ୟ ଲେଖିଥାଆନ୍ତେ । କିନ୍ତୁ ତାହାଙ୍କର ମନ ସଂସାର ପ୍ରତି ବିମୁଖ ନଥିଲା ବୋଲି ସେ ସ୍ୱାଧୀନଭାବରେ ନାୟକ ନାୟିକା ବର୍ଣ୍ଣନାକୁ ତାଙ୍କ କାବ୍ୟର ମୁଖ୍ୟବସ୍ତୁ କରିଛନ୍ତି । କିନ୍ତୁ ଏହା ବୋଲି ତାଙ୍କ ଉପରେ ଯେ ତତ୍‌କାଳିନ ବୈଷ୍ଣବ ବା ଶାକ୍ତଭାବର ପ୍ରଭାବ ପଡ଼ିନଥିଲା, ଏହା ନୁହେଁ, ବୈଦେହୀଶ ବିଳାସ ପାଠ କଲେ ଜଣାଯାଏ ଯେ, ସେ ରାମାଉତ ସମ୍ପ୍ରଦାୟକୁ ଶ୍ରଦ୍ଧା କରୁଥିଲେ ଏବଂ ସୀତାରାମ ତାଙ୍କର ଇଷ୍ଟଦେବତା । ତାଙ୍କର କୋଟି ବ୍ରହ୍ମାଣ୍ଡସୁନ୍ଦରୀ ଲାବଣ୍ୟବତୀ ଇତ୍ୟାଦି ଗ୍ରନ୍ଥ ପାଠ କଲେ ଜଣାଯାଏ ଯେ, ତାଙ୍କର କୌଣସି ବିଶିଷ୍ଟ ଧର୍ମମତ ନଥିଲା । କେତେବେଳେ ହର ପାର୍ବତୀଙ୍କୁ, କେତେବେଳେ ଜଗନ୍ନାଥ–ବଳଭଦ୍ର ଓ ସୁଭଦ୍ରାଙ୍କୁ, କେତେବେଳେ ବା ରାଧାକୃଷ୍ଣଙ୍କୁ ପ୍ରାର୍ଥନା ଜଣାଉଛନ୍ତି ଯେ, ତାଙ୍କରି ପାଦ-ପଦ୍ମରେ ତାଙ୍କର ମତି ରହୁ । ସାଧାରଣତଃ ଜଣାଯାଏ, ସେ ବୈଷ୍ଣବ-ରୁଚି ସମ୍ପନ୍ନ ଲୋକ ଥିଲେ । କେବଳ ଅଭୀଷ୍ଟ ସିଦ୍ଧି ଯେଉଁଠି ତାଙ୍କର ଆଖ୍ୟାନ ବସ୍ତୁରେ ଉପଲବ୍‌ଧି ହୋଇଥିଲା କିମ୍ବା ସଂକଳ୍ପ ବିକଳ୍ପର ପ୍ରସଙ୍ଗ ଥିଲା, ସେହିଠାରେ ସେ ଶିବ ପାର୍ବତୀଙ୍କର ମହିମା ସ୍ୱୀକାର କରିଛନ୍ତି ।

ଉତ୍କଳରେ ଯେଉଁ ଯେଉଁ କବିମାନେ କାବ୍ୟ ଛାନ୍ଦ ପ୍ରଭୃତି ଲେଖିଯାଇଛନ୍ତି, ସେମାନେ ସମସ୍ତେ ଅବତରଣିକାରେ ସେମାନଙ୍କର ଇଷ୍ଟଦେବତାଙ୍କୁ ପ୍ରାର୍ଥନା ଜଣାଇଅଛନ୍ତି । ଅଧ୍ୟାୟ ଶେଷରେ ମଧ୍ୟ ଏହିପରି ରୀତି ପରିଦୃଷ୍ଟ ହୁଏ । ରାମଭକ୍ତ ଭଞ୍ଜ ପ୍ରଥମେ ଇଷ୍ଟଦେବତା ରାମଚନ୍ଦ୍ରଙ୍କୁ ପ୍ରାର୍ଥନା କରି ଗ୍ରନ୍ଥ ଆରମ୍ଭ କରିଅଛନ୍ତି । ଏହି ନୀତି ଯେ କେବଳ ଓଡ଼ିଆ କବିମାନଙ୍କର ଥିଲା ଏହା ନୁହେଁ । ଅନ୍ୟାନ୍ୟ ଭାଷାର ପ୍ରାଚୀନ କବିମାନଙ୍କର ମଧ୍ୟ ଏ ପନ୍ଥା ଥିବାର ଜଣାଯାଏ । ତୁଳସୀ ଦାସ, ସୁର ଦାସ ପ୍ରଭୃତି କବିମାନେ ଏପରି ମଧ୍ୟ କରିଛନ୍ତି । ଆମ ଓଡ଼ିଶାରେ ସାରଳା ଦାସ, ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଦାସ ପ୍ରଭୃତି କବିମାନେ ଇଷ୍ଟଦେବଙ୍କୁ ବନ୍ଦନାକରି ଲେଖା ଆରମ୍ଭ କରିଅଛନ୍ତି । ଆମର ପ୍ରାଚୀନ କବିମାନଙ୍କ ନାୟକ ନାୟିକାମାନଙ୍କର ଜନ୍ମବୃତ୍ତାନ୍ତ କଳ୍ପନା ଭିତ୍ତିଉପରେ ଛିଡ଼ା ହୋଇଥିଲା ପରି ଜଣାପଡ଼େ । କବିମାନେ ଏହି ଢଙ୍ଗ ରାମାୟଣ, ମହାଭାରତ ପ୍ରଭୃତିରୁ ଅନୁକରଣ କରିଥିବାର ପ୍ରତୀୟମାନ ହୁଏ । କାରଣ ପୁରାଣମାନଙ୍କରେ ଯେଉଁ ଆଖ୍ୟାୟିକାମାନ ଲିଖିତ ଅଛି; ସେଥିରେ ଥିବା ନାୟକ ନାୟିକାମାନଙ୍କ ଜନ୍ମ ବୃତ୍ତାନ୍ତ ଦେଖିଲେ ଜଣାପଡ଼େ ଯେ, କବିମାନେ ନାୟିକାମାନଙ୍କର ପୂର୍ବଜନ୍ମ ବୃତ୍ତାନ୍ତ ବର୍ତ୍ତମାନ ଜୀବନ ସହିତ ସାମଞ୍ଜସ୍ୟ ରକ୍ଷାକରି ବର୍ଣ୍ଣନା କରିଛନ୍ତି । ସୀତା, ଦ୍ରୌପଦୀ, ଶକୁନ୍ତଳା ପ୍ରଭୃତି ନାୟିକାମାନଙ୍କର ପୂର୍ବଜନ୍ମବୃତ୍ତାନ୍ତ ଲିଖିତ ଅଛି । କିଏ କେଉଁ ଶାପ ବଳରୁ ଏ ଧରା ଧାମରେ ଅବତୀର୍ଣ୍ଣ, ତାହା ମଧ୍ୟ ବର୍ଣ୍ଣିତ ଅଛି । ରାମ-ରାବଣ, କୃଷ୍ଣ-କଂଷ ପ୍ରଭୃତିଙ୍କ ପୂର୍ବଜନ୍ମ ବୃତ୍ତାନ୍ତ ଅଛି । କଳିଯୁଗରେ ବୁଦ୍ଧ, ଶଙ୍କର, ଚୈତନ୍ୟ ପ୍ରଭୃତିଙ୍କର ମଧ୍ୟ ପୂର୍ବଜନ୍ମ ବିଷୟ ସେମାନଙ୍କ ଜୀବନୀପାଠରୁ ଜଣାଯାଏ ।

ଭଞ୍ଜକବି ତାଙ୍କର ଅଧିକାଂଶ କାବ୍ୟରେ ନାୟକ ଓ ନାୟିକାର ପୂର୍ବଜନ୍ମ ବୃତ୍ତାନ୍ତ ଦେଇଛନ୍ତି । ଦିନେ ହରପାର୍ବତୀ ପଶା ଖେଳୁ ଖେଳୁ ପାର୍ବତୀ ଗୋଟିଏ ଅପରୂପ ମାନସକନ୍ୟା ସୃଷ୍ଟି କରିବାକୁ ଇଚ୍ଛାକଲେ । ତାହାଙ୍କର ମାନସକନ୍ୟା ରୂପଲାବଣ୍ୟରେ ଅଦ୍ୱିତୀୟ ହେଲା । ସେ ତାହାର ନାମ ବାଞ୍ଛାବତୀ ଦେଲେ । ପାର୍ବତୀ ବନଦେବୀଙ୍କୁ ଆଜ୍ଞା ଦେଲେ, ବାଞ୍ଛାବତୀକୁ ନେଇ ଘୋର ଅରଣ୍ୟ ଭିତରେ ସୁରମ୍ୟ ଅଟ୍ଟାଳିକାରେ ରଖିବାକୁ । ପାର୍ବତୀଙ୍କର ହୁକୁମ ଥିଲା ଯେ, ବାଞ୍ଛାବତୀ (କନ୍ୟା) ଅଟ୍ଟାଳିକାର ବାହାରକୁ ଯାଇପାରିବ ନାହିଁ ଏବଂ ସେ ପୁରୁଷର ହସ୍ତ ଧରିବା ମାତ୍ରକେ ପ୍ରାଣତ୍ୟାଗ କରିବ ଓ ପରଜନ୍ମରେ ସେହି ପୁରୁଷକୁ ସ୍ୱାମୀରୂପେ ପାଇବ । ଏହି ସମୟରେ ପ୍ରଭାକର ନାମକ ଜଣେ ରାଜକୁମାର ସେହି ବନରେ ଘୋର ତପସ୍ୟା କରୁଥିଲେ । ଉତ୍ତମ ନାରୀର ପାଣିଗ୍ରହଣ କରିବା ତାଙ୍କର ଅଭୀଷ୍ଟ ଥିଲା । ତପସ୍ୟା ସିଦ୍ଧ ହେବାପରେ ସେ କେଦାରେଶ୍ୱରଙ୍କ ଦର୍ଶନପାଇଁ ଯାଉ ଯାଉ ବଣରେ ବାଞ୍ଛାବତୀଙ୍କ ଉପରେ ତାଙ୍କର ଦୃଷ୍ଟି ପଡ଼ିଲା । ସେ ସୁନ୍ଦରୀଙ୍କର ରୂପଲାବଣ୍ୟରେ ମୁଗ୍ଧ ହେଲେ । ବାଞ୍ଛାବତୀ ମଧ ପ୍ରଭାକରଙ୍କୁ ଦେଖି ମୁଗ୍ଧ ହେଲେ । ଦୁହେଁ ହାତ ମିଳାଇବା ସଙ୍ଗେ ସଙ୍ଗେ ପାର୍ବତୀଙ୍କ ଆଜ୍ଞା ଅନୁସାରେ ବାଞ୍ଛାବତୀଙ୍କ ଜୀବନବାୟୁ ଉଡ଼ିଗଲା । ସେ ସମୟରେ ଆକାଶରୁ ବାଣୀ ଶୁଭିଲା ଯେ, ବାଞ୍ଛାବତୀଙ୍କୁ ଦାହ କରନାହିଁ । ତୁମେ ଗଙ୍ଗାରେ ଝାସ ଦେଲେ ପର ଜନ୍ମରେ ତାଙ୍କୁ ସ୍ତ୍ରୀ ରୂପେ ପାଇବ । ସେ ପରଜନ୍ମରେ କର୍ଣ୍ଣାଟି ଶେଖରଙ୍କ ପୁତ୍ର ରୂପେ ଜନ୍ମହେଲେ । ତାଙ୍କର ନାମ ହେଲା ଚନ୍ଦ୍ରଭାନୁ । ସିଂହଳ ଦେଶର ରାଜବଂଶରେ ବାଞ୍ଛାବତୀ ଜନ୍ମଗ୍ରହଣ କଲେ । ତାଙ୍କର ନାମ ହେଲା ଲାବଣ୍ୟବତୀ । କବି ଲୋକନାଥ ଦାସଙ୍କ ସର୍ବାଙ୍ଗସୁନ୍ଦରୀ ବହିଟିରେ ମଧ ବର୍ଣ୍ଣିତ ହୋଇଅଛି ଯେ, ଏକ ସମୟରେ ହରଗୌରୀ କୌତୁକବଶତଃ କୁସୁମକାନନରେ ଭ୍ରମଣ କରୁ କରୁ ଦେଖିଲେ ଯେ, ମୁନିଜନମାନେ ଗହନ କାନନରେ ତପସ୍ୟାରତ ଅଛନ୍ତି । ସେମାନଙ୍କୁ ଦେଖି ପାର୍ବତୀଙ୍କୁ ହର କହିଲେ ଯେ, ଜଗନ୍ମୋହିନୀ ରୂପଧରି ଏମାନଙ୍କ ତପସ୍ୟା ଭଙ୍ଗ କର । ପାର୍ବତୀଙ୍କ କଟାକ୍ଷରୁ ଜଣେ ପରମ ରୂପବତୀ କନ୍ୟା ଜାତ ହେଲା । ସେ ଯୁବତୀର ନାମ ହେଲା ସ୍ମରଅପାଙ୍ଗୀ । ଏହି ସମୟରେ ଅସମୟରେ ବସନ୍ତଋତୁର ଆବିର୍ଭାବ ହେଲା । ଜ୍ଞାନ ଅଙ୍କୁର ନାମକ ଜଣେ ଯୋଗୀଙ୍କ ଚକ୍ଷୁ ଏ ରୂପବତୀ ଉପରେ ପତିତ ହୁଅନ୍ତେ ସେ ତତ୍‌କ୍ଷଣାତ ଯୋଗଭ୍ରଷ୍ଟ ହେଲେ । ଯୋଗୀ ନିଜର ଚୈତନ୍ୟ ଲାଭ କରିବା ପରେ ନିଜର ଦୋଷ ବୁଝିପାରି ହରଙ୍କୁ ସ୍ତୁତି କଲେ । ହର ପ୍ରସନ୍ନ ହୋଇ କହୁଛନ୍ତି :—

ରତ୍ନମାଳା କଟକ ନରେଶର,
ନାମ ସୁରତ ଶିରୋମଣି ତାର ।

ତାର ବନିତା ଲାବଣ୍ୟ ଜଳଧି
ଦେଖି ବଶ ହୋଇବେ ଇନ୍ଦ୍ରବିଧି ।
ତାଙ୍କ କୁମର ହୋଇ ଜ୍ଞାନାଙ୍କୁର
ମହିମଣ୍ଡଳେ ହୁଅ ଅବତାର ।
ନାମ ହେବ ତୋ ଅବନୀ ତିଳକ,
ଦେଖି ବଶ ହୋଇବେ ତିନିଲୋକ ।
ଏହି ସ୍ମର ଅପାଙ୍ଗୀ ଏବେ ଯାଉ,
ତୋର ପ୍ରାଣ ବଲ୍ଲଭୀ ହୋଇଥାଉ ।
ରସ ତରଙ୍ଗ ନାମେ ଏକ ଦେଶ,
ପୁଷ୍ପଧନୁ ନାମ ତହିଁ ନରେଶ ।
ରସବତୀ ନାମ ତାର ବନିତା
ଏଯେ ହୋଇବ ତାହାର ଦୁହିତା ।

କବିସୂର୍ଯ୍ୟ ବଳଦେବ ରାୟଗୁରୁଙ୍କ ''ଚନ୍ଦ୍ରକଳା'' ଗ୍ରନ୍ଥରେ ମଧ ନାୟକ ଓ ନାୟିକାଙ୍କ ପୂର୍ବଜନ୍ମ ବୃତ୍ତାନ୍ତ ଏହି ଢଙ୍ଗରେ ବିବୃତ ହୋଇଅଛି । ଏକଦା ସ୍ୱର୍ଗରେ ସୁର ନର କିନ୍ନର ଓ ଦେବମାନଙ୍କ ସମ୍ମୁଖରେ—

ଲାବଣ୍ୟ ଧ୍ୱଜି ନାମ ଗନ୍ଧର୍ବ ବର ଯେ
କେଳି ମଞ୍ଜୁଳା ନାମ ମହିଳା ସାଥେ
ଘେନି ମୋହନା ନାମ ବିପଞ୍ଚି ହାଥେ
ପ୍ରବେଶ ହୋଇ ଦିବ୍ୟ ସଂପଦ ସ୍ଥଳେ
ଦମ୍ପତି ଶିରେ କର ଯୋଡ଼ିବା ବେଳେ ଯେ
ଏକାବେଳକେ ସଭା ନେତ୍ରମଣ୍ଡଳୀ
କଲା ସେ ଯୁବତୀର ଉପରେ କେଳିଯେ ।

ଏହି ଅବସ୍ଥା ଦେଖି ଦେବତାମାନେ ବିମୁଖ ଓ କୁପିତ ହେଲେ । ଦେବତାମାନେ ଶାପ ଦେଲେ ଯେ, ରଥାଙ୍ଗ ମିଥୁନପରି ତୁମ୍ଭେମାନେ ଶ୍ରୀହୀନ ଓ ପରସ୍ପର ବିଚ୍ଛିନ୍ନ ହୋଇଯାଅ । ଗନ୍ଧର୍ବ ଓ ତାର ସ୍ତ୍ରୀ ଦେବତାମାନଙ୍କୁ ସ୍ତୁତି କରିଥିଲେ । ସେମାନେ ପ୍ରସନ୍ନ ହୋଇ କହିଲେ—

''ନୃଲୋକେ ରବିଭାବ ବାହୁଜି କୁଳେ
ଜନକ ଜନୟିତ୍ରୀ ତପସ୍ୟା ବଳେ ଯେ ।
ବଦାନ୍ୟ ବିଶାରଦ ସୁରସୁନ୍ଦର
ହୋଇ ହୋଇବୁ ମହାରାଜ କୁମାର ଯେ ।

ଏଥୁ ଅଧିକ ଶୋଭା ଗୁଣକୁ ଧରି
ତୋ ରାମା ହେବ ଚକ୍ରବର୍ତ୍ତୀ କୁମାରୀ ଯେ ।''

ଏହି ଗନ୍ଧର୍ବ ଲାବଣ୍ୟଧ୍ୱଜ ପରେ କାମରୂପ ଦେଶର ନୃପକୁମର ଅନଙ୍ଗ ସୁନ୍ଦର ରୂପରେ ଓ କେଳି ମଞ୍ଜୁଳା ଚନ୍ଦ୍ରକଳା କାବ୍ୟର ନାୟକ ନାୟିକା ।

ଏହାଛଡ଼ା ଆଉ ଅନେକ ପ୍ରାଚୀନ ଅପ୍ରକାଶିତ ଓ ପ୍ରକାଶିତ କାବ୍ୟ ଅଛି । ଯେଉଁଥିରେ କି ନାୟକ ନାୟିକା ମାନଙ୍କର ପୂର୍ବଜନ୍ମ ବୃତ୍ତାନ୍ତ ବର୍ଣ୍ଣିତ ହୋଇଛି । ଏହି ରୀତି ହେଲା ପୂର୍ବକାଳରେ କାବ୍ୟ ରଚନାର ଏକ ଛାଞ୍ଚ । ଏହି କଳାର ପ୍ରଧାନ କାରିଗର ହେଉଛନ୍ତି କବିଗୁରୁ ଉପେନ୍ଦ୍ରଭଞ୍ଜ । ସିଂହଳ ଦ୍ୱୀପରେ ରତ୍ନେଶ୍ୱର ବୋଲି ଜଣେ ରାଜାଥିଲେ । ତାଙ୍କର ପଟ୍ଟମହିଷୀ ବିଦ୍ୟୁଲ୍ଲତାଙ୍କର ପଞ୍ଚପୁତ୍ର ଥିଲେ । ସେ ରାଜକୁମାରୀ କାମନାରେ ଚୈତ୍ର ମଙ୍ଗଳବାର ପଞ୍ଚମପାଳି ପୂଜା ଉଦ୍‌ଯାପନ କଲେ । ଅମ୍ବିକା ପ୍ରସନ୍ନ ହୋଇ ତାଙ୍କୁ ଗୋଟିଏ ଆମ୍ବ ଦେଲେ । ମହିଷୀଙ୍କ ନିଦ୍ରାଭଙ୍ଗ ପରେ ହାତରେ ଆମ୍ବ ଦେଖି ତାକୁ ରାଣୀ ଭୋଜନ କରି ଗର୍ଭବତୀ ହେଲେ । ଦଶମ ମାସରେ ଲାବଣ୍ୟବତୀଙ୍କର ଜନ୍ମହେଲା । କବି ଲେଖିଛନ୍ତି—

ଧାତ୍ରୀ ଧରିତ୍ରୀଭୂଷାକୁ ନାଭିଚ୍ଛେଦ କରି
କ୍ଷଣକ ଗଣେ ବସିଣ ଜାତକ ବିଚାରିଯେ
ସୂତିକା ଗୃହରେ ଯେତେ ବିଧିଶେଷ କଲେ
ଦଶବିଂଶ ଦିନେ ଦୋଳି ଶୟନ ବିହିଲେ ଯେ ।

ପୁଣି —

ଦିନୁଦିନ ଶୋଭାବୃଦ୍ଧି ନରେନ୍ଦ୍ର କୁମାରୀ
କେତେଦିନେ ଉଭା ଭିତ୍ତି ଧରି ବିମ୍ବାଧରୀ
କରି ଗମନରେ ପୁଣି ମହୀଶୋଭା କରି ଯେ
ରଜନୀକର ବଦନା ରଜନୀ କରରେ ଯେ
କରଇ ଖେଳ ରଚନା ଶିଶୁଙ୍କ ସଙ୍ଗରେ ଯେ
ରବିରଥ ରଖେ ବଶହୋଇ ତା ସୁଷମେ
ଏଣୁକରି ଦୀର୍ଘଦିନ ଜାଣିଲି ଗ୍ରୀଷମେ ଯେ ।

ଭକ୍ତକବିମାନେ ମଧୁର ରସ ଦ୍ୱାରା କେବଳ ଭଗବାନଙ୍କର ସେବା କରି ଯାଇଛନ୍ତି । ତାହା ସାଧାରଣ ଲୋକ ବୁଝିପାରିବେ ନାହିଁ । ଏମାନଙ୍କୁ ସାଧାରଣ ଲୋକମାନେ ଅଶ୍ଳୀଳ ବୋଲିବେ । ଭଗବାନଙ୍କର ଐଶ୍ୱର୍ଯ୍ୟ ସମ୍ବନ୍ଧରେ ଅଭିଜ୍ଞତା ନଥିବାରୁ କାରଣ ସେ ହେଉଛନ୍ତି ରସାନନ୍ଦ । ସେଥିନେଇ ଉପନିଷଦ ରସୌ ବୈ,ଶଃ ।



# ବାଘମାରି ପୁନେଇଁ ଖିଆ

ବାଘ ଡରରେ ସବୁ ବିଲୁଆତ ଯାଇଁ ଗାତରେ ଲୁଚିଲେ । ବୁଢ଼ା ବିଲୁଆକୁ ବାଘ ଧରିନେଇ ଘଟିକି ଗଲା । ବାଘର ସେତେବେଳେ ଭାରି ରାଗ ବୁଢ଼ା ବିଲୁଆ ଉପରେ କିନ୍ତୁ ଯେତେହେଲେ ଭଣଜାଟାଏ ତ ତାକୁ କ'ଣ ଆଉ ମାରିପକେଇବ । ସେଥିପାଇଁ ବାଘ କ'ଣ କଲାନା ବୁଢ଼ାକୁ ଗୋଟାଏ ଅଖା ଭିତରେ ପୂରାଇ ବାନ୍ଧି ବୁନ୍ଧି ଘରେ ରଖି ଦେଇ ଶିକାରକୁ ଗଲା ବାହାରି ।

ଘରେ ଆଉ କେହ ନାହାନ୍ତି । ଏକା ବାଘ ମା ବୁଢ଼ୀ ଗୋଟିଏ କଣରେ ଚୁପ ହୋଇ ପଡ଼ିଛି । ବୁଢ଼ା ହୋଇଗଲାଣି । ତା ଆଖିକୁ ବି ଆଉ ଏଣିକି ଦିଶୁନାହିଁ । ସେଥିପାଇଁ ସେ କିଛି ଦେଖି ପାରିଲା ନାହିଁ । ବିଲୁଆ ଯହୁଁ ଦେଖିଲା ଘରେ କେହି ନାହାନ୍ତି, ସେ କଣ କଲା ନା ଆସ୍ତେ ଆସ୍ତେ ଅଖା ଭିତରେ ବସି ଟୁକୁ ଟୁକୁ କରି ଅଖାକୁ କାଟିଲା ।

ବାଘୁଣୀ ବୁଢ଼ୀତ ଏଣେ କଣରେ ବସିଛି । ଖୁଡୁ ଖୁଡୁ ଶୁଣି ସେ ପଚାରିଲା; କିଏ ସେ ?

ବିଲୁଆ କହିଲା; ନାହିଁ କେହି ନାହିଁ ଆଇ, ମୁଁ ତୋ ନାତୀ । ବୁଢ଼ୀ ପଚାରିଲା; ତୁ ବାପ ସେଠି କଣ କରୁଛୁ କି ? ପୁଅତ ଘରେ ନାହିଁ । ଆସିଲେ ଫେର କଣ ବୋଲି କଣ କହିବ । ତୁ ପଳେଇଯା ଏଠୁ ।

ବିଲୁଆର ତ ସେଇଇଚ୍ଛା କେମିତି ପଳେଇଗଲେ ରକ୍ଷା । କିନ୍ତୁ ଇଆଡ଼େ ତ ଅଖା ଭିତରେ ପଶି ବନ୍ଧା ହେଇଛି, ପଳେଇ ଯାଉଛି ଏବେ କେମିତି ? ସେତକି ବେଳୁ ତାକୁ ଗୋଟାଏ ବୁଦ୍ଧି ଦିଶିଗଲା । ସେ କାନ୍ଦ କାନ୍ଦ ହୋଇ କହିଲା । ଆଇ– ମତେ ସିନା କହୁଚ ପଳେଇଯିବାକୁ ମୁଁ ଭଲା ପଳେଇଯିବି । ହେଲେ ତୋରି କଥା ଭାବି ଭାବି ମୋର ଭାରି ମନ ଖରାପ ହଉଚି । ବୁଢ଼ୀ ପଚାରିଲା– କାହିଁକିରେ ବାପ ? କଣ ହେଲା କହୁନଉଁ ? ବିଲୁଆ କହିଲା; କଣ କହିବି ଲୋ ଆଇ, କାଲି ସକାଳୁ ଏ ବଣକୁ ବାଘ-ମରା ଆସିବେ । ଏ ବଣ ଗୋଟାକ ଯେତେ ବାଘ ଆଉ ବିଲୁଆ ସଭିଙ୍କି ମାରି ଅଖାରେ ପୂରାଇ ନେଇଯିବେ । ସେଇଥିପେଇଁ ଦେଖୁନଉଁ ମାମୁଁ, ମାଇଁ ଆଉ ତା ପିଲା ପିଲିଙ୍କି ନେଇ ବଣରେ ଛାଡ଼ି ପଳେଇଗଲାଣି । ମତେ ବି ଗୋଟାଏ ଅଖାରେ ପୂରେଇ ଥୋଇ ଯାଇଛି ଯିମିତି ବାଘମାରୁମାନେ ମତେ ଆଉ ଦେଖି ପାରିବେ ନାହିଁ ।

ଯା ଶୁଣି ବୁଢ଼ୀର ତ ପିଳେଇ ପାଣି । ସେ କହିଲା, ହଁରେ ପୁତ ମୋ କଥା କିଛି କହୁନଥିଲା ।

ବିଲୁଆ କହିଲା; ହଁ ଆଈ ତୋର କ'ଣ ଆଉ ସେ ଆଗ ବଳବୟସ ଅଛି ଯେ ତତେ ପଚାରିବେ ? ମୁଁ କହିଲି ମାମୁଁ ମୋର ଗୋଟାଏ ରାଜା ହେଲା ଆଈ ବୁଢ଼ୀ ଫେର କଣ କରିବ ? ମାମୁଁ କହିଲା ସେତ ବୁଢ଼ୀ ହୋଇଗଲାଣି ତାକୁ ବାଘମରା ନଉ ।

ବୁଢ଼ୀ ଯା ଶୁଣି ଥରି ଥରି କହିଲା; ମୋ ବାପ, ମୋ ଧନ; ତୁ ପରା ମୋ ନାତିଟା । ମୋର ଗୋଟାଏ କିଛି ବଞ୍ଚିବା ପାଞ୍ଚ କହ ନଇଲେ ମୁଁ ମଲି । ତୋ ପରା ନାତି ଥାଉଁ ଥାଉଁ ମୁଁ ମଲେ କଣ ଲୋକେ ଭଲ କହିବେ ?

ବିଲୁଆତ ଖୋଜୁଥିଲା ସେଇଆ । ସେ ସାକୁଲେଇ ସାକୁଲେଇ କହିଲା; ଆଈ ମୁଁତ ସେତିକି ବେଳୁ ତୋର କଥା ଭାବୁଚି ବସି । ଆଚ୍ଛା କିଛି ପରୁଆ କରନା । ଗୋଟିଏ କଥା କରିବୁ ଯେବେ ତୁ ଏକା ବଞ୍ଚିଯିବୁ ବାଘମରାଙ୍କ ହାତରୁ ।

ବୁଢ଼ୀ ପାଖକୁ ଘୁଞ୍ଚି ଆସି କହିଲା; କଣ କଣ କହିଲୁରେ ପୁତ । ତୁ ଯାହା କହିବୁ ମୋର ସେଇଥିରେ ରାଜି ।

ବିଲୁଆ କହିଲା; ମତେ ଏ ଅଖାରୁ ବାହାରକରି ଦେ କି ତୁ ନିଜେ ଏଇ ଅଖା ଭିତରେ ପଶ । ମୁଁ ଯେତେହେଲେ ଛୋଟ ଜନ୍ତୁ । ବାଘମରା ଆସିଲେ ମାଇପିଟା ତୁ'କଣ ଆଉ ମୋପରି ଗାତରେ ପଶି ପାରିବୁ ! ନା ଆଖିକି କିଛି ଦିଶୁଚି ଯେ ମାମୁଁପରି ପଳେଇଯିବୁ ? ତୋର ଏ ଅଖାରେ ପଶିବା ଛଡ଼ା ଆଉ ବାଟ ମତେ ଦିଶୁନାହିଁ ।

ବୁଢ଼ୀ ବାଘୁଣୀ ସେଉଠୁ ଜୀବନ ବିକଳରେ ଦରାଣ୍ଡି ଦରାଣ୍ଡି ଯାଇ ବିଲୁଆର ଅଖା ଦଉଡ଼ି ଦାନ୍ତରେ କାଟି ଦେଲା । ବିଲୁଆ ପଦାକୁ ବାହାରି ଆସି ବୁଢ଼ୀକୁ ଅଖା ଭିତରେ ପୂରାଇ ଅଖା ମୁହଁ ଆଚ୍ଛାକରି ବାନ୍ଧିଲା ତାପରେ ବୁଢ଼ୀକି, କହିଲା; ଦେଖ ଆଈ ତୁ ଏ ଅଖା ଭିତରେ ତୁନି ହୋଇ ମଲାଙ୍କପରି ପଡ଼ିଥା । ଟିକେ ଖୁଡ଼୍ ଖାଡ଼୍ ହବୁନାଇଁଟି । ବାଘମରା ଆସି ତତେ ଯେତେ ଗଡ଼େଇବ କି ପିଟିବ ଉଁ କି ଚୁଁ ପାଟି ଫିଟେଇବୁ ନାହିଁ । ତୁନିହୋଇ ପଡ଼ିଥିବୁ । ସେବି ମଲାବୋଲି ତତେ ଛାଡ଼ି ଚାଲିଯିବ ଯେ, ବୁଝିଲୁ ଆଈ ?

ବୁଢ଼ୀ ବାଘମରା ଡରରେ ଥରି ଥରି ଅଖା ଭିତରୁ ଯବାବ ଦେଲା; ହୁଁ ।

ବିଲୁଆ ସେଉଠୁ ବାଘମାମୁଁର ଯେତିକ ଶିକାର ଘରେ ଥିଲା ସବୁ ମଜାକରି ପେଟେ ଖାଇ ପିଇ ତା ଘର ଯାକ ହଗିମୂତି ହେଣ୍ଡି ମାରିଛୁ ।

ବାଘୁଣୀ ବୁଢ଼ୀତ ବାଘମରା ଡରରେ ସେମିତି ତାଟଙ୍ଗାହେଇ ପଡ଼ିଛି । ଏଣେ ବାଘ ବଣଯାକ ବୁଲି ବୁଲି କୋଉଠି ଶିକାର ନପାଇ ସଞ୍ଜ ବେଳକୁ ବସାକୁ ଫେରିଲା । ଏବେ

ଶିକାର ନପାଇ ତାର ହୋଇଥିଲା ଭାରି ରାଗ । ସେଥିରେ ଅନ୍ଧାରରେ ବାଘୁଣୀ ବୁଢ଼ୀକୁ ଝୁଣ୍ଟି କଚାଡ଼ି ହୋଇ ପଡ଼ିଲା । ଆଉ ଯାଏ କୁଆଡ଼େ । ଗୋଟିଏ ଠେଙ୍ଗା ଆଣି ଅଖାମିଶା ତା ମାଆକୁ ବିଲୁଆ ମନେକରି ଲଗେଇଲା ଦମା ଦମ୍ ପାହାର । ବୁଢ଼ୀବି ଜାଣିନେଲା; ଏଇରେ ବାଘ-ମରାତ ଆଇଲାଣି । ସେଥିପାଇଁ ସେ ମାଡ଼ ଖାଇ ଊଁ ଚୁ ପାଟିବି ଫିଟେଇଲା ନାହିଁ । କାଳେ ବାଘମରା ଜାଣିବ ଆରେ ଏଟାତ ଜୀଇଁଚି । ମାଡ଼ ଖାଇ ସେ ମଲାଙ୍କପରି ପଡ଼ିଚି ।

ବାଘଦେଖି କାବାହେଲା । ମଲା ଏତେ ମାଡ଼ ଦେଲି ବିଲୁଆଟାର ଟିକେ ସୋର ଶବଦ ନାଇଁଯେ । ମାଡ଼ ଖାଇ ଆଉ ମରିଗଲା କି ? ଯା ବିଚାରି ଡାକିଲା; ଭଣଜା, ଭଣଜା ।

ପୁଅ ପାଟିଶୁଣି ବୁଢ଼ୀ ଟିକେ ସାଷ୍ଟାମ ହେଲା । ଦମ୍ଭଧରି କହିଲା; ନାଇଁରେ ପୁତ ମୁଁ ।

ବାଘ ତ କାବା ! ତରବରରେ ଅଖା ଫିଟେଇ ଦେଖିଲା; କାହିଁ ବିଲୁଆକୁ ଅଖାରେ ପୂରେଇ ଯାଇଥିଲା ନା, ମା କୁଆଡ଼େ ଏଥିରେ ପଶିଲା ?

ମା ପୁଅ ଦୁହେଁ ନିଶ ଘଷା ଘଷି ହୋଇ ବହୁତ ବେଳଯାଏ କାନ୍ଦିଲେ । ତାପରେ ବାଘ ରାଗରେ ନିଶ ଫୁଲେଇ କହିଲା; ହଇଲୋ ମା ତତେ ଏତେ ସରି କିଏ କଲା ? ବୁଢ଼ୀ ଦିହମୁଣ୍ଡ ଆଉଁସି ଆଉଁସି ସବୁକଥା ପୁଅ ଆଗରେ କହିଲା । ବାଘର ଏହା ଶୁଣି ଯେ ରାଗ ହେଲା ସତେକି ବିଲୁଆକୁ ପାଇଲେ ସେଇଠି କଞ୍ଚା ଚୋବେଇ ଯିବ ।

ଏତିକି ବେଳକୁ ଗୋଟାଏ ଗହଳିଆ ବୁଦାମୂଳୁ ବୁଢ଼ା ବିଲୁଆ ବାହାରି ହସି ହସି କହିଲା, ମାମୁଁ ଆଉ ରାଗିଲେ କଣ ହେବ; ଆଇକି ଆଜି ଯେ ପୁନେଇଁ ଖିଆଟା ଖୋଇଲ ମଲାଯାଏ ତାର ମନରେ ଥିବ ଯେ ।

ବାଘ ଯା ଶୁଣି ଯେମିତି କୁଦା ମାରିଛି ତାକୁ ଧରିବବୋଲି ବିଲୁଆ ଖୁସ୍‌କିନି ଗୋଟାଏ ଗାଡ଼ରେ ଗଳିଗଲା । ବିଲୁଆକୁ ଧରି ନପାରି ବାଘ ମୁଣ୍ଡକାନ ଆଉଁସି ଘରକୁ ଫେରିଲା । ସେଇଦିନୁ ବିଲୁଆ ଜାତିଟା ଉପରେ ହେଲା ତାର ଭାରି ରାଗ ।



# କଳ୍ପିତ ମୃତ୍ୟୁ

ରାମିଆ ଘର କେଉଁଠି,କେତେଦିନ ହେଲା ଗୋବିନ୍ଦପୁରରେ ଅଛି; କେହି ଜାଣନ୍ତି ନାହିଁ । ସେଠାର ବୁଢ଼ା ବଛା ବଛା ଲୋକମାନେ କହନ୍ତି; ରାମିଆକୁ ଆମ୍ଭେମାନେ ପିଲାଦିନୁ ଦେଖିଛୁ । ନଈକୂଳରେ ଗୋଟିଏ ଜୀର୍ଣ୍ଣ ମନ୍ଦିର ସଂଲଗ୍ନ ଗୋଟିଏ କୁଟୀରରେ ସେ ଅନେକ ଦିନୁ ରହିଯାଇଛି । ଘର ଗୁଡ଼ିକ ପଡ଼ି ଯାଇଛି । ଉପର ଚାଟି ଖଣ୍ଡିକ ଅତି କଷ୍ଟରେ ପଡ଼ ପଡ଼ ଅବସ୍ଥାରେ ଶୀର୍ଣ୍ଣ, ଖଣ୍ଡେ ବାଉଁଶ ଉପରେ ଭାର କରିଅଛି । ରାମ ସାହାଣୀକୁ କେହି କେବେ ରୋଜଗାର କରିବା କିମ୍ୱା ଭିକ୍ଷା ଗ୍ରହଣ କରିବା ଦେଖି ନାହାନ୍ତି । ସେ କିପରି ଜୀବନଯାତ୍ରା ନିର୍ବାହ କରେ, ଏ କଥା ନେଇ ନାନା ରକମର ତର୍କ ବିତର୍କ ଲାଗେ । କିଏ କହେ ସଞ୍ଚୟ କରିଛି, କିଏ କହେ ଗୋପନରେ ଭିକ୍ଷାକରେ ସେଥିରେ ଚଳେ । ବର୍ତ୍ତମାନ ଆଉ ସେ ସମ୍ବନ୍ଧରେ ଆଲୋଚନା ଶୁଣାଯାଏ ନାହିଁ । ତାକୁ ପଚାରିଲେ କୁହେ ମୋ ବୟସରେ କଣ ଗଛ ପତର ଅଛି ? ତେବେ ତା ଚେହେରା ଦେଖି ବୋଧ ହୁଏ ୬୦ବର୍ଷରୁ ଅଧିକ । ସେ ବେଶ୍ ବଳିଷ୍ଠ, ବେଶି ଦୀର୍ଘ ବା ବେଶି ଫର୍ଚ୍ଚା ନୁହେଁ । ବିଶାଳାୟତ ବକ୍ଷ, ଏବଂ ସୁଦୃଢ଼ ପେଶୀଯୁକ୍ତ ବାହୁ ଦେଖି, ତାର ଏତେ ବୁଢ଼ାଏ ବୟସ ବୋଲି ମନେହୁଏନା । ସେ ଅତ୍ୟନ୍ତ ପରୋପକାରୀ, ମୃତ ସଂସ୍କାରରେ ସେ ସିଦ୍ଧହସ୍ତ, ଯେଉଁ ଜାତି ହେଉ ପଛକେ ରୋଗୀ ଶୁଶ୍ରୁଷାରେ ସେ ସମସ୍ତଙ୍କର ଅଗ୍ରଣୀ । ସେ ପରିବେଷଣରେ ଅକୁଣ୍ଠିତ, (ଅଷ୍ଟପ୍ରହର ପରବେଷଣ କରିବାକୁ ସେ କୁଣ୍ଠିତ ହୁଏ ନାହିଁ) ଏବଂ ସେ ପଶାରେ ଅଜେୟ । ଯେଉଁ କାର୍ଯ୍ୟ ବିପଦ ଶଙ୍କୁଳ,ଯେଉଁ କାର୍ଯ୍ୟରେ ସମାଜର କୌଣସି ଲୋକ ଅଗ୍ରସର ନହୁଅନ୍ତି ସେ କାର୍ଯ୍ୟରେ ଆଗେ ସେ ଅଗ୍ରସର ହୁଏ । ସେ ଅତ୍ୟନ୍ତ ଚରିତ୍ରବାନ୍, ଗୋବିନ୍ଦପୁର ଗାଁରେ ବୋହୁ ଝିଅ ରାମସାହାଣୀକୁ ଚିହ୍ନନ୍ତି ଓ ସମ୍ମାନ ପ୍ରଦର୍ଶାନ୍ତି । ସେ ଗାଁର ଅସତ୍ ଚରିତ୍ରଦଳ ଭୟ କରନ୍ତି, କାରଣ ସେମାନେ ଜାଣନ୍ତି ରାମ ହାତରେ ପଡ଼ିଲେ ସେମାନଙ୍କର ନିସ୍ତାର ନାହିଁ । ବେଶ୍ୟାପଲ୍ଲୀ ଦେଇ ସେ ଗଲେ ଭୟରେ ଗଣିକାଗଣ କବାଟ କିଳନ୍ତି । ସେ ବେଳେ ବେଳେ ଭାବେ, ମୁଁ ତ କାହାକୁ କିଛି କୁହେଁ ନା କି ଅନିଷ୍ଟ କରେ ନା ତେବେ ଏମାନେ ଏତେ ଭୟକରନ୍ତି କିପାଇଁ ? ପାପୀମାନେ ସମ୍ଭବତଃ ନିଷ୍ପାପୀଙ୍କୁ ଡରନ୍ତି । ଏତେ ଗୁଣ ଭିତରେ ସାହାଣୀର ଗୋଟିଏ ଦୋଷ ଥିଲା ଯେ ସେ ଗଞ୍ଜେଇ ଖାଏ କିନ୍ତୁ ଗଞ୍ଜାଖୋର

ନୁହେଁ । ସେ ଯେତେବେଳେ ତାର କ୍ଷୁଦ୍ରକୁଟିରାଭ୍ୟନ୍ତରେ ଗଞ୍ଜିକା ସେବନ କରେ ସେତେବେଳେ ରାମଭାଇ ବାମିଆ ଅଜା ସାହାଣୀ ମହାରାଜ ସମ୍ବୋଧନକାରୀ ଗ୍ରାମ୍ୟ ନାଗରିକମାନେ କେତେକ କ୍ଷଣ ତାର ପ୍ରସାଦ ସେବନ କରନ୍ତି । ସେମାନେ ମାଦକ ଦ୍ରବ୍ୟରେ ବିଭୋର ହୋଇ ଏଣୁ ତେଣୁ ଗଳ୍ପ କରନ୍ତି । ଏହିପରି ରାମସାହାଣୀର ଦିନଗୁଡ଼ିକ ପାଣିପରି ଚାଲିଯାଏ । ସେଥିମଧ୍ୟରୁ ଗଳ୍ପ କରୁ କରୁ କେହି ପର ନିନ୍ଦା କଲେ ରାମ ସେଥିରେ ବାଧାଦିଏ ଓ ସେ ଲୋକର ପ୍ରସାଦଟା ସମସ୍ତଙ୍କ ଶେଷରେ ପଡ଼େ । ସେତେବେଳେ ଦିନ ଦ୍ୱିପ୍ରହର ପକ୍ଷୀଗୁଡ଼ିକ ଘନ ବୃକ୍ଷରାନ୍ତରାଳରେ ଲୁଚିଅଛନ୍ତି । ଦିହିପହରିଆ ବାଆଗଛ ପତ୍ରରେ ଲାଗି ସିଂ ସିଂ ସ୍ୱରରେ ତପ୍ତ ବାଲୁକା କଣା ଘେନି କେଉଁଆଡ଼େ ଅଦୃଶ୍ୟ ହୋଇଯାଉଛି । ରଖୁଆଳ ଟୋକାଏ ମୁଣ୍ଡରେ ଛତାଦେଇ ଗୀତ ଗାଇବାରେ ବ୍ୟସ୍ତ । ଏ ସମୟରେ କରୁଣା ଗଉଡ଼ ଆସି ଡାକିଲା, ''ସାହାଣୀ ଆଜ୍ଞା ଅଛ କିହେ'' ସାହାଣୀ ଖାଉ ଖାଉ କହିଲା, ''ଦୁଆରେ ବସ, ମୁଁ ଖାଇକରି ଯାଉଛି'' କିଛିକ୍ଷଣ ପରେ ସେ ମୁହଁ ଧୋଇ ହାତ ପୋଛୁପୋଛୁ କହିଲା, ''କିରେ କଣ ହୋଇଛି କି'' କରୁଣା କାନ୍ଦୁଣିମାନ୍ଦୁଣି ହୋଇ କହିଲା– ଜମିଦାରଙ୍କର ଅତ୍ୟାଚାରରେ ଜାତିମାନ ରଖିବା ମୁସ୍କିଲ । ରାମ– ଜମିଦାର ଅତ୍ୟାଚାରୀ ! କେଉଁ ଜମିଦାର ମ ? ଓଃ ଆମ ଜମିଦାର ତ ନାବାଳକ, ବୟସ କମ୍ । କରୁଣା – ହଁ ହଁ ସେହି ମଦନବାବୁ; ହେଁଃ ଏପରି ବାପଠାରୁ ଏହିପରି କୁଳାଙ୍ଗାର ପୁତ୍ର ଜନ୍ମହୁଅନ୍ତି । ତାତ ମୁଁ ଜାଣେ ନା ! ରାମ ସେ କଣ କରିଛି ଖୋଲି କହ ନା, କରୁଣା– ଆପଣ ଜାଣନ୍ତି ମୋ ତ୍ରିସଂସାରରେ କେହି ନାହାନ୍ତି ମୋ ସ୍ତ୍ରୀ, ବିଧବା ଝିଅଟିଏ । ରାମ–ତା କଣ ମୁଁ ଜାଣେ ନାହିଁ । ଝିଅଟା ଆର ବର୍ଷ ବିଭାହେଲା ଯେ ବିଭାର ବର୍ଷେ ଗଲାନାହିଁ । ତାର କଣ ହୋଇଅଛି । କରୁଣା– ମଦନ ଜମିଦାର ପୁଅ ତ ଭାରି ଲାଗିଛି । ଝିଅଟା ବିଷ ଖାଇବାକୁ ଚାହେଁ । ରାମ–କିରେ କଣ ୟା, ଏତେକାଣ୍ଡ କରୁଛି ନା କଣ ? କରୁଣା– ହଁ ମତେ ଆଉ କିଛି ବୁଦ୍ଧି ଦିଶୁନାହିଁ । ଏହା ଶୁଣି ରାମସାହାଣୀ ଆଖିରୁ ଧକ୍‌ଧକ୍ ଅଗ୍ନିକଣା ବାହରିଲା ପରି ଜଣାଗଲା । ତାର ସର୍ବାଙ୍ଗ ରାଗରେ କମ୍ପିତ ହେବାକୁ ଲାଗିଲା, ସେ କହିଲା ଏଁ ଏଁ ଏତେବଡ଼ ଛାତି ମୁଁ ଥାଉଁ ଥାଉଁ ଗୋବିନ୍ଦପୁର ଲକ୍ଷ୍ମୀଗଣଙ୍କ ଉପରେ ଅତ୍ୟାଚାର । ହଉ ଜମିଦାର, ଏହାର ପ୍ରତିଶୋଧ ନେବାକୁହେବ । ମୋର ଜୀବନ ଯାଉପଛକେ ମୁଁ ତମମାନଙ୍କ ଉପକାର ଜୀଇଁ ଥିବାଯାଏ କରୁଥିବି । କରୁଣା ଭୀତ ହୋଇଗଲା, ଅପ୍ରତିଭ ହୋଇ ସେ କହିଲା– ଦରକାର ନାହିଁ ମୁଁ ଗାଁରୁ ଉଠିଯିବି । ଆଉ ଦିନେ ଦୁଧରେ ପାଣି ମିଶାଇଛି ବୋଲି ଧରିନେଇ ଯେଉଁମାଡ଼ ଦେଇଛି ମୋ ପିଠିରେ ଆଜିଯାକେ ଦାଗ ଅଛି ।

ରାମ ଆହୁରି ଉତ୍ତେଜିତ ହୋଇ କହିଲା ଯେ ପବିତ୍ର ସତୀତ୍ୱ ଭ୍ରଷ୍ଟ କରିବାକୁ ଚାହେଁ ସେ ରହିବ ? ତାକୁତ ଦୁନିଆରୁ ଉଠିଯିବାକୁ ହେବ । କୁକୁର ଭୟରେ ଜନ୍ମସ୍ଥାନରୁ ବାହାରି ଯିବୁ ତା ହବନାହିଁ ।

କରୁଣା—ଆସ୍ତେ କହ କେହି ଶୁଣିଲେ ମୋହର ଜୀବନ ରହିବ ନାହିଁ । ରାମ ହସି ହସି କହିଲା— ସେ ଭୟ ରାମ ସାହାଣୀ ରଖେ ନାହିଁ । ଉଲଗ୍ନର ଚୋରଭୟ କେଉଁଠି ହୁଏ କି ?

ଜାଣୁ—ରାମ ପ୍ରାଣଭୟ କାହାକୁ କହନ୍ତି ଜାଣେନାହିଁ ।

ଏମନ୍ତ ସମୟରେ ଗିରିଆ ଆସି ପହଞ୍ଚିଲା । ସେ ସମସ୍ତ କଥାଶୁଣି କହିଲା କଣ କଣ ? ରାମ ସାହାଣୀ କହିଲା, ଆ ଗିରିଆଭାଇ ଶୁଣିଯା, ମୁଁ କହୁଥିଲି କୁକୁର ଘୁଷୁଡ଼ି ଭୟକଲେ ସଂସାରରେ ରହିକି ଚଳିବ ନାହିଁ । ଗିରିଆ କହିଲା, କୁକୁର ବିଲୁଆ କାମୁଡ଼ିବାକୁ ଆସିଲେ ଭୟକରିବାର କଥା କିନ୍ତୁ ଯାହାର ବାଡ଼ି ଧରିବା ଶକ୍ତି ଅଛି, ତାର କି ଡର ? ରାମ ସବୁକଥା ଖୋଲି କହିଲା ହଁ ସେ ବଡ଼ଲୋକ, ତେବେ ଏକଥା ତାର ଅନ୍ୟାୟ ନୁହେଁ କଣ । ରାମ ପ୍ରଜ୍ୱଳିତ କୋପରେ କହିଲା, ସେ ବଡ଼ ବୋଲି କଣ ଧର୍ମ ନଷ୍ଟ କରିବ ? ଦେଶରେ କଣ ମନୁଷ୍ୟ ନାହିଁ, ବିଚାର ନାହିଁ, ଯଦି ନଥାଏ ରାମିଆ ଅଛି ତା ବାଡ଼ି ଅଛି । ସେ ମରିବାକୁ ଭୟ କରୁନାହିଁ । କରୁଣା, ତୁ ଚିନ୍ତା କରନାହିଁ, ଆଜିଠାରୁ ମୁଁ ତୋ ଘରେ ଶୋଇବି, ଗୋବର୍ଦ୍ଧନ ଧୀରେ ଧୀରେ ଚାଲିଗଲା । କରୁଣା ଗଉଡ଼ ତୁମ୍ଭେ ମୋର ଭରସା ଏହାକହି ଚାଲିଗଲା । ଗାଁଯାକ ହୁରି ହେଇଗଲାଯେ ରାମ ସାହାଣୀକୁ ଗୋବିନ୍ଦପୁର ଜମିଦାର ମଦନ ବାବୁ ଧରିନେଇଯାଇଅଛନ୍ତି । କାରଣ କେହି ଜାଣନ୍ତି ନାହିଁ କିନ୍ତୁ କାରଣଟା ଅତିରଞ୍ଜିତ କରି ଲୋକ ମୁଖରୁ ବାହାରୁଛି । କିଏ କହୁଛି ସେ ପକ୍କାଚୋର, ତାହା କୁଡ଼ିଆ ମଧ୍ୟରେ ଚୋରି ମାଲ ଥିଲା, କିଏ କହୁଛି ସେଇଥିପାଇଁତ ମୁଁ କୁହେଁ ସେ ଚଳେ କିପରି ? କେହି କହିଲା କରୁଣା ଗଉଡ଼ଘରେ ପଶିଥିଲା କରୁଣା ତାହା ନାମରେ ନାଲିସ୍ କରିବ ବୋଲି ତାକୁ ଧରିନେଇ ଯାଇଅଛି । ସେ ତାଲୁକର ସମସ୍ତେ ତାକୁ ଶ୍ରଦ୍ଧା କରନ୍ତି । ସେ ଯୋଗୁଁ ଅନେକ ଦୁଃଖିତ ହେଲେ । ଜମିଦାର ଘରେ ତା ସନ୍ଧାନ ନେବାକୁ ସାହସି ହେଲେ ନାହିଁ । କିଏ କଣ କରିବ ?

ପ୍ରାୟ ଏକ ସପ୍ତାହରେ ଗାଉଁଲିମାନେ ଦେଖିଲେ ଯେ ରାମସାହଣୀ ହସି ହସି ଗାଁ ରାସ୍ତାଦେଇ ଚାଲିଯାଉଛି । କେତେକ ଲୋକ ଡାକିଲେ କିନ୍ତୁ ସେ ଶୁଣିଲା ନାହିଁ । ସେ ତା କୁଡ଼ିଆ ଭିତରକୁ ଯାଇଁ ଆଚ୍ଛାକରି ଗଞ୍ଜେଇ ଖାଇଲା । କିଛିକ୍ଷଣ ପରେ କରୁଣା ଆସି କହିଲା ଆଜ୍ଞା ଅଲ୍ଲୀର କଣ ସନ୍ଧାନ ପାଇଲ । ରାମ ଗମ୍ଭୀର ସ୍ୱରରେ କହିଲା ତୋ ଘରେ ତୋ ଝିଅ

ଅଲ୍ଲୀ ଅଛି । ଯା ଦେଖିବୁ ତାକୁ କିଛି କହିବୁ ନାହିଁ । ସେ ସତ୍ୟଭ୍ରଷ୍ଟ ହୋଇନାହିଁ । କରୁଣା ତା କଥାରେ ଆଶ୍ୱସ୍ତ ହେଲା । କିନ୍ତୁ ତାର ମୁଖଭାବ ଦେଖି ଭୟରେ ଅବସନ୍ନ ହୋଇଗଲା । ରାମ ସାହାଣୀର ଏପରି ଚେହେରା କେବେ ସେ ଦେଖିନାହିଁ ଆଉ ମଧ କେହି ଦେଖିନାହାନ୍ତି । ସାହାଣୀ ଚକ୍ଷୁରୁ ଅଗ୍ନିକଣା ବାହାରୁଥିଲା । ରାମସାହାଣୀ କରୁଣାକୁ କହିଲା ଏଗାଁରେ ମନୁଷ୍ୟ ନାହାନ୍ତି, ଏ ଗାଁରେ ରହନା । ଯେଉଁଠାରେ ଜମିଦାର ନାହିଁ ଯେଉଁଠାରେ ଖାଲି ମନୁଷ୍ୟର ବାସ ଏବଂ ସ୍ୱାଧୀନତାର ଆଳୟ ସେଠିଯାଇ ରହ । କରୁଣା ଯିବାପରେ ସେହି ଥାନାର କେତେକ ସଶସ୍ତ୍ର ପୁଲିସ ଆସି ରାମସାହାଣୀକୁ ବାନ୍ଧି ନେଇଗଲେ । ସମସ୍ତେ ଦେଖି ଆଶ୍ଚର୍ଯ୍ୟ କାରଣ କେହି ଜାଣନ୍ତି ନାହିଁ । ପରେ ଶୁଣାଗଲା ଗୋବିନ୍ଦପୁର ଜମିଦାରକୁ କିଏ ମାରିପକାଇଛି । କ୍ଷଣପରେ ବାର୍ତ୍ତା ଆସିଲା ଯେ ରାମିଆ ମାରିଛି । ତାପରେ ଶୁଣାଗଲା କରୁଣା ଝିଅ ଧର୍ମ ରକ୍ଷାକରିବା ପାଇଁ ରାମିଆ ଜମିଦାର ମୁଣ୍ଡରେ ବାଡ଼ି ପିଟିଦେଇଛି । ଏ କଥାଶୁଣି ସମସ୍ତେ ଆନନ୍ଦିତ ହେଲେ । କିନ୍ତୁ ତାର ଭାବି ପରିଣାମ ଭାବି ସମସ୍ତେ ପ୍ରମାଦ ଗଣିଲେ । ବିଚାରରେ ରାମର ଫାଶୀହୁକୁମ୍ ହେଲା । ସେ ମୃତ୍ୟୁର ଅବ୍ୟବହିତ ପୂର୍ବେ କହିଲା ମଣିଷ ହୋଇ ଜନ୍ମ ହୋଇଥିଲି ମଣିଷପରି ମଲି । ମୋର ଏହି ମୃତ୍ୟୁ ମୃତ୍ୟୁ ନୁହେଁ ଏହିପରି ମରିବା ପାଇଁ ମୁଁ କଳ୍ପନା କରିଥିଲି । କରୁଣାଝିଅ ଅଲ୍ଲୀ ଗୟାଯାଇଁ ତାହାର ରକ୍ଷାକର୍ତ୍ତା ପିତା ସଦୃଶ ପିତାର ପିଣ୍ଡ ଦେଇଆସିଲା ।



# କମ୍ୟୁନିଷ୍ଟ ଇତିହାସ ଓ ଭାରତର ପଥ

ଡିସେମ୍ବର ୨୩, ୧୯୬୨ । ଆମେ ସୀମାନ୍ତରେ ଯେଉଁ ଯୁଦ୍ଧ କରୁଛୁ ତାହା ଅଧର୍ମ ନୁହେଁ–ଧର୍ମଯୁଦ୍ଧ । ଚୀନାମାନେ ଭାରତ ଦଖଲ କରିବାକୁ ଯୁଦ୍ଧ ଚଳେଇଛନ୍ତି । ବର୍ମା, ପାକିସ୍ଥାନ, ଦଖଲ କରିବା ମଧ ସେମାନଙ୍କର ଇଚ୍ଛା । ସେମାନେ ଦକ୍ଷିଣ ପୂର୍ବ ଏସିଆ ଦଖଲ କରି ଏକଛତ୍ର ଶାସନ କରି ରଜାହେବାକୁ ଚାହାନ୍ତି ।

ଚୀନ ଯଦି ଭାରତକୁ ଜିଣିବ, ତେବେ ଭାରତରେ ଗଣତନ୍ତ୍ର ରହିବ ନାହିଁ । ବ୍ୟକ୍ତିର ସ୍ୱାଧୀନତା ରହିବ ନାହିଁ । ସ୍ୱାଧୀନତା କାହାରି ରହିବ ନାହିଁ । ଭାରତର ସଂସ୍କୃତି ମଧ ରହିବ ନାହିଁ । ଯେଉଁ ଆଧାତ୍ମିକ ଜୀବନ ନୈତିକତା ପାଇଁ ଭାରତ ଲୋକେ ଶତାବ୍ଦୀ ଧରି ମୂଲ୍ୟଦେଇ ଜଗତବିଖ୍ୟାତ ହୋଇଛନ୍ତି ତାହା ମଧ ରହିବନାହିଁ । ଚୀନ ଯଦି ଭାରତ ଦଖଲ କରେ ତେବେ ଏସିଆ ମହାଦେଶ ଅନ୍ଧାର ହୋଇଯିବ । ଏସିଆରୁ ସବୁ ଦେଶ ଲୋକେ ଚୀନ ପାଦ ତଳେ ଖଟିବେ । ଚୀନ, କମ୍ୟୁନିଷ୍ଟମାନେ ଆମ ଦେଶ ସ୍ୱାଧୀନତା, ଧର୍ମ ଗଣତନ୍ତ୍ର ଏସିଆ ମହାଦେଶରୁ ନିଷ୍କାସନ କରିଦେବାକୁ ଚାହାନ୍ତି । ସେମାନେ ଦୁନିଆଁରେ ରାଜାହେବାକୁ ଚାହାନ୍ତି । ଆମେ ଯେ ସୀମାନ୍ତରେ ଲଢୁଛୁ, ଆମ ନିଜକୁ ବଞ୍ଚାଇବା ପାଇଁ ଆମ ଇତିହାସ ସଂସ୍କାର ଓ ଚରିତ୍ରକୁ ବଞ୍ଚାଇ ରଖିବାପାଇଁ ଆମେ ଯେ ଲଢୁଛୁ, ସମଗ୍ର ଏସିଆର ସ୍ୱାଧୀନତା ଓ ଜାତିମାନଙ୍କ ସମ୍ମାନ ରଖିବାକୁ ଲଢୁଛୁ । ଦୁନିଆକୁ ଅନ୍ଧାର କରି ଦେଶର ଲୋକଙ୍କୁ ମୃତକଳ୍ପ ପଶୁବତ ଯାନ୍ତ୍ରିକ ବର୍ବର ମୂର୍ଖ ମନୁଷ୍ୟରେ ପରିଣତ କରିଦେବା ଚୀନା ନୀତି ।

କମ୍ୟୁନିଷ୍ଟ ଜୀବନଧାରା କେବଳ ପୃଥିବୀକୁ ମିଛକଥା କହି ଧୋକାଦେଇ ଦଖଲ କରି କତିପୟ ଭୋଗସର୍ବସ୍ୱ ଲୋକ ତିଆରି କରିବା ସେମାନଙ୍କ ମତଲବ । ଚୀନାର କମ୍ୟୁନିଷ୍ଟ ଆଦର୍ଶ ଓ ନିଜ ଦେଶ ପରଦେଶ ଦଖଲ କରି ରାଜ୍ୟ ବଢ଼ାଇବା ଆଉ ଏକ ଆଦର୍ଶ । ଦିଓଟି ଭିତରେ ଆଦୌ ସାମଞ୍ଜସ୍ୟ ନାହିଁ । ନିଜ ଦେଶ ଲୋକଙ୍କୁ ସର୍ବହରା କରି ଅନ୍ୟଦେଶକୁ ସର୍ବହରା ରକ୍ତାକ୍ତ ବିକୃତ କରିବା ମୂଳରେ କ୍ଷମତା ଲିପ୍‌ସା ହିଂସା, ଈର୍ଷା, ପ୍ରତିଷ୍ଠା ଓ ଲୋଭହିଁ ସେମାନଙ୍କ ଭିତରେ କାର୍ଯ୍ୟ କରିଆସୁଛି । ଫାଙ୍କା ଆଦର୍ଶ ଓ 'ଧ୍ୱନି' 'ବକ୍ତୃତା' ତଳେ । ଯେଉଁ ଦେଶରେ କମ୍ୟୁନିଷ୍ଟବାଦ ରହିଛି ସେ ଦେଶକୁ ସତ୍ୟାନାଶ କାଙ୍ଗାଳ ପଶୁ କରାଯାଇଅଛି । ମାନବିକ ସବୁ ଭଲଗୁଣକୁ ନଷ୍ଟକରି ମନୁଷ୍ୟକୁ ବର୍ବର

ବିଚାରହୀନ ପଶୁ କରାଯାଇଛି । କାର୍ଲମାର୍କସଙ୍କ ଲିଖିତ ''ଭଲ'' ଓ ''ବିଚାର'' ଏକ ଫାଙ୍କା ଧ୍ୱନି । ଲୋକଙ୍କ ଆଖିରେ ଧୂଳି ଦେଇ ଠକେଇ ଦେବା ଓ ନିଜେ ସର୍ବମାଲିକ ସମ୍ରାଟ ହେବା ତାର କ୍ରମ ପରିଣତି । ଏ ଲେଖିଛନ୍ତି କମ୍ୟୁନିଷ୍ଟବାଦରେ ଆନ୍ତର୍ଜାତିକ ନୀତିବୋଧ ପାଇଁ ଓ ଶ୍ରେଣୀ-ସଂଘର୍ଷ ନିୟନ୍ତ୍ରଣ ପାଇଁ କୌଣସି ଚିନ୍ତା କରାଯାଇନାହିଁ ।

There was no such things as a universalistic moral sense with trancended the theory of class ethics.

ଯେଉଁଠି କମ୍ୟୁନିଷ୍ଟମାନେ କମ୍ୟୁନିଜମ ପ୍ରଚାର କରିଛନ୍ତି, ରାଜତ୍ୱ କରିଛନ୍ତି ସେ ସ୍ଥାନରେ ଲୋକଙ୍କୁ ଧର୍ମଛଡ଼ା କରିଛନ୍ତି । ମଧ୍ୟଯୁଗରେ ଯେପରି କେତେକ ରାଜ୍ୟରେ ଧର୍ମପ୍ରତି ଆକ୍ରମଣ କରାଯାଇଥିଲା କମ୍ୟୁନିଷ୍ଟମାନଙ୍କର ଧର୍ମ ଓ ଧାର୍ମିକ ମାନଙ୍କ ପ୍ରତି ଆକ୍ରମଣ ସେମାନଙ୍କଠାରୁ ଆହୁରି ଭୀଷଣ ବୀଭତ୍ସ ଓ ନୃଶଂସ ପ୍ରଣାଳୀରେ କରାହୋଇଛି । ଏକଥା ନିଃସନ୍ଦେହ ଯେ ଗାନ୍ଧୀବାଦ କମ୍ୟୁନିଷ୍ଟବାଦ ମଧ୍ୟରେ ଆକାଶ ପାତାଳ ଫରକ ଓ ଦୁଇଟି ଆଦର୍ଶ ଭିତରେ କେଉଁଠି ସାମଞ୍ଜସ୍ୟ ନାହିଁ । କମ୍ୟୁନିଷ୍ଟମାନେ ସେମାନଙ୍କ ଆନ୍ତର୍ଜାତିକ କାର୍ଯ୍ୟସୂଚୀରେ ତାହା ପ୍ରମାଣିତ କରିଛନ୍ତି ଯେ ଗାନ୍ଧୀବାଦ ସାଧାରଣ ଲୋକ ବିପ୍ଳବ ଓ ସଂଘର୍ଷରେ ବିରୋଧୀ । ଏହାକୁ କମ୍ୟୁନିଷ୍ଟମାନେ ଅଧିକ ବିରୋଧ କରିବା ଉଚିତ । ଗାନ୍ଧୀବାଦ କମ୍ୟୁନିଷ୍ଟବାଦର ବିରୋଧୀ ଆଦର୍ଶବୋଲି କଂଗ୍ରେସ ସେଯୁଗରେ କମ୍ୟୁନିଷ୍ଟ ଆଦର୍ଶ ଓ କର୍ମର ଚିରଦିନ ବିରୋଧ କରି ଆସିଛି । ରୁଷିଆ ଓ ଯୁଗୋସ୍ଲୋଭିୟା ସମ୍ବନ୍ଧରେ ଆମର ଧାରଣା ଅସ୍ୱଷ୍ଟ । ଯୁଗୋସ୍ଲୋଭିୟା ଗୋଟିଏ କମ୍ୟୁନିଷ୍ଟ ରାଜ୍ୟ ନୁହେଁ ଓ ସେମାନେ ଖୁବ ପୁରାତନ ସଂସ୍କାରବାଦୀ ଲୋକ । ସେମାନେ ପରିବର୍ତ୍ତନ ବିରୋଧୀ । ମାର୍ସାଲ ଟିଟୋ ସେଠାରେ ଜଣେ ଡିକ୍ଟେଟର ଥିଲେ ଓ ସେ ଖୁବ୍ କୃତି ଜାତୀୟବାଦୀ ଥିଲେ । କମ୍ୟୁନିଷ୍ଟ ବିରୋଧୀ ଥିଲେ ।

ରଷିଆ ପୁଣି କ୍ୟୁବାରେ ଯେପରି ସଂଘର୍ଷ ବିରୋଧ ପ୍ରଭୃତି ଆରମ୍ଭ କରି ଯୁଦ୍ଧ କରିବାର ମସୁଧା କଲା । ତାହା ତାହାର କମ୍ୟୁନିଷ୍ଟ କାର୍ଯ୍ୟ ନିର୍ଘଣ୍ଟର ଅଙ୍ଗ ଥିଲା । ସେଠାାରେ ରୁଷିଆ ଡିକ୍ଟେଟର ଶାସନ ପ୍ରଥା ଓ ସର୍ବହରାଙ୍କ ଶାସନ ମୁଖ୍ୟ ହୋଇ ଶାସନ କରିବା ଲୋକେ ଚାହୁଁ ନଥିଲେ । ତେଣୁ ରଷିଆର ଆନ୍ତର୍ଜାତିକ କମ୍ୟୁନିଷ୍ଟ ସଂସ୍ଥା ଓ କର୍ମ ଦୁର୍ବଳ ହୋଇଗଲା ।

ପକ୍ଷାନ୍ତରେ ଚୀନ କମ୍ୟୁନିଷ୍ଟବାଦ ଅତି ଦୃଢ଼ ଓ ଖାଣ୍ଟି ଭାବରେ ଗ୍ରହଣ କରି କମ୍ୟୁନିଷ୍ଟ ରାଜ୍ୟ ପ୍ରତିଷ୍ଠା ପାଇଁ ଯାବତୀୟ ଲୋକ ପୀଡ଼ନ ଓ ନୃଶଂସ ଉପାୟମାନ କାର୍ଯ୍ୟ କରି କରି ଆସିଲା । ରଷିଆର ଷ୍ଟାଲିନଙ୍କ ଲୋକ ପ୍ରତି ଅତ୍ୟାଚାର ନୀତିକୁ ଚୀନ ଗ୍ରହଣ କରିଥିଲା ।

ଚୀନର ବର୍ବର ଶାସନ ପଦ୍ଧତିକୁ ଷ୍ଟାଲିନ ଜାଣି ବଡ଼ ଖୁସିହେଉଥିଲେ ଓ ସମର୍ଥନ କରୁଥିଲେ। ସେଠାକାର ଶାସକମାନଙ୍କ ବର୍ବର ଅତ୍ୟାଚାର ଓ ଲୋକଙ୍କର ନୈତିକ ଦୈହିକ ଆତ୍ମିକ ସ୍ୱାଧୀନତାକୁ ଅପହରଣ କରି ମାନବତାକୁ ଧ୍ୱଂସ କରିଦେବା ଶାସନ ପ୍ରଣାଳୀକୁ। ତେଣୁ ଆମର ଚୀନ ସହିତ ଯୁଦ୍ଧ କରିବା ଅର୍ଥ ଷ୍ଟାଲିନବାଦ ବା ଋଷିଆ କମ୍ୟୁନିଷ୍ଟମାନଙ୍କ ସହିତ ଯୁଦ୍ଧ କରିବା। ତେଣୁ ଆଜି ସମଗ୍ର ପୃଥିବୀର ସ୍ୱାଧୀନପ୍ରେମୀ ଜାତିମାନେ ଆମ ପଟରେ ରହି ସାହାଯ୍ୟ କରୁଛନ୍ତି।

ଭାରତର ମତକୁ ଆଜି କମ୍ୟୁନିଜମ ବିରୁଦ୍ଧରେ ପୃଥିବୀର ସବୁ ଜାତି ଦେଶ ସମର୍ଥନ କରିଛନ୍ତି। ଭାରତ ଚୀନ ଯୁଦ୍ଧରେ ଭାରତୀୟ କମ୍ୟୁନିଷ୍ଟମାନେ ଭାରତର ପରାଜୟ ଓ ଚୀନର ଭାରତର କମ୍ୟୁନିଷ୍ଟମାନେ ଚୀନାକୁ ସାହାଯ୍ୟ ଓ ସମର୍ଥନ କରନ୍ତି ଓ ଭାରତର ସ୍ୱାଧୀନତାଶ୍ରେୟ ଚାହାନ୍ତି ନାହିଁ। ମାନବିକତା ଓ ମାନବର ଅଧିକାର ସେମାନେ ଚାହାନ୍ତି ନାହିଁ। ତେଣୁ ସେମାନେ ଚୀନ ଓ ଋଷିଆରେ ଚଳୁଥିବା କମ୍ୟୁନିଷ୍ଟ ଶାସନ ଭାରତରେ ପ୍ରତିଷ୍ଠା କରିବା ପାଇଁ ଉଦ୍ୟମୀ ହୋଇ ବିଦେଶୀ ଲୋକଙ୍କ ରାଜନୀତି ଓ ମତକୁ ସମର୍ଥନ କରିଥାନ୍ତି। ସେମାନେ ଛଦ୍ମବେଶରେ ଭାରତର ଉନ୍ନତି ଇଚ୍ଛା ବାହାରେ କହିଥାନ୍ତି କିନ୍ତୁ ଦେଶକୁ ମାରି ବୁଡ଼େଇ ଦେବାପାଇଁ ଦେଶର ପରିସ୍ଥିତି ବିପଦପୂର୍ଣ୍ଣ ହେଲେ ସେମାନେ ଏହି ପରିସ୍ଥିତିକୁ ସମର୍ଥନ କରିଥାନ୍ତି। ଦେଶର ବିପଦବେଳେ ସେମାନେ ଦେଶ ପଛରେ ନରହି ଦେଶକୁ ଧ୍ୱଂସ ଅରାଜକ ଅଶାନ୍ତିପୂର୍ଣ୍ଣ ଆତଙ୍କିତ କରିଦେବାର ସବୁ ପ୍ରୟାସ କରିଥାନ୍ତି। ଭାରତର କମ୍ୟୁନିଷ୍ଟମାନେ ମଧ୍ୟ ଗଣତନ୍ତ୍ର, ଧର୍ମ, ଈଶ୍ୱର, ଲୋକଙ୍କ ସର୍ବନିମ୍ନ ସ୍ୱାଧୀନତାର ବିରୋଧୀ ଅଟନ୍ତି। ଭାରତମାତା ପ୍ରତି ସେମାନଙ୍କର ଆଦୌ ସ୍ନେହ ଭକ୍ତି ମମତା ପ୍ରୀତିନାହିଁ।

ଗାନ୍ଧୀ ମହାତ୍ମା ବିରୋଧୀ 'ଭାରତଛାଡ଼' ଧ୍ୱନି କରାଇ ଯେ ସତ୍ୟାଗ୍ରହ ଯୁଦ୍ଧ କରିଥିଲେ ସେତେବେଳେ ''ଲୋକଙ୍କଯୁଦ୍ଧ'' କହି କମ୍ୟୁନିଷ୍ଟ ମାନେ ଇଂରେଜ ସରକାରକୁ ଯୁଦ୍ଧରେ ସାହାଯ୍ୟ ସମର୍ଥନ କରିଥିବା କଥା ସମସ୍ତେ ଜାଣନ୍ତି। ଭାରତ ସ୍ୱାଧୀନତା ପାଇବା ପରେ ତେଲଙ୍ଗାନାରେ କମ୍ୟୁନିଷ୍ଟମାନେ ଯେଉଁ ହତ୍ୟା ଲୁଟ ପ୍ରଭୃତି କଲେ ଓ ତେଲଙ୍ଗାନା ଲୋକଙ୍କୁ ସର୍ବସ୍ୱାନ୍ତ କଲେ, ଲୋକେ ପ୍ରାଣ ବିକଳରେ ରାଜ୍ୟ ଛାଡ଼ି ବଣ ବୁଦାରେ ଆଶ୍ରୟ ନେଲେ ତାହା କରାହୋଇଥିଲା। ସେଠାରେ କମ୍ୟୁନିଷ୍ଟ ରାଜ୍ୟ ପ୍ରତିଷ୍ଠା କରି,– ସମଗ୍ର ଭାରତରେ କମ୍ୟୁନିଷ୍ଟ ରାଜ୍ୟରେ ସ୍ଥାପନ କରି କମ୍ୟୁନିଷ୍ଟ ଶାସନ ତଳେ ଭାରତବାସୀଙ୍କୁ ରଖିବାପାଇଁ। ହାଇଦ୍ରାବାଦରେ ପୁଣି ଯେଉଁ ଅତ୍ୟାଚାର ପର୍ବ ଆରମ୍ଭ କଲେ ତହିଁରେ ପହିଲେ କମ୍ୟୁନିଷ୍ଟମାନେ ହାଇଦ୍ରାବାଦକୁ ଭାରତ ସହିତ ସାମିଲ କରିବାର ମତ ଛଦ୍ମରେ ପ୍ରଚାର କରି କଂଗ୍ରେସ ସହିତ ହାତମିଳାଇ ଅତ୍ୟାଚାର ଆରମ୍ଭ କରିଥିଲେ। କଂଗ୍ରେସ

ସହିତ ମିତ୍ର ହୋଇ ସେମାନେ ପ୍ରତି ଗାଁରୁ କଂଗ୍ରେସ ପ୍ରତିପତ୍ତି ପ୍ରଭାବ ହଟାଇ ଲୋକଙ୍କ ଘର ପୋଡ଼ା ଲୋକହତ୍ୟା, ଡକାଇତି, ଲୁଟ ପ୍ରଭୃତି କୁ କାର୍ଯ୍ୟ କରିଥିଲେ । ସେମାନେ ପ୍ରତିଗାଁରେ ନିଜ ମତ ଓ ପଥରେ କ୍ଷମତାଶାଳୀ ହୋଇଗଲେ । ତେଲେଙ୍ଗାନାରେ ଗଣ୍ଡଗୋଳ କରି ସେମାନେ ଯେପରି ଭାରତରେ କମ୍ୟୁନିଷ୍ଟଶାସନ ପ୍ରବର୍ତ୍ତନ କରିବାକୁ ବସିଥିଲେ ହାଇଦ୍ରାବାଦରେ ତା'ର ପୁନରାଭିନୟ ହେଲା । ସେଠାରେ ଯେ ଭୀଷଣ କାଣ୍ଡ କମ୍ୟୁନିଷ୍ଟ ଦଳ କଲେ ତାହା ସମ୍ବନ୍ଧେ ସରକାରୀ ଦପ୍ତର ନଥିଲେ ନିମ୍ନମତେ ବିବରଣୀ ରହିଛି ।

୧୫ ଅଗଷ୍ଟ ୧୯୪୬ ସାଲରୁ ୧୩ ସେପ୍ଟେମ୍ବର ୧୯୪୮ ସୁଦ୍ଧା କମ୍ୟୁନିଷ୍ଟମାନେ ନିର୍ମମଭାବରେ ହାଇଦ୍ରାବାଦର ୨ ହଜାର ଲୋକ ହତ୍ୟାକଲେ । ୨୨ଟି ପୁଲିସଥାନା ଉପରେ ଚଢ଼ାଉ କଲେ । ୨୩୦ ବନ୍ଧୁକ ହସ୍ତଗତ କରିଥିଲେ । ବହୁ ଅଫିସରଙ୍କୁ ବାଡ଼େଇଲେ । ବହୁ ସରକାରୀ ଅଫିସ ପୋଡ଼ିଦେଲେ । ୧୦ଲକ୍ଷ ଟଙ୍କାର ଧାନ, ଗହଣା ଓ ନଗଦ ଟଙ୍କା ଚୋରାଇ ନେଲେ । ରାସ୍ତା ରେଳଲାଇନ ଡାକତାର ଆଦି ସୁଶୃଙ୍ଖଳ ଭାବେ କ୍ରମେ ଛିନ୍ନ କରିଦେବାର ଏକ ଯୋଜନା ତିଆରି କରିଥିଲେ । ଏହା ଛଡ଼ା ଆମଦାନୀ ରପ୍ତାନୀ ହେଉଥିବା ଜିନିଷପତ୍ର ଲୁଟ ଓ ନଷ୍ଟ କରୁଥିଲେ ଯେପରି ଗରିଲା ଯୁଦ୍ଧ ପ୍ରଣାଳୀରେ କରାଯାଏ । ଡାକ-ତାର ଘର ନଷ୍ଟ କରିବା ସେମାନଙ୍କ ମସୁଧା ଥିଲା ।

କମ୍ୟୁନିଷ୍ଟମାନେ ଯେଉଁ ଦେଶରେ ଗୋଳମାଳ କରି ଅରାଜକତା କରନ୍ତି ସେଠାରେ ଉପରୋକ୍ତ ପ୍ରକାରେ ଅତ୍ୟାଚାର କରି ଜନତାଙ୍କୁ ଏପରି ଭୟଭୀତ କରି ଦିଅନ୍ତି ଯେ ସେମାନଙ୍କ ଦୁଷ୍କର୍ମ ବିରୋଧ କରିବାର ଶକ୍ତି ଜନତାଠାରେ ନଥାଏ । ସେମାନେ ଲୋକଙ୍କୁ ଜବତ କରି ମାରିଧରି ତାଙ୍କୁ ମୂକ ବଧିର କରିଦେବାରୁ ଲୋକେ ତାଙ୍କ ଅନ୍ୟାୟ ବିରୁଦ୍ଧରେ ଲଢ଼ିବାର ଶକ୍ତି ହରାନ୍ତି । ଭାରତରେ ମଧ୍ୟ କମ୍ୟୁନିଷ୍ଟମାନେ ସେହି ନୀତି ରୀତି ଧରି ଏବେ ବି ଠାଏ ଠାଏ ଅତ୍ୟାଚାର କରୁଛନ୍ତି (କେରଳ, ନକ୍ସଲବାଡ଼ି, ବଙ୍ଗଳାଦେଶ) ସେମାନେ ଦେଶ ବତ୍ସଳତାର ଛଳନା କରି ଦେଶକୁ ପରଦେଶୀ ଶତ୍ରୁଙ୍କ ହାତକୁ ଟେକି ଦେବାକୁ ଚେଷ୍ଟିତ । ସେମାନେ ସେ ସବୁ କମ୍ୟୁନିଷ୍ଟ ଦେଶରୁ ଏ ସବୁ କୁକାର୍ଯ୍ୟ କରିବା କରାଇବା ଓ ବଞ୍ଚିବା ପାଇଁ ବହୁତ ଟଙ୍କାପାନ୍ତି । ଆସାମରେ ସେମାନେ ଲୋକଙ୍କୁ ଚୀନର ମୁକ୍ତି ସଂଗ୍ରାମୀ ଲୋକମାନେ ଭାରତକୁ ଆସିବା କଥା କହି ଆଶ୍ୱାସ ଦେଉଛନ୍ତି । ଭାରତ ବିରୁଦ୍ଧରେ ଚୀନ ସହିତ ଷଡ଼ଯନ୍ତ୍ର କରୁଛନ୍ତି ଓ ଭାରତର ପ୍ରତିରକ୍ଷାର ଗୁପ୍ତ ଖବର ଦେଉଛନ୍ତି । ମହାରାଷ୍ଟ୍ରରେ ମଧ୍ୟ ଏହି ଦଳ ଦ୍ୱାରା ରାସ୍ତାରେ 'ଆମର ରାଜା ଆସୁଛନ୍ତି' ବୋଲି ଲେଖାଯାଉଛି । ହାଇଦ୍ରାବାଦରେ କମ୍ୟୁନିଷ୍ଟମାନଙ୍କର ଅନାଚାର ମୁଁ ନିଜେ ଦେଖିଛି ଜାଣିଛି; ଏହା ସମ୍ବାଦ ନୁହେଁ ।

ଆମ୍ଭେମାନେ ଯେଉଁମାନେ ଭାରତର ଚିରାଚରିତ ସଂସ୍କୃତି ଓ ଧର୍ମ, ଭଗବାନଙ୍କୁ ବିଶ୍ୱାସ କରୁ, ସେ କମ୍ୟୁନିଷ୍ଟ ମାନେ ଧଳା ନାଲି କଳା ଯେଉଁ ରଙ୍ଗଧରି ଆସନ୍ତୁନା କାହିଁକି ସେମାନଙ୍କ କଥାରେ ଭରସା ରଖି ବିଶ୍ୱାସ କରିବା ଅସମ୍ଭବ ଓ ଏହା ଆମ୍ଭେମାନେ କଦାପି ଭୁଲିପାରିବୁ ନାହିଁ ।

ଭାରତରେ ଆମର ବୈଦେଶିକ ନୀତିରେ ଆମେ ଯେତେ ନିରପେକ୍ଷ ଭାବ ଦେଖାଇଲେ ସୁଦ୍ଧା ପୃଥିବୀର ସ୍ୱାଧୀନ ଦେଶ ମାନଙ୍କ ସାଥିରେ ଆମର ପୂରା ସମ୍ପର୍କ ସ୍ଥାପିତ ହୋଇଅଛି ।

ସବୁ ଜାତି ଗୋଷ୍ଠୀ ସହିତ ଆମର ସହଯୋଗ ଓ ବନ୍ଧୁତା ଅଛି । ରୁଷିଆ ଏବେ ପୂର୍ବପରି କମ୍ୟୁନିଷ୍ଟବାଦ ଖୁବ୍ ଜୋରରେ ଭାରତରେ ପ୍ରଚାର କରି କାର୍ଯ୍ୟ କରୁନାହିଁ । ମାତ୍ର ଚୀନ ପୂରାଦମ୍‌ରେ ଭାରତ ବିରୁଦ୍ଧରେ ଚଳାଇଛି । ଭାରତ ଚୀନାଙ୍କୁ ପରାଜିତ କରି ଭାରତସୀମାନ୍ତରୁ ତଡ଼ିଦେଲା ପରେ ଆମର ବୈଦେଶିକ ନୀତିରେ ଜାତି ନିରପେକ୍ଷ ଭାବ ସମ୍ବନ୍ଧେ ଆଲୋଚନା କରିବାକୁ ସମୟ ମିଳିବ । ଦୁନିଆ ବଦଳି ଥିବ, ସେତେବେଳେ ଆମେ ପୁଣି ଜାତି ଦେଶମାନଙ୍କ ପ୍ରତି ନିରପେକ୍ଷ ନୀତିର ହୁଏତ ନୂଆ ନାମକରଣ କରିବୁ । ବିଗତ ଶତାବ୍ଦୀରେ ଇଂରେଜ ତାର ପ୍ରବଳ ଦୁର୍ଦ୍ଧର୍ଷ ସେନାବାହୀନିଦ୍ୱାରା ଆମକୁ ରକ୍ଷାକରି ଆସୁଥିବାରୁ ଆମେ ଯୁଦ୍ଧ ସମ୍ବନ୍ଧେ ଅପରିଚିତ ଓ ଉଦାସୀନ ରହିଥିଲୁ । ଯୁଦ୍ଧଟା ଆମକୁ ଅସ୍ୱାଭାବିକ ଲାଗୁଥିଲା ମାତ୍ର ଦିନ ଆସିଛି ଯେତେବେଳେ ଆମର ଏହି ଉଦାସ ମନୋବୃତ୍ତିକୁ ପୂରା ବଦଳାଇ ଯୁଦ୍ଧ କରିବା ମତିଗତିଆଡ଼କୁ ଆମକୁ ଚାଲିବାକୁ ହିଁ ହେବ । କାରଣ ଆମକୁ ଆମଦେଶ ଓ ଜାତିର ପୂରା ଇଜ୍ଜତ ଓ ମାନ ନ୍ୟାୟ ଓ ସତ୍ୟ ଦୃଷ୍ଟିରୁ ତାହା ପ୍ରତିଷ୍ଠା ପାଇଁ ରଖିବାକୁ ହେବ ।

ଆମର ସରକାର ଓ ନେତା ମାନଙ୍କୁ ଏହି ଦୃଷ୍ଟିରୁ ଆମକୁ ସହାୟତା କରି ସେମାନଙ୍କୁ ପୂରା ସମର୍ଥନ କରିବାକୁ ହେବ ଓ ଯୁଦ୍ଧ କରିବାକୁ ହେବ । ଚୀନ ଭାରତର ଶତ୍ରୁ । ସୁତରାଂ ତା ସହିତ ଆମେ ଯୁଦ୍ଧ କରି ଦେଶ ରକ୍ଷା କରିବା ଉଚିତ । ଭାରତ କାପୁରୁଷ ନୁହେଁ ବୋଲି ଜୀବନ ଦେଇ ଆମକୁ ପ୍ରମାଣ କରିବାକୁ ହେବ ।





ସେଣ୍ଟ୍ରାଲ ଇନଷ୍ଟିଚ୍ୟୁଟ ଅଫ୍ ... ଅଧୁନା ଇଫ୍ଲୁ

ଝ଼ଣ୍ଟି କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ, ହାଇଦ୍ରାବାଦରେ ଇଂରାଜୀ ବିଭାଗ ପ୍ରଫେସର ରୂପେ ସେ କାର୍ଯ୍ୟରତ । ସେ ଥିଲେ ଇଂଲଣ୍ଡର ''ବ୍ରିଟିଶ୍ କାଉନସିଲ ସ୍କଲାର'' (୧୯୯୦) ଟେକ୍ସାସ ବିଶ୍ୱବିଦ୍ୟାଳୟରେ ''ଫୁଲ୍‌ବ୍ରାଇଟ୍ ସ୍କଲାର'' (୧୯୯୦-୯୧) ଏବଂ ଅଷ୍ଟ୍ରୀୟାର ''ସାଲ୍‌ଜବର୍ଗ ଫେଲୋ'' (୧୯୯୬) ଅନନ୍ୟ ଅନୁବାଦ ଲାଗି ପ୍ରଫେସର ମହାନ୍ତି ରାଷ୍ଟ୍ରପତିଙ୍କ ଠାରୁ କଥା ପୁରସ୍କାର (୧୯୯୨), ''କଥା-ବ୍ରିଟିଶ କାଉନ୍‌ସିଲ ଅନୁବାଦ ପୁରସ୍କାର'' (୧୯୯୪) ଓ ବିଶ୍ୱବିଦ୍ୟାଳୟ ମଞ୍ଜୁରି କମିଶନର ''କ୍ୟାରିୟର ଆୱାର୍ଡ୍ (୧୯୯୪-୯୭) ପାଇଛନ୍ତି । ସେ ଥିଲେ ହାଇଦ୍ରାବାଦର ''ଆମେରିକାନ୍ ଷ୍ଟଡିଜ୍ ରିସର୍ଚ୍ଚ ସେଣ୍ଟର''ର ''ବରିଷ୍ଠ ଏକାଡେମି ଫେଲୋ'' (୧୯୯୯), ସାମ୍ପ୍ରତିକ କାଳର ବ୍ରିଟିଶ୍ ଲେଖକମାନଙ୍କ ଉପରେ ''କେମ୍ବ୍ରିଜ ସେମିନାରର ଫେଲୋ'' (୧୯୯୯) ଏବଂ ଆମେରିକାର ''ଫୁଲ୍‌ବ୍ରାଇଟ୍ ଭିଜିଟିଂ ପ୍ରଫେସର'' (୨୦୦୪-୦୫) ।

ତାଙ୍କର ଲେଖା ସବୁ India Today, Economic and Political Weekly, The Hindu, The Indian Express, The India International Centre Quarterly, Span Magazine, ଝଙ୍କାର, ଅମୃତାୟନ ସମେତ ବିଭିନ୍ନ ଅଗ୍ରଣୀ ପତ୍ରିକାରେ ପ୍ରକାଶିତ ।

ଆଧୁନିକ ଉତ୍କଳରେ ନାରୀଜାଗରଣର ପ୍ରଥମ ପର୍ଯ୍ୟାୟରେ ମହାନାୟିକା ଥିଲେ ଯେପରି ମହାତେଜସ୍ୱିନୀ ଉତ୍କଳ ଭାରତୀ କୁନ୍ତଳା କୁମାରୀ– ସେହିପରି ଏହାର ପରବର୍ତ୍ତୀ ପର୍ଯ୍ୟାୟରେ ଆବିର୍ଭୂତା ହୋଇଥିଲେ ବୀରାଙ୍ଗନା ଓ ମହାମନସ୍ୱିନୀ ସରଳା ଦେବୀ । ଏହି ରଣରଙ୍ଗିଣୀ ମହିଳା ଭାରତର ସ୍ୱାଧୀନତା ସଂଗ୍ରାମରେ ତାଙ୍କର ସର୍ବସ୍ୱ ଦାନ କରିବା ସଙ୍ଗେ ସଙ୍ଗେ ନିଜର ଜୀବନକୁ ମଧ୍ୟ ସେହି ମହାସମର ଯଜ୍ଞରେ ଉତ୍ସର୍ଗ କରିଥିଲେ । ମାତ୍ର ସେଥିଲାଗି ସେ ଦେଶଠାରୁ କୌଣସି ପ୍ରତ୍ୟାଶା କରିନାହାନ୍ତି – ଦେଶ ମଧ୍ୟ ତାଙ୍କୁ ଯାହା ଦେବା କଥା ଦେଇନାହିଁ ।

ଏହି ଆତ୍ମ-ମର୍ଯ୍ୟାଦା ସଂପନ୍ନା ମହିୟସୀ ମହିଳା ଯୁଦ୍ଧକ୍ଷେତ୍ରରେ ଯେପରି ନିଜର ବୀରତ୍ୱ ପ୍ରଦର୍ଶନ କରିଛନ୍ତି – ସେହିପରି ଓଡ଼ିଆ ସାହିତ୍ୟକ୍ଷେତ୍ରରେ ମଧ୍ୟ ତାଙ୍କର ସାରସ୍ୱତ ପ୍ରତିଭାର ଅବଦାନ ଅତୁଳନୀୟା । ତାଙ୍କର ହୃଦୟ ଥିଲା ଜଣେ ସମ୍ବେଦନଶୀଳା କବିର । ଏବଂ ଅନ୍ୟ ପକ୍ଷରେ ତାଙ୍କର ବୌଦ୍ଧିକ ବିକାଶ ମଧ୍ୟ ଥିଲା ଯେପରି ତୀକ୍ଷ୍ଣ - ସେହିପରି ବହୁଦର୍ଶୀ । ସମାଜର ଓ ଜୀବନର ବହୁ ମୌଳିକ ଓ ଜଟିଳ ସମସ୍ୟା ଉପରେ ସେ ତାଙ୍କର ମସ୍ତିଷ୍କ ଓ ଲେଖନୀ ଉଭୟର ସୁପରିଚାଳନା କରିଛନ୍ତି । ଓଡ଼ିଶାର ବିଦୁଷୀରମଣୀମାନଙ୍କ ମଧ୍ୟରେ ତାଙ୍କର ସ୍ଥାନ ଖୁବ୍ ଉଚ୍ଚରେ । ମାତୃଭାବର କୋମଳ ବାତ୍ସଲ୍ୟ ସହିତ ପୁରୁଷସୁଲଭ ଏକ ଦୃଢ଼ ଅନମନୀୟତା ତାଙ୍କ ବ୍ୟକ୍ତିତ୍ୱକୁ ଏକ ରୁଦ୍ରସୁନ୍ଦର ମହିମାରେ ଦୀପ୍ତିଶକ୍ତ କରିରଖିଥିଲା । ଏହି ତେଜୋବତୀ ମହିଳା ଉତ୍କଳର ନାରୀଶକ୍ତି ଓ ପ୍ରତିଭାର ଶାଶ୍ୱତ ପ୍ରତୀକ ବୋଲି ମନେ କରିବାରେ କିଛି ବାହୁଲ୍ୟ ବା ଅସଙ୍ଗତି ନାହିଁ । ଆନନ୍ଦର କଥା ଯେ, ତାଙ୍କର ଜନ୍ମଶତ-ବାର୍ଷିକୀରେ ଏହି ପୁସ୍ତକଟି ପ୍ରକାଶିତ ହୋଇ ରାଜ୍ୟବାସୀଙ୍କ ହାତରେ ଅର୍ପଣ କରାଯାଉଛି ।

ମହାପାତ୍ର ନୀଳମଣି ସାହୁ